# ମୋ ଦୃଷ୍ଟିରେ ନାରୀ

(ନାରୀ ସମସ୍ୟା ଆଧାରିତ ପ୍ରୟୋଗବାଦୀ ରଚନା)

ଡକ୍ଟର କବିତା ବାରିକ

ଲାର୍କ ବୁକ୍‌ସ

# ମୋ ଦୃଷ୍ଟିରେ ନାରୀ

ଡକ୍ଟର କବିତା ବାରିକ

ପ୍ରକାଶକ
ଲାର୍କ ବୁକ୍ସ
ଭୁବନେଶ୍ୱର-୭୫୧୦୦୧

ପ୍ରଥମ ପ୍ରକାଶ
୧୯୯୭

ପ୍ରଚ୍ଛଦ
ଛନ୍ଦାଚରଣ ଆଚାର୍ଯ୍ୟ

ମୁଦ୍ରଣ
ଓଁକାର
ଆଚାର୍ଯ୍ୟବିହାର, ଭୁବନେଶ୍ୱର

ମୂଲ୍ୟ- ଷାଠିଏ ଟଙ୍କା ମାତ୍ର

**MO DRUSTIRE NARI**

By
Dr. Kabita Barik

Published by
**LARK BOOKS**
Bhubaneswar - 751 001

Ist Edition-1997

Cover
Chhanda Charan Acharya

Printed at
**Omkar**
Acharya Vihar, Bhubaneswar

Rupees Sixty Only

**ISBN - 81 - 7375 - 044 - 0**

# ଅର୍ପଣ

*ବିଶ୍ୱର ବନ୍ଦନୀୟା, ନିର୍ଯ୍ୟାତିତା, ସମ୍ମାନନୀୟା, ଧୈର୍ଯ୍ୟଶୀଳା,*
*ମହନୀୟା, କଲ୍ୟାଣମୟୀ, ନାରୀମାନଙ୍କ ହାତରେ ମୋର ଏହି*

''ମୋ ଦୃଷ୍ଟିରେ ନାରୀ''କୁ

*ଆନ୍ତରିକ ଉତ୍ସର୍ଗ କରୁଛି ।*

ଲେଖିକା

*"A son is a son till he gets his wife,*
*A daughter is a daughter throughout her life."*

---

"ନାରୀ ! ତୁମ୍ କେବଲ୍ ଶ୍ରଦ୍ଧାହୋ
ବିଶ୍ୱାସ ରଜତ୍ ନଗ୍ପଗ୍ ତଲ୍ମେଁ
ପୀୟୁଷ ସ୍ରୋତସି ୱ୍ରାହାକର୍
ଜୀବନ୍‌କେ ସୁନ୍ଦର ସନ୍ତଲ୍ ମେଁ ।"

ଜୟଶଙ୍କର ପ୍ରସାଦ

# ସେମାନଙ୍କ ମତରେ

"ପୁରୁଷ-ରମଣୀ ମିଳି ଏ ସଂସାର
ନାରୀକୁ କିପାଇଁ ତୁଚ୍ଛ ମନେକର ?
ନାରୀ ପାଇଁ ସଦା ପୁରୁଷ ମହତ
ସେ କିପାଁ ସହିବ ଲାଞ୍ଛନା କହତ ?
ସବୁଦିନେ ସେ କି ସହିବ କଷଣ
ଦୁଷ୍ଟ ସମାଜର ଦୁର୍ନୀତି ନିୟମ !
ତା ପାଇଁ କିପାଁ ଏ ନିଷ୍ଠୁର ଶାସନ
ଏତେ ଅବିଚାର, ନିର୍ମମ ବିଧାନ ?"

(ବିଦ୍ୟୁତ୍‌ପ୍ରଭା ଦେବୀ- "ନାରୀ")

"ଶେଷ ରାତି ନୁହେଁ ମୋର
ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟି ନାହିଁ ଉବତରୁ ଡାଳରେ
ଅଛି ରମ୍ୟ ଉପବନ ଯହିଁ ଫୁଟି ଚିରଦିନ
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ"

(କୁନ୍ତଳା କୁମାରୀ ସାବତ-"ଶେଫାଳୀ ପ୍ରତି")

"ଗୋଟାଏ ଏଡ଼େବଡ଼ ଝିଅର ମୁହଁକୁ ଏତେଦୂର ବଢ଼ିବାକୁ ଦେବା ତା ପକ୍ଷରେ ଆଦୌ ଉଚିତ ନୁହେଁ। ସାହୀର ପୁଅପିଲାଗୁଡ଼ାକ ହେଲେ ତାର ଖେଳ ସଙ୍ଗୀ।... ମାଇକିନିଆ ଝିଅ ଯେ ପୁଣି ଡ଼ଗ ବାନ୍ଧନ୍ତି, ଏକଥା ମୁଁ ବାପଜନ୍ମରେ ବି ଶୁଣି ନଥିଲି।...

ରାମକାଳୀଙ୍କର ଚରିତ୍ର ବହୁବିଧ ଗୁଣର ସମାବେଶ ଦ୍ୱାରା ଉଜ୍ଜ୍ୱଳ... ମାତ୍ର ସମଗ୍ର "ସ୍ତ୍ରୀ ଜାତି"ଟା ପ୍ରତି ତାଙ୍କର ସେପରି କୌଣସି ସମ୍ଭ୍ରମବୋଧ ନାହିଁ, ସମ୍ୟକ ମୂଲ୍ୟବୋଧ ବି ନାହିଁ। ଖାଲି ଭାତ ରାନ୍ଧିବା, ପିଲାକୁ ମାରିବା, ସାହୀ ବୁଲିବା, ପରଚର୍ଚ୍ଚା କରିବା, କଜିଆ ଲଗାଇ ଅକଥ୍ୟ ଓ ଅଶ୍ରାବ୍ୟ ଗାଳିମନ୍ଦ ଦେବାର, ଦୁଃଖରେ କାନ୍ଦି ଭୂଇଁ ତିନ୍ତାଇବାର ଓ ଶୋକରେ ଅଧୀର ଉନ୍ମତ୍ତ ପ୍ରାୟ ହୋଇ ଛାତିରେ ହାତ ବାଡ଼େଇବାର କେତେଟା କଥାକୁ ଛାଡ଼ିଦେଲେ ଯେଉଁ ଜାତିଟାର ଆଦୌ କୌଣସି ଭୂମିକା ନାହିଁ, ସେମାନଙ୍କ ପ୍ରତି କେବଳ ପ୍ରଚ୍ଛନ୍ନ ହୋଇ ରହିଥିବା ଏକ ଅବଜ୍ଞା ବ୍ୟତୀତ ରାମକାଳୀଙ୍କ ମନରେ ଆଉ କେବେହେଲେ କୌଣସି ଭାବର ଉଦ୍ରେକ ହୁଏ ନାହିଁ।"

( ଆଶାପୂର୍ଣ୍ଣା ଦେବୀ- "ପ୍ରଥମ ପ୍ରତିଶ୍ରୁତି" )

"ମୁକ୍ତିର ଏଇ ତିକ୍ତ ସ୍ୱାଦରେ
ଜିଭ ତା ଯାଉଛି ଜଳି
ମୁକ୍ତି ଏ କେଉଁ ଭଳି? XX
ସମାଜ ଯନ୍ତ୍ରେ ନିଜକୁ ନିଜେଇ ଭଞ୍ଜନ କରି
କରୁଥିଛି ସିଏ ନୀରବରେ ବିଦ୍ରୋହ
XXX
ଅବଗୁଣ୍ଠିତା ଥିଲା ଦିନେ ସିଏ
ମୁକ୍ତି ପାଇ ବି ଲୁଣ୍ଠିତା ହୁଏ ଏବେ
ଯୁଗଯୁଗର ଅଭିସମ୍ପାତ ଜୀବନ ପୋଥିରୁ
ପୋଛି ହେବ ତାର କେବେ?"

(ମନୋରମା ମହାପାତ୍ର- "ନାରୀ")
(ସମାଜ- ୮.୩.୯୩)

"ଜୀଇଁବାକୁ ଯେ ଦିଆ ଯାଉଛି
ସେଇ କଣ ଯଥେଷ୍ଟ ନୁହେଁରେ ମାଣିକ,
ତାପରେ ଫେର୍ ନିଜ ଖୁସିରେ ସ୍ୱପ୍ନ ଦେଖିବୁ?
କି ଆସ୍ପର୍ଦ୍ଧା
ଛାର ସ୍ତ୍ରୀ ଲୋକଟା ।
ଦଳି ଦେଲେ ନିଶ୍ଚିହ୍ନ ହେଇ ଯିବୁ"

(ଗିରିବାଳା ମହାନ୍ତି- "ସ୍ତ୍ରୀଲୋକ")

ସୀତାର ଅଗ୍ନିପରୀକ୍ଷା ସେ ଦେଖିଛି, ଦ୍ରୌପଦୀଙ୍କ ପଞ୍ଚପତିଙ୍କ ସହ ରତିକ୍ଳାନ୍ତ ଶରୀରର ଯାତନାକୁ ସେ ଅନୁଭବ କରିଛି, କୁନ୍ତୀଙ୍କର ଚପଳ ମାତୃତ୍ୱର ଜୀବନ ଭରି ଲାଞ୍ଛନାର ଶିକାର ହୋଇଛି ଆଉ ରାଜରାଣୀ ମୁକୁଟମଣ୍ଡିତା ମନ୍ଦୋଦରୀ ଓ ତାରାଙ୍କର ନୀରବ ଶୋକର ସେ ଅବଗାହନ କରି ପୁଣି ନିଜକୁ ମୁକ୍ତ କରି ଆଣିଛି। ମୂଲ୍ୟବୋଧର ଶର ତାରି ଦେହରେ ପ୍ରତିଯୁଗରେ ଆଘାତ କରିଛି; ରକ୍ତାକ୍ତ ଯନ୍ତ୍ରଣା ଜର୍ଜରିତ ହୋଇ ସେ ତ କେବେ ଥକି ପଡ଼ିନାହିଁ। ସେ ଯେ ସର୍ବଂସହା ଧରିତ୍ରୀ।"

(ବୀଣାପାଣି ମହାନ୍ତି- "କୁନ୍ତୀ, କୁନ୍ତଳା, ଶକୁନ୍ତଳା")

"ପୁରୁଷ ହେଇ ସେ ସ୍ତ୍ରୀର ଏତେ ଯଶ, କ୍ଷମତା, ପ୍ରତିପତ୍ତି ସହ୍ୟ କରି ପାରୁ ନାହାନ୍ତି। ସୁଖି ହେଇ ପାରୁ ନାହାନ୍ତି।.. ସ୍ତ୍ରୀର ବୁଦ୍ଧିମତ୍ତା, ଶିକ୍ଷା, କ୍ଷମତା ଅପେକ୍ଷା ସ୍ତ୍ରୀର ନିର୍ବୋଧତା, ଅଶିକ୍ଷା, ଅସହାୟତା ସ୍ୱାମୀକୁ ବେଶି ସୁଖଦିଏ ବୋଲି ତାଙ୍କର ଏବେ ହୃଦବୋଧ ହୋଇଛି।.. ଜୀବନର ବନ୍ଧୁର ପଥରେ ପତି ଯେ ପତ୍ନୀର ପ୍ରଭୁ, ସାଥି-ନୁହେଁ, ଏଇ ଭାବନା ହିଁ ନିଶାନ୍ତକୁ ବିଭ୍ରାନ୍ତ କରିଛି। ନାରୀପ୍ରଗତିର ପ୍ରଶସ୍ତ ସ୍ଲୋଗାନ ସତ୍ତ୍ୱେ ନାରୀ ନିର୍ଯ୍ୟାତନା ଓ ଲାଞ୍ଛନାର ଶେଷ ନାହିଁ ଯେମିତି,... ଶୋଭିତା ହଠାତ ନିଜର ଅଶ୍ରୁ ପୋଛି ନେଲେ।... ପୁରୁଷକୁ ବାଦ ଦେଇ ନାରୀ ଜୀବନର କ'ଣ ଅନ୍ୟଦିଗ ନାହିଁ ଯେ ନିଶାନ୍ତ ମୋତେ ପ୍ରତ୍ୟାଖାନ କରିବା ମାତ୍ରେ ମୋ ଜୀବନରେ ସୁବ୍ରତ ଏକବାର ଅପରିହାର୍ଯ୍ୟ ହେଇ ଉଠିବ! ନାରୀପ୍ରଗତିର ଅର୍ଥ ପ୍ରତିଯୋଗିତା ନୁହେଁ।"

(ପ୍ରତିଭା ରାୟ- ଗଳ୍ପ-"ବୃତ୍ତ")

"ପୁରୁଷର ପ୍ରେମ ହେଉଛି ବୁଭୁକ୍ଷୁର କ୍ଷୁଧାଭଳି। ପ୍ରଚଣ୍ଡ, ଉଗ୍ର ଏବଂ କ୍ଷଣସ୍ଥାୟୀ। ଆଉ ନାରୀର ପ୍ରେମ ହେଉଛି ଉପବାସର ଦିନଭଳି ଶାନ୍ତ, ସମାହିତ ଏବଂ ଦୀର୍ଘସ୍ଥାୟୀ।... ଗଠନଗତ ବିଭେଦ ଖାଲି ନୁହେଁ, ପ୍ରକୃତିଗତ କାରଣରୁ ସେମାନେ ଦୁଇ ମେରୁ ଭଳି ବିପରୀତ।"

( ପୁଷ୍ପାଞ୍ଜଳି ନାୟକ- ଗଳ୍ପ- "ମୃଗତୃଷ୍ଣା" )

ବେଳେବେଳେ ଖବର କାଗଜରେ ବାହାରେ ହରିଜନ ମହିଳାଙ୍କୁ ଧର୍ଷଣ ବା କମ୍ୟୁନିଷ୍ଟ ପାର୍ଟିର ମହିଳାକର୍ମୀଙ୍କ ଉପରେ ଅତ୍ୟାଚାର ଇତ୍ୟାଦି। ଧର୍ଷଣ ହେଉ କି ଅନ୍ୟ କେଉଁ ପ୍ରକାରର ଅତ୍ୟାଚାର ହେଉ ତାହାତ ସବୁ ମଣିଷଙ୍କ ପାଇଁ ସମାନ... ତାପରେ ଆଉ ଗୋଟିଏ କଥା ପ୍ରତ୍ୟହ କେତେ ଯେ ନାରୀ ନିଜ ନିଜ ସ୍ୱାମୀଙ୍କ ଦ୍ୱାରା ଧର୍ଷିତା ହେଉଛନ୍ତି ତାର କଳନା ନାହିଁ। With the blessings of the parents thousands girls are being raped each and everyday by their own husbands.... ମୁଁ ଭାବୁଛି marriage has not that much importance now a days. ଆଜିର ନାରୀ ଶିକ୍ଷିତା, ସ୍ୱାବଲମ୍ବିନୀ, ସ୍ୱାମୀ ବିନା ବି ସେ ଜୀବନ ବିତାଇ ପାରେ। ଏପରି ଜଣେ ଲୋକକୁ ତମେ ବିବାହ କରୁଛ, ଯାହାକୁ ତମେ ଜାଣ ନାହିଁ, ଭଲପାଅ ନାହିଁ। କଣ ଲୋଡ଼ା ସେ ବିବାହରେ ? ଆମର ଅଧିକାଂଶ ବିବାହ କେବଳ ଅଭ୍ୟାସ ମାତ୍ର, ନିଛକ sentimental, ଭଲ ପାଇବା ନୁହେଁ।"...

( କମଳା ଦାସ- ସାକ୍ଷାତ୍ ହୃଷୀକେଶ ମଲ୍ଲିକ- କ୍ରାନ୍ତିଧାରା-ପୂଜାସଂଖ୍ୟା ୧୯୯୧ )

"Our society conditions young girls to believe that real life consists of getting married, having children, promoting one's husband's career by planning huge, endless meals for overfed people, buying the latest model of this and that, and so forth.... The meaning of "Sati" is a virtuous woman. And this is synonymous with self-immolation, a tradition arising out of the concept that woman is her husband's property and has no other life. Traditional virtue lies in staying, suffering."

**(Nayantara Sahgal- Indian literature- Jan-Feb-1989)**

ପ୍ର :-ନାରୀ ସ୍ୱାଧୀନତା ସଂପର୍କରେ ଆପଣଙ୍କ ମତ କଣ ?

ଉ :- ସ୍ୱାଧୀନତା କହିବା ଏବଂ ପାଇବା ଦୁଇଟି ଭିନ୍ନ ଜିନିଷ। ସ୍ୱାଧୀନତା କାହାଠାରୁ ଛଡ଼ାଇ ହେବ ନାହିଁ କି ଦେଇ ହେବ ନାହିଁ। ନାରୀ ସ୍ୱାଧୀନତା ଏକ ମୌଖିକ ସ୍ଲୋଗାନ ମାତ୍ର। ପୁରୁଷମାନେ ବି ଏ ଦେଶରେ ତହିଁରୁ ବଳି ଅପରିପକ୍ୱ। ତେଣୁ ସ୍ୱାଧୀନତା କିଏ କାହାଠାରୁ ଦାବୀକରିବ ? କିପରି କରିବ ? ଆପଣ ଭାବୁଥିବେ ଆମେରିକାର ମହିଳାମାନେ ଖୁବ୍ ସ୍ୱାଧୀନା। କିନ୍ତୁ ବାସ୍ତବରେ ଦେଖିବାକୁ ଗଲେ ଏହା ମିଛ। ଆମେରିକାର ବି ଆଜୋନି ସର୍ବପ୍ରଥମେ ମହିଳାମାନଙ୍କର ଭୋଟ ଦେବାର ଅଧିକାର ସମ୍ପର୍କରେ ପ୍ରଶ୍ନ ଉଠାଇଥିଲେ। ଭୋଟ ଦେବାର ଅଧିକାରଟିକୁ ଆମେ ନାରୀ ସ୍ୱାଧୀନତା ବୋଲି କହିପାରିବୁନି। ନାରୀସ୍ୱାଧୀନତା ବୋଲି କିଛି ନାହିଁ। କହିବା ଓ କରିବା ଦୁଇଟି ଭିନ୍ନ ଜିନିଷ। କେବଳ ଶିକ୍ଷିତା ହୋଇ ଉଚ୍ଚପଦବୀରେ ଅଧିଷ୍ଠାତ୍ରୀ ହେଲେ ନାରୀ ସ୍ୱାଧୀନ ହୋଇ ଯାଇ ନାହିଁ। ମୋ ମତରେ ଏହା ଏକ ଧାରାବାହିକ ମୌଖିକ ଆନ୍ଦୋଳନ ମାତ୍ର। ତେଣୁ ଯୌତୁକ, ବଳାତ୍କାର ଯାହା ହେଉଛି ସବୁରି ଅଛି ଅର୍ଥଲୋଭ। ମଣିଷ ମନରୁ

ଯେ ପର୍ଯ୍ୟନ୍ତ ଅର୍ଥର ଲାଳସା ଯାଇନାହିଁ, ସେ ପର୍ଯ୍ୟନ୍ତ ତାର ଆତ୍ମିକ ବିକାଶ ହୋଇ ପାରିବ ନାହିଁ।''

(ଅମୃତା ପ୍ରୀତମ୍- ସାକ୍ଷାତ୍ କବିତା ବାରିକ, ସୁଚରିତା- ନଭେମ୍ବର-ଡିସେମ୍ବର ସଂଖ୍ୟା-୧୯୮୫)

''ଏକା ଏକା ଧାଇଁ ବୁଲୁଥିବା ଝିଅଗୁଡ଼ା କ୍ରମେ କ୍ରମେ କେମିତି ଦୁଃସାହାସ ହୋଇଯାନ୍ତି, ସେମିତି ସ୍ୱାଧୀନଚେତା ବି। ତମର ଖୁବ୍ ଇଚ୍ଛାହେଲା ସୁନନ୍ଦାକୁ ଥରେ ଲମ୍ପଟମାନଙ୍କ ଭିତରେ ଫିଙ୍ଗି ଦେଇ ଦେଖିବାକୁ ?... ଏମିତି ମନେ ହୁଏନି କି ସବୁ ସ୍ତ୍ରୀ ଲୋକଗୁଡା ଧର୍ଷିତା ହେବା ଉଚିତ। ନ ହେଲେ ମୁଣ୍ଡରେ ସଞ୍ଚିତ ଥିବା ହଜାର ବର୍ଷର ଫ୍ୟାଟ ତରଳିବନି। କ୍ରମାଗତ ଧର୍ଷିତା ହେଲେ ସ୍ତ୍ରୀ ଲୋକଗୁଡ଼ା ଧର୍ଷିତାକୁ ତୁଚ୍ଛ ମନେକରି ଓଲଟା ତିନି ଚାରି ଜଣ ମିଳି ପୁରୁଷ ଆଡ଼କୁ ଆଗେଇଯିବେ। ଏମିତିତ ହୋଇ ପାରିବ ଗୋଟେ ପ୍ରୋଲେଟେରିଏଟ ସମାଜର ଭିତ୍ତି ସ୍ଥାପନ।''

(ସରୋଜିନୀ ସାହୁ- ଗଳ୍ପ- ''ଜୀବନର ଏତେ ଦୀର୍ଘ ଆଲିଙ୍ଗନ, ବାଧବାଧକତାର ଲୁହାର ବନ୍ଧନ କାହାର କାମ୍ୟ ଥାଏ କୁହ''।

''ଜଣ ଭାବି କେଜାଣି ସଖୀ ଆଖି ଛଳଛଳ କରି କହିଥିଲା, ମୁଁ ପଢ଼ିବି, ମତେ ତମେ ପଢ଼ାଇ ଦେବ ନାଁ? ପିଲାଦିନେ ମୁଁ ଆମ ଗାଁ ରାୟ ବାବୁଙ୍କ ଝିଅ ପଢୁଥିଲା ବେଳେ-ଭାବୁଥିଲି ପଢ଼ନ୍ତି କି?.. ମାଆ କହିଛନ୍ତି, ବାହାରକୁ ପାଦ କାଢ଼ିଲେ କୁଆ, ଶାଗୁଣାଙ୍କ ପରି ମଣିଷ ଗୁଡାକ ମତେ ଖାଇଯିବେ।... ତମେତ କେତେ ପାଠପଢ଼ି କଣ ନେତ୍ରୀ ହୋଇଛ... ମୁଁ ତ ଚାକରାଣୀ ଟୋକୀ! ମତେ ପାଠ ପଢ଼ିବା ଯେତେ ଭଲଲାଗିଲେ ବି ମୁଁ ପଢ଼ିସାରି ଆସି ରହିବି କେଉଠି ? ମତେ କିଏ ଖାଇବାକୁ ଦେବ? କାମ ନ କରି ଖାଲି ଅ.ବ.ଚ.ପଢ଼ିଲେ ମାଆ କହନ୍ତି ପାଟିକୁ ଗୁଣ୍ଡା ଯିବ କିପରି ?''

(କୁନ୍ତଳା କୁମାରୀ ଆଚାର୍ଯ୍ୟ- ଗଳ୍ପ- ''କ୍ରାନ୍ତିକାରୀ'')

ପ୍ରଶ୍ନ :- ସୁଇଡ଼ିସ୍ ମହିଳା ଓ ଓଡ଼ିଶାର ମହିଳାଙ୍କ ମଧ୍ୟରେ ପାର୍ଥକ୍ୟ କଣ ?

ଉ:- ମୋ ମତରେ ଓଡ଼ିଶାର ଅଧିକାଂଶ ସ୍ତ୍ରୀଲୋକ (କେତେକ ଆଦିବାସୀ ସ୍ତ୍ରୀ ଲୋକଙ୍କୁ ବାଦଦେଲେ) ବିବାହ ପରେ ନିଜର ଅନ୍ତର୍ନିହିତ ଗୁଣ ଗୁଡ଼ିକର ପରିପ୍ରକାଶ ବା ଉନ୍ନତି କରିବାକୁ ଚେଷ୍ଟା ବୋଧହୁଏ କରନ୍ତି ନାହିଁ। ସ୍ୱାମୀଙ୍କର ପଦବୀ ମାଧ୍ୟମରେ ନିଜର ପରିଚୟ ଅନ୍ୟ ଆଗରେ ପ୍ରକାଶ କରନ୍ତି। କିନ୍ତୁ ସୁଇଡିସ୍ ମହିଳାମାନେ ନିଜର ଶିକ୍ଷା ଓ ପଦବୀ ମାଧ୍ୟମରେ ନିଜର ପରିଚୟ ଅନ୍ୟ ଆଗରେ ଦେଇଥାନ୍ତି। ଅର୍ଥାତ୍ ନିଜର କ୍ୟାରିୟରକୁ ଉଚ୍ଚସ୍ଥାନ ଦିଅନ୍ତି। ବିବାହ ପାଇଁ ନିଜର ଶିକ୍ଷା, ବୁଦ୍ଧି ତଥା ସଉକ (hobby)ଗୁଡିକରେ ପୂର୍ଣ୍ଣଚ୍ଛେଦ ଦେବାକୁ ପସନ୍ଦ କରନ୍ତି ନାହିଁ। ସୁଇଡିସ୍ ମହିଳାମାନେ ପୁରୁଷମାନଙ୍କ ଦ୍ୱାରା ଡୋମିନେଟ୍ ହେବା ମୋଟେ ପସନ୍ଦ କରନ୍ତି ନାହିଁ କି ପୁରୁଷମାନଙ୍କୁ ତାହା କରାଇଦିଅନ୍ତି ନାହିଁ। ସ୍ୱାମୀସ୍ତ୍ରୀ ଉଭୟେ ମିଳିମିଶି ରୋଷାଇ ଘରେ କାମ କରନ୍ତି ବା ପିଲାଙ୍କର ତତ୍ତ୍ୱ ନିଅନ୍ତି।

(ସୁଇଡେନ୍‌ସ୍ଥିତ ଓଡ଼ିଆ ଚିତ୍ରଶିଳ୍ପୀ ପି.କେ. ମହାନନ୍ଦିଆଙ୍କ ପତ୍ନୀ ସୁଇଡିସ୍ ଝିଅ ଶ୍ରୀମତୀ ଚାରୁଲତା ମହାନନ୍ଦିଆଙ୍କ ଅଭିମତ- ସାକ୍ଷାତ୍- କବିତା ବାରିକ ''ଧରିତ୍ରୀ''- ୧୩-୫-୮୬)

''ସ୍ୱାମୀସ୍ତ୍ରୀ ସମ୍ପର୍କ ରହିଥିଲାବେଳେ ଯେଉଁ ସ୍ୱାମୀ ସ୍ତ୍ରୀକୁ ଉପେକ୍ଷା କରି ସମାଜର ଅନ୍ୟ ସମସ୍ତଙ୍କ ସହିତ ଚଳନ୍ତି, ସେ ଭଳି ପୁରୁଷକୁ ମୁଁ ଘୃଣାକରେ।... ସମାଜ ଭିତରେ ଚଳିଲା ବେଳେ କେବେକେବେ ବିବାହିତା ନାରୀ ଓ ପୁରୁଷ ଉଭୟ ପ୍ରେମ ବ୍ୟାପାରରେ ଜଡ଼ିତ ହୋଇ

ପଡ଼ନ୍ତି। କିନ୍ତୁ ଦାୟିତ୍ୱବୋଧକୁ ଯିଏ ବୁଝେ ତାର କିଛି ଅସୁବିଧା ହୁଏ ନାହିଁ। ଏସବୁ ବିଚାର କଲେ ନାରୀର ନିଷ୍ଠା ସବୁ କ୍ଷେତ୍ରରେ ଅଧିକ। ଦାୟିତ୍ୱବୋଧ, ସହନଶୀଳତା, ସୌଜନ୍ୟତା ଏସବୁ ଗୁଣ ଗୁଡିକ ଆପେ ଆପେ ନାରୀର ମନକୁ ଛାଇ ଯାଇଥାଏ ବହୁତବେଶି।... କୌଣସି ଅସାମାଜିକ କାର୍ଯ୍ୟ ଭିତରକୁ ନ ଯାଇ ବ୍ୟକ୍ତିତ୍ୱକୁ ପ୍ରଶଂସା କରିବା ହେଲା ଗୋଟାଏ ସୁସ୍ଥ ନାରୀର ଧର୍ମ।''

(ବୀଣାପାଣି ମହାପାତ୍ର- ସାକ୍ଷାତ୍- ଜ୍ୟୋତ୍ସ୍ନା ରାଉତରାୟ, ରବିବାର ସମ୍ବାଦ- ମାର୍ଚ୍ଚ-୧୯, ୧୯୮୯)

"Ah, wasteful woman, she who may
On her sweet self set her own price
Knowing man can not choose but pay,
How has she cheapened paradise;
How given for nought her priceless gift,
How spoiled the bread and spilled the wine,
Which, spent with due respective thrift
Had made brutes men and men divine."

**(Coventry Patmore (1823-1896) 'The Angel in the House'.)**

# ମୋତେ ଯେମିତି ଲାଗିଛି

"ମୋ ଦୃଷ୍ଟିରେ ନାରୀ" ବହିର ଲେଖିକା ଅଧ୍ୟାପିକା ଡକ୍ଟର କବିତା ବାରିକଂକୁ ମୁଁ ଜଣେ ସଫଳ ଗାଳ୍ପିକା ଭାବରେ ବହୁଦିନରୁ ଜାଣେ। ତାଂକ ଗଳ୍ପ ଗୁଡ଼ିକ ଜୀବନଧର୍ମୀ ଏବଂ ନାରୀ-ପୁରୁଷ ସଂପର୍କରେ ବିଭିନ୍ନ ଦିଗର ରୂପାୟନ। ଆଧୁନିକ ଆଦର୍ଶ ମଣିଷ ଏକ ମାନବିକ-ପୂର୍ଣ୍ଣ ମଣିଷ ହେବା ଦରକାର ଯିଏ କି ସମାଜକୁ ସୁସ୍ଥ କରି ଗଢ଼ିପାରିବ। ଏଭଳି ଚରିତ୍ର ପ୍ରତି ସେ ତାଂଙ୍କ ଗଳ୍ପରେ ଗୁରୁତ୍ୱ ଦେଇଛନ୍ତି। ଗୋଟିଏ ପଟେ ତାଂକର ମନସ୍ତାତ୍ୱିକ ଚରିତ୍ର, ଅନ୍ୟପଟେ ସମାଜଧର୍ମୀ ଚରିତ୍ର ତାଂକ ଗଳ୍ପ ଗୁଡ଼ିକୁ ଜୀବଂତ କରିଛି। ପ୍ରତ୍ୟେକ ଗଳ୍ପ ତାଂକର ଜୀବନର ସତ୍ୟ ପ୍ରକାଶ କରିଥାଏ ଓ କିଛିନା କିଛି ଶିକ୍ଷଣୀୟ ଭାବନା ଉଦ୍ରେକ କରିଥାଏ। ଏଥି ପୂର୍ବରୁ ତାଂକର ଦୁଇଟି ଗଳ୍ପ ସଂକଳନ ଯଥା "ଭିନ୍ନସହର" ଓ "ଛକ" ଏବଂ ଗୋଟିଏ ଉପନ୍ୟାସ "ପର୍ଦାପଛର ଗୀତ" ପ୍ରକାଶ ପାଇ ସୁଧୀ ମହଲରେ ଆଦୃତ ହୋଇଛି। ଆଉ କେତୋଟି ଗଳ୍ପ ସଂକଳନ ଏବଂ ଉପନ୍ୟାସ ପ୍ରକାଶ ଅପେକ୍ଷାରେ।

"ମୋଦୃଷ୍ଟିରେ ନାରୀ" ତାଂକର ନାରୀ ସମସ୍ୟା ଉପରେ ଏକ ବିଶ୍ଳେଷଣାତ୍ମକ ଦୃଷ୍ଟିପାତ କୁହାଯାଇ ପାରେ। ଆଧୁନିକ ନାରୀର ସଚେତନତା ଓ ସାମାଜିକ ତଥା ପାରିବାରିକ ଭୂମିକା ସଂପର୍କରେ ସେ ଆଲୋଚନା କରିଛନ୍ତି। ତାଂକ ଦୃଷ୍ଟିରେ ନାରୀ ପୁରୁଷର କେବଳ ଉପଭୋଗ୍ୟ ବସ୍ତୁ ନୁହେଁ, ସେ ତାର ପରିପୂରକ। ସାଂପ୍ରତିକ ସମାଜ ବ୍ୟବସ୍ଥାରେ ନାରୀସ୍ୱାଧୀନତା କେବଳ ଏକ ମୌଖିକ ଆନ୍ଦୋଳନରେ ପରିଣତ ହୋଇଛି। ନାରୀର ପ୍ରକୃତ ସ୍ୱାଧୀନତା ଆସିବ ସେତିକିବେଳେ ଯେତେବେଳେ ତାର ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ପାଇଁ ସେ ସମସ୍ତ ସୁଯୋଗ ପାଇବ। ଏଥିପାଇଁ ପୁରୁଷ କୈନ୍ଦ୍ରିକ ସମାଜ ବ୍ୟବସ୍ଥାର ପରିବର୍ତ୍ତନ ଲୋଡ଼ା।

ଏହି ପୁସ୍ତକରେ ଲେଖିକା ନାରୀର ସାମାଜିକ, ଅର୍ଥନୈତିକ, ମନସ୍ତାତ୍ୱିକ, ବ୍ୟକ୍ତିକ ସମସ୍ୟା ଉପରେ ଆଲୋକପାତ କରିଛନ୍ତି। ବିଶେଷକରି ସାଂପ୍ରତିକ ନିର୍ଯ୍ୟାତୀତା ନାରୀମାନଂକୁ ସେ ଗଭୀର ଭାବରେ ଅନୁଧ୍ୟାନ କରି ଉପସ୍ଥାପନ କରିଛନ୍ତି। ବିଶ୍ୱର ସମସ୍ତ ନିର୍ଯ୍ୟାତୀତା ନାରୀମାନଂକ ପ୍ରତି ଲେଖିକା ଅତ୍ୟଂତ ସଂବେଦନାଶୀଳା ହୋଇ ଉଠିଛନ୍ତି। ନାରୀମାନଙ୍କର ଏହି ସମସ୍ୟା ଗୁଡ଼ିକର ସମାଧାନର ରାସ୍ତା ମଧ୍ୟ ଲେଖିକା ନିଜ ଦୃଷ୍ଟିରେ ଉପସ୍ଥାପନା କରିଛନ୍ତି। ବିଶେଷ କରି ଏକ "ସତ୍ୟ, ଶିବ, ସୁନ୍ଦର" ସମାଜର ସେ କାମନା କରିଛନ୍ତି। ଗୋଟିଏ ପଟେ ନାରୀର ସହନଶୀଳତା, ଅନ୍ୟପଟେ ନାରୀର ଅହଂକାର ଏ ଦୁଇଟି ଜିନିଷକୁ ସେ ଦର୍ଶାଇଛନ୍ତି। ନାରୀ ସମସ୍ୟାକୁ ଆଧାର କରି ପ୍ରବନ୍ଧ ସଂକଳନ କରିବା ନିଶ୍ଚିତ ଭାବରେ ଲେଖିକାଂକ ଏକ ସ୍ୱାଗତ ପଦକ୍ଷେପ। ପୁଣି ସେ ନିଜର ଯେଉଁଭଳି ସ୍ୱାଧୀନ ମତ ଓ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ତାହା ମୋତେ ମୁଗ୍ଧ କରିଛି। ତାଛଡ଼ା ନାରୀର ଆଇନଗତ ଅଧିକାର ସଂପର୍କରେ କେତେକ ତଥ୍ୟ ସଂଗ୍ରହ କରି ଏ ପୁସ୍ତକରେ ସନ୍ନିବେଶିତ କରିଛନ୍ତି, ଯାହାକି ତାଂକ ଦୃଷ୍ଟିରେ ଥିବା ନିର୍ଯ୍ୟାତୀତା ନାରୀମାନଂକୁ ଆଇନଗତ ଅଧିକାର ସଂପର୍କରେ ସହାୟତା କରିବ। ବର୍ତ୍ତମାନ ସମାଜରେ ଯୌତୁକ ଏକ ଉତ୍କଟ ବ୍ୟାଧିରେ ପରିଣତ ହେଇଛି। ନାରୀର ନିରାପତ୍ତା ବିପନ୍ନ ହେଉଛି। ସାଧାରଣ ଲୋକଂକର ଆଇନ୍ ଉପରୁ ଆସ୍ତେ ଆସ୍ତେ ବିଶ୍ୱାସ ତୁଟି ଯାଉଛି। ନାରୀ ଯେତେ ଶିକ୍ଷିତା ହେଉଛି ସେତେ ଅସହାୟ ଅନୁଭବ କରୁଛି। ଏସବୁ ବିଷୟରେ ଦୀର୍ଘ ଆଲୋଚନା କରିଛନ୍ତି ଲେଖିକା ଏହି ସଂକଳନରେ। ତାର ସମାଧାନ ସଂପର୍କରେ ନିଜର ମତାମତ ମଧ୍ୟ ଦର୍ଶାଇଛନ୍ତି। ତାଂକ ମତରେ "ଘରେ ଘରେ ଯୌତୁକ ବିରୋଧି ଆଂଦୋଳନ ତେଜି ନ ଉଠିଲା ଯାଏଁ

ଆଇନ୍ ପ୍ରଣୟନ ଓ ସଂଶୋଧନ କେବଳ କାଗଜ କଲମର କଥା ହୋଇ ରହିଥିବ ଆଉ ଯୌତୁକ ବଳିରେ ନାରୀ ମୁଣ୍ଡ ଦେଖାଇ ଚାଲିଥିବ।'' ନାରୀର ସୁରକ୍ଷା ପାଇଁ, ନିରାପତ୍ତା ପାଇଁ ଲେଖିକା ଯୁବସମାଜର ସହଯୋଗ କାମନା କରିଛନ୍ତି। କାରଣ ''ଆଇନ୍ କାନୁନ୍ ଦ୍ୱାରା କେବେ ମନର ସଂସ୍କାର କରାଯାଇ ପାରେନା। ଏଠି ଦରକାର ନୈତିକ ବିବେକ ବା ଆନ୍ତରିକ ମାନବିକତା।'' ''ସୁଖର ମାପକାଠି'' ପ୍ରବନ୍ଧଟିରେ ସେ ଦୁଇ ବିପରୀତ ଧର୍ମୀ ନାରୀ ଚରିତ୍ରର ତୁଳନା କରିଛନ୍ତି। ତାଂକ ମତରେ ''ସ୍ତ୍ରୀହିଁ ହେଲା ଘରର ଚାବିକାଠି। ସେ ଜୀବନ ନଉକାକୁ ଯେମିତି ମୋଡ଼ିବ ମଂଗ ସେମିତି ମାଡ଼ିଯିବ। ସେମାନେ ସୃଷ୍ଟିକାରିଣୀ ଯେମିତି, ସେମିତି ଧ୍ୱଂସ କାରିଣୀ''। ତାଛଡା ଲେଖିକାପତ୍ନୀ ଓ ଓଡ଼ିଆ ଲେଖିକାମାନଙ୍କର ଅବଦାନ ସଂପର୍କରେ ଏଥିରେ ଆଲୋଚନା କରାଯାଇଛି। ଜଣେ ଲେଖିକାକୁ ଲେଖକଭଳି ସୁସ୍ଥ ପରିବେଶ ଯୋଗାଇ ଦିଆଯାଉଛି କି? ବିବାହ ପରେ କାହିଁକି ଲେଖିକାମାନେ ତାଂକର କଲମ ଛାଡ଼ି ଦେଉଛନ୍ତି? ପ୍ରେରଣାର ଅଭାବ ନା ଘରର ଝଂଝାଳ ଏହାର କାରଣ? ଲେଖିକାଂକ ଭାଷାରେ ''ସାଧାରଣ ଘରଣୀଠାରୁ ଲେଖିକା ପତ୍ନୀ ଯେ ଅଲଗା ଓ ତାଂକୁ କେବଳ ଖାଇବାକୁ, ପିଂଧିବାକୁ ଏବଂ ମା' ହେବାର ସୁଯୋଗ ଦେବାଛଡ଼ା ଯେ ଆହୁରି କିଛି ସୁଯୋଗ ସୁବିଧା ଦରକାର ଏକଥା ଅନେକ ସ୍ୱାମୀ କି ଅଭିଭାବକ ବୁଝି ପାରଂତି ନାହିଁ।'' ବିଧବା ବିବାହ ସପକ୍ଷରେ ଲେଖିକା ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ରାମ ମୋହନ ରାୟଂକ ଠାରୁ ଆରଂଭ କରି ଗାଂଧିଜୀ ପର୍ଯ୍ୟନ୍ତ ବହୁ ମତାମତ ଉଲ୍ଲେଖ କରି ନିଜସ୍ୱମତ ଦେଇଛଂତି। ''ପ୍ରଶ୍ନ ହେଲା ପୁରୁଷର ଦ୍ୱିତୀୟ କି ତୃତୀୟ ବିବାହ ପାଇଁ ଯେତେବେଳେ ପୁଅଟିକୁ ସହଜରେ ପାତ୍ରୀ ମିଳିଯାଉଛି, ସେତେବେଳେ ଝିଅଟିର ଦ୍ୱିତୀୟ ବିବାହ ନିମଂତେ ପାତ୍ରମାନେ ପଛେଇ ଯାଉଛନ୍ତି କାହିଁକି? କାହିଁକି ସେମାନେ କୁସଂସ୍କାର ବା କୁପରଂପରାରୁ ମୁକ୍ତ ହୋଇପାରୁନାହାଂତି?'' ନାରୀଶିକ୍ଷା, ନାରୀମୁକ୍ତିର ଆହ୍ୱାନ ଯେ ଏକ ସ୍ଲୋଗାନରେ ପରିଣତ ହୋଇଛି ଲେଖିକା କବିତା ବାରିକ ଏହାକୁ ତୀବ୍ର ସମାଲୋଚନା କରିଛନ୍ତି। ଅର୍ଥନୈତିକ ଅବସ୍ଥା ନ ସୁଧୁରିଲେ ନାରୀ ସ୍ୱାଧୀନତାର ମାନେ କିଛି ହୁଏନା ବୋଲି ସେ ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି। ଛାଡ଼ପତ୍ର ସ୍ୱାମୀ ପୁରୁଷର ଜୀବନକୁ ଆସ୍ତେ ଆସ୍ତେ ବ୍ୟାଧି ଭଳି କେମିତି ବ୍ୟାପିଯାଇ ଆମ ସଂସ୍କୃତିକୁ ଏବଂ ଯୁଗ୍ମ ଜୀବନକୁ ନଷ୍ଟ କରି ଦେଉଛି ତାହା ସେ ଦର୍ଶାଇଛନ୍ତି। ବୁଝାମଣା, ତ୍ୟାଗମନୋଭାବ ସହ ପରିସ୍ଥିତି ସହ ଖାପଖୁଆଇ ଚାଲିବାଟାହିଁ ଦାଂପତ୍ୟ ଜୀବନର ସୁଖର ମାପକାଠି। ଶେଷ ପ୍ରବନ୍ଧରେ ଲେଖିକା ପଚାରିଛନ୍ତି ''ନାରୀନିର୍ଯାତନାର ଶେଷ କେଉଁଠି?'' ଏ ପ୍ରଶ୍ନ ଲେଖିକାଂକ ସମଗ୍ର ସମାଜକୁ ପ୍ରଶ୍ନ। ବାସ୍ତବିକ ''ଏଭଳି ଝିଅମାନଙ୍କୁ ଆମ୍ଭେସବୁ କେବେ ମୁକ୍ତ କରିବା ବା ସଚେତନ କରାଇବା?'' ଯାହାକି ପ୍ରତ୍ୟେକ ଚିଂତାଶୀଳ ବ୍ୟକ୍ତି ଚିଂତା କରିବା ଦରକାର।

ମୋଟ ଉପରେ କହିଲେ ଏଭଳି ଖଂଡିଏ ପୁସ୍ତକ ଯେ ବର୍ତମାନର ସାମାଜିକ ପରିପ୍ରେକ୍ଷୀରେ ନିତାଂତ ଆବଶ୍ୟକ ଥିଲା ଏହା କହିବା ନିଷ୍ପ୍ରୟୋଜନ। ଏହା ନାରୀମାନଂକୁ ଏବଂ ପୁରୁଷମାନଂକୁ ମଧ୍ୟ ନିଶ୍ଚିତ ମାର୍ଗଦର୍ଶନ ଦେବ।

ଲେଖିକାଂକ ଭାଷା ଯେଉଁପରି ସ୍ୱଚ୍ଛନ୍ଦ ସେହିପରି ସାବଲୀଳ। ତାଂକ ଭାଷାରେ ଏକ ସ୍ୱତନ୍ତ୍ର ପ୍ରାଣପ୍ରାଚୁର୍ଯ ଦେଖାଯାଏ। ଏ ପୁସ୍ତକ ନାରୀଜୀବନର ଏକ ସ୍ୱଚ୍ଛ ଜୀବଂତ ଦଲିଲ କହିଲେ ଅତ୍ୟୁକ୍ତି ହେବନାହିଁ।

ଲେଖିକା ଓଡିଆ ଭାଷା ସାହିତ୍ୟର ଜଣେ ଅଧ୍ୟାପିକା। ସାମ୍ବାଦିକତା କ୍ଷେତ୍ରରେ ମଧ୍ୟ ତାଂକର ଅଭିଜ୍ଞତା ତାଂକୁ ଏ ପୁସ୍ତକ ଲେଖିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିଛି। ଶେଷରେ ମୋର ଆଶା ଓ ବିଶ୍ୱାସ ଏ ପୁସ୍ତକ ସୁଧୀସମାଜରେ ନିଶ୍ଚୟ ଆଦୃତ ହେବ। କବିତାଂକୁ ମୁଁ ସର୍ବାଂତ କରଣରେ ଜଣେ ଯଶସ୍ୱିନୀ ଲେଖିକା ଏବଂ ଗାଳ୍ପିକା ହେବା ପାଇଁ ମୋର ସଦିଚ୍ଛା ଓ ଶୁଭକାମନା ଜଣାଉଛି।

ମିସନରୋଡ୍, କଟକ-୧
ତା୨।୩।୧୯୯୨

**ସଚ୍ଚିଦାନଂଦ ରାଉତରାୟ**

# ବନ୍ଦିନୀ ଅମୃତାଙ୍କ ପାଇଁ

ବେଦ କହେ, ''ଯତ୍ର ନାର୍ଯ୍ୟାସ୍ତୁ ପୂଜ୍ୟନ୍ତେ ରମ୍ୟନ୍ତି ତତ୍ର ଦେବତାଃ'' ଅର୍ଥାତ୍ ଯେଉଁଠି ନାରୀ ପୂଜା ପାଏ ସେଠି ଦେବତାମାନେ ଭ୍ରମଣ କରନ୍ତି।

ମୁଁ ନାରୀକୁ ଅମୃତା କହେ। ନିଜେ ନାରୀ ବୋଲି ନୁହେଁ। ନାରୀର ଏହି ବିଷ ପିଇ ଅମୃତଦାନ କରିବା ଗୁଣ ଦେଖି। ସତରେ ଈଶ୍ୱରଙ୍କର ଏକ ଅଦ୍‌ଭୁତ, କମନୀୟ ସୃଷ୍ଟି ନାରୀ। ଯେଉଁ ନାରୀ ପାଇଁ ସବୁ ଯୁଗରେ ବିଷର ପିଆଲା ରଖା ଯାଇଛି, କିନ୍ତୁ ହସିହସି ପିଇବାରେ ସେ କେବେ ଦ୍ୱିଧା କରି ନାହିଁ। କିନ୍ତୁ ସେ ଯେ ଅମୃତା, ସେଥିପାଇଁ ସବୁ ସତ୍ତ୍ୱେ ନାରୀ ବଞ୍ଚିଛି। ଅନ୍ୟର ଜୀବନରେ ବଞ୍ଚିବାର ପାଥେୟ ସାଜିଛି। ନିଜେ ତିଳ ତିଳ ଜଳି ମଧ୍ୟ ଅନ୍ୟକୁ ଆଲୋକ ଦେଖାଇବାରେ କେବେ ହେଳା କରି ନାହିଁ। ପାଇବାର ଆଶା ମଧ୍ୟ ରଖି ନାହିଁ। ଦେଇ ଦେଇ କିନ୍ତୁ ସେ ନିଃଶେଷ ହୋଇ ଯାଇଛି। ଅଥଚ ଆମର ଏ ପୁରୁଷକୈନ୍ଦ୍ରିକ ସମାଜ ତାକୁ ସବୁସମୟରେ ଫୁଟ୍‌ପାଥରେ ନିଲାମ କରିଛି। 'ଦେବୀ'ର ଆସନରୁ ଓହ୍ଲାଇ ନେଇ ତାକୁ 'ବେଶ୍ୟା'ରେ ପରିଣତ କରିଛି। ନିଜ କାମନାର ଖେଳଣା ସଜାଇ ତାର ନାରୀତ୍ୱକୁ ଅପମାନ କରିଛି।

ହଁ, ସୌନ୍ଦର୍ଯ୍ୟର ଦେବୀ ନାରୀ। ତା'ର ଆଖିର ଚାହାଁଣୀ, ଭ୍ରୂଲତା, ଚୂର୍ଣ୍ଣକୁନ୍ତଳ, ନାସା, ରକ୍ତିମ ଓଷ୍ଠ, ଅଙ୍ଗ ସୌଷ୍ଠବକୁ ନେଇ ଆଜିଯାଏଁ କେତେ ଯେ ଚିତ୍ର, ସାହିତ୍ୟ, ସଂଗୀତ ସୃଷ୍ଟି ହୋଇଛି ତା'ର କଳନା ନାହିଁ। ପୁରୁଷ ତା'ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଛି, ପ୍ରେରଣା ପାଇଛି, ଦେବତାମାନେ ମଧ୍ୟ ପାଗଳ ହୋଇଛନ୍ତି। ହେଲେ ପ୍ରକୃତରେ ନାରୀପାଇଁ ସେ ସୌନ୍ଦର୍ଯ୍ୟ କାଳ ହୋଇଛି। ବିକ୍ ବଜାରରୁ ତାକୁ ଉଠାଇ ନେଇ ଧର୍ଷଣ କରାଯାଇଛି। ମୋଗଲମାନେ, ରାଜା ମହାରାଜାମାନେ ଦିନେ ଯାହା କରୁଥିଲେ ଆଜି ସାଧାରଣ ମଣିଷ ସେଇ ପ୍ରବୃତ୍ତିରୁ ନିବୃତ୍ତ ହୋଇ ପାରି ନାହିଁ। ନାରୀର ସୌନ୍ଦର୍ଯ୍ୟ ତା'କୁ ଧ୍ୱଂସ କରି ଦେଇଛି। ସେ ଯେତେ ଶିକ୍ଷିତା ହେଲେ ହେଁ, ଯେତେ ପ୍ରତାଭାର, ସମ୍ମାନର, ଉଚ୍ଚପଦବୀର ଅଧିକାରିଣୀ ହେଲେ ହେଁ ପୁରୁଷର ଏକ ସାଧାରଣ ବିଳାସ ସାମଗ୍ରୀ ଠାରୁ ଉଚ୍ଚକୁ ଉଠିପାରି ନାହିଁ। ପୁରୁଷର ଲୋଳିହାନ କାମନା ପାଖରେ ତା'ର ସମସ୍ତ ସତ୍ତା ପାଉଁଶ ହୋଇ ଯାଇଛି। ଏଭଳି ଅତ୍ୟାଚାର ଆହୁରି କେତେ ଯୁଗ ପାଇଁ ଯେ ଜାହିର ରହିବ ସେ କଥା ମଧ୍ୟ ସେ ଜାଣେନା। ତଥାପି ସହିବାର ଶକ୍ତି ତା'ର ଶେଷ ହୋଇ ଯାଇ ନାହିଁ। ଯୂପକାଠିରେ ନିଜକୁ ବଳି ଦେଇ ମଧ୍ୟ ସେ ବଞ୍ଚିଛି। ବାରବାର ନିଜକୁ ଆହୂତି ଦେଇ ସେ ନିଜର ଧୈର୍ଯ୍ୟର, ସହନ ଶକ୍ତିର ପ୍ରମାଣ କରିଛି।

ନାରୀକୁ ମୁଁ ସମ୍ମାନ କରେ, ବନ୍ଦନା କରେ କାହିଁକିନା ସେ ବିଶ୍ୱର ସମଗ୍ର ପୁରୁଷକୁ ନିଜ ଗର୍ଭରେ ଧାରଣ କରିଛି। ସେ ସୃଷ୍ଟିକାରିଣୀ, ପୁରୁଷ ଜାତିର ଜନ୍ମଦାତ୍ରୀ। ଗର୍ଭଧାରଣ କେବଳ ନାରୀହିଁ କରିପାରେ। ତା ବିନା ସୃଷ୍ଟି ଅସମ୍ଭବ। ସେ ନଥିଲେ ସୃଷ୍ଟି ନଥାନ୍ତା। ଯେଉଁ

ପୁରୁଷ ମା' ଭଉଣୀ ନ ମାନି ସମସ୍ତ ହୀନ କାର୍ଯ୍ୟ କରିଯାଏ, ସେ ଭୁଲିଯାଏ ଯେ ତା'ର ମଧ୍ୟ ଜନ୍ମ ହୋଇଥିଲା କୌଣସି ନାରୀର ଗର୍ଭରୁ। ନାରୀକୁ ଅପମାନନା ଅର୍ଥ ମାତୃଜାତିର ଅପମାନନା। ତଥାପି ଜନ୍ମଦାତ୍ରୀ ହିସାବରେ ପୁଅକୁ ଜନ୍ମ ଦିଏ। ତା'ର ମହାନ ଗୁଣରେ ସେ ନିଜ ପୁତ୍ରକୁ କ୍ଷମା କରିଦିଏ, କାରଣ ନାରୀର ଅନ୍ୟ ନାଁ ସର୍ବଂସହା। ସେ ସର୍ବଂସହାର ବିଶାଳ ହୃଦୟକୁ କାମୁକ ପୁରୁଷ କୌଣସି ଜନ୍ମରେ ମଧ୍ୟ ମାପି ପାରିବ ନାହିଁ କେବେ। ନାରୀର ଶାରୀରିକ, ମାନସିକ, ଭାବନାତ୍ମକ ସଂରଚନା ସଂପର୍କରେ ଜ୍ଞାନ ଅନୁଭବ ଏବଂ ତାର ତ୍ୟାଗ, ମମତାରେ ଭିଜା ହୃଦୟକୁ ଚିହ୍ନିବା ପାଇଁ ପୁରୁଷକୁ ଆହୁରି କେତେଯୁଗ ଲାଗିଯିବ।

ଯେଉଁ ନାରୀ ଏତେ ବଡ଼ ସୃଷ୍ଟିର କାରିଣୀ, ସେହି ନାରୀ ସାମାନ୍ୟ ଯୌତୁକ ପାଇଁ ପେଟ୍ରୋଲ, କିରୋସିନିରେ ପୋଡ଼ାହୁଏ। ନିର୍ଯ୍ୟାତନା, ବିଷ, ଦଉଡି, ଶ୍ୱାସରୁଦ୍ଧ କରି ଯେ କୌଣସି ଉପାୟରେ ତାକୁ ହତ୍ୟା କରାଯାଏ। ଏକ କୋମଳ, ସୁନ୍ଦର ଜୀବନକୁ ଅର୍ଥ ଲାଳସାରେ ଲିଭାଇ ଦିଆଯାଏ। ବିନା ଯୌତୁକରେ ତା' ଜୀବନରେ ମାଙ୍ଗଳିକ ଶଙ୍ଖ ବାଜି ପାରେନା। ସେ ବୁଢ଼ୀ ହୋଇଯାଏ। ଯେଉଁଠି ବୀ ବାଜେ, ପରୀକ୍ଷା ଦେଇ ଦେଇ, ଜଳିଜଳି ସେ ସରିଯାଏ। ଏମିତିକି ଜୀବନ ସହିତ ମଧ୍ୟ ବାଜି ଲଗାଇବାକୁ ପଡ଼େ ।

ହେଲେ ନାରୀଜୀବନର କ'ଣ ମାନେ ନାହିଁ? ସବୁଦିନ ଶୋଷିତ ହେବା ପାଇଁ କ'ଣ ତା'ର ଜନ୍ମ? ତା'ର ସୌନ୍ଦର୍ଯ୍ୟ କ'ଣ ତା' ପାଇଁ ଅଭିଶାପ? ତା'ର ସୃଷ୍ଟି କ'ଣ କେବଳ ପୁରୁଷର କାମନାର ସାମଗ୍ରୀ ପାଲଟିବା? ତା'ର ଆଦର୍ଶ, ତା'ର ପ୍ରତିଭା, ତା'ର ଅନ୍ତଃ ସୌନ୍ଦର୍ଯ୍ୟର କ'ଣ କିଛି ହେଲେ ମାନେ ନାହିଁ? ମୂଲ୍ୟ ନାହିଁ? ସଭ୍ୟତା ଯେତେ ଆଗେଇ ଚାଲିଛି, ନାରୀ ସେତେ ନିର୍ଯ୍ୟାତିତା ହେଉଛି, ନାରୀ ଜୀବନରେ ଯେତେ ପ୍ରଗତି ଆସୁଛି ସେତେ ସେ ନିଜକୁ ଅସହାୟା, ବିପନ୍ନ ମନେକରୁଛି। ଚାକିରି, ନିର୍ବାଚନ ଯେକୌଣସି କ୍ଷେତ୍ରରେ ତା'ର ସ୍ଥାନ ସଂରକ୍ଷଣ ତାକୁ ନିରାପତ୍ତା ଦେଇ ପାରିନାହିଁ। ଏ କ୍ଷେତ୍ରରେ ବିଶିଷ୍ଟ ଔପନ୍ୟାସିକା **Nayantara Sahgal**ଙ୍କ ଉକ୍ତି ମନେ ପଡ଼େ। ତାଙ୍କ ଭାଷାରେ, **"This is a country where women are murdered for dowry, roasted alive on funeral pyres, crushed into conformity, sold into slavery, raped in police custody, and all this goes on and on happening. Now Shankaracarya of Puri is claiming a religious sanction for crimes against women. XXX So, how can we, in this country, keep life and politics, literature and politics, apart?***

ତେଣୁ ନାରୀର ନିରାପତ୍ତା ଆଜି ସବୁଠାରୁ ବ ଡ଼ପ୍ରଶ୍ନ। ଏପରି କେଉଁ ଜାଗା ଅଛି, ଦେଶ ଅଛି ଯେଉଁଠି ସେ ସର୍ବସୁରକ୍ଷିତ ରହିପାରିବ? ଯୁଗେ ଯୁଗେ ପୁରୁଷର ଲାଳସା ପାଖରେ ରମ୍ଭା, ମେନକା, ଉର୍ବଶୀ, ଜରତାମାନେ ନିଜକୁ ବଳି ପକାଇଛନ୍ତି। କେବେ ଶୁଣିଛ କି ରମ୍ଭା, ମେନକାଙ୍କ ସୀମନ୍ତରେ ପୁରୁଷ ସିନ୍ଦୁର ଦେବା କଥା? ବାରବଧୂରୁ ବରବଧୂରେ ପରିଣତ କରିବା କଥା? ତଥାପି ସମାଜର ରୀତି ଆଶ୍ଚର୍ଯ୍ୟ ଲାଗେ। ଯେଉଁ ବେଶ୍ୟାକୁ ଅସ୍ପୃଶ୍ୟା, କଳଙ୍କିନୀ, ପାପିନୀ କହି ସମାଜ ବାଛବାଦ କରେ, ଦୁର୍ଗତିନାଶିନୀ ମା' ଦୁର୍ଗାଙ୍କ ପୂଜାରେ ତାରି ଘରର

---

*(Nayanatara Sahgal- "Passion for India"- "Indian Literature", Jan-Feb-1989 issue.)

ଦାଣ୍ଡରୁ ମାଟି ଖୋଳିନେଇ ବିଗ୍ରହ ପ୍ରତିଷ୍ଠା କରେ। ଜଗତାର ବୃଦ୍ଧିକୁ, ଜଗତାର ଛାଇକୁ, ଜଗତାର ନାରୀତ୍ୱକୁ ସତେକି ସମ୍ମାନ ଦେବା ପାଇଁ ବର୍ଷରେ ଥରେ ଆସନ୍ତି ମହିଷମର୍ଦ୍ଦିନୀ ମା' ଦୁର୍ଗା। ସେଥିପାଇଁ ବୋଧହୁଏ ଶାସ୍ତ୍ର କହିଛି "ଯାଦେବୀ ସର୍ବଭୂତେଷୁ, ଶକ୍ତି ରୂପେଣ ସଂସ୍ଥିତା, ନମସ୍ତସ୍ୟୈ, ନମସ୍ତସ୍ୟୈ, ନମସ୍ତସ୍ୟୈ, ନମୋ ନମଃ"। ଏ ନାରୀ ଶକ୍ତି କଲ୍ୟାଣକାରୀ। ତେବେ ଏକବିଂଶ ଶତାବ୍ଦୀ ଶେଷରେ ନାରୀ କି ରୂପ ନେବ ତା ଏକ ଚିନ୍ତାର ବିଷୟ। ସବୁଠୁ ଆଶ୍ଚର୍ଯ୍ୟ କଥା ବେଶ୍ୟାକୁ ସମାଜ ବାଛନ୍ଦ କଲାବେଳେ ତାର ଗ୍ରାହକକୁ ସମାଜ ଗ୍ରହଣ କରିଛି ଓ ଏମାନେ ଭଦ୍ରମୁଖା ପିନ୍ଧି ସମାଜରେ ବେଶ୍ ସମ୍ମାନର ସହିତ- ଜୀବନ ବିତାଇ ପାରନ୍ତି।

ଏତିକି ସ୍ୱୀକାର୍ଯ୍ୟ ଯେ ବହୁଭାବରେ ଆଧୁନିକ ନାରୀ ସ୍ୱାବଲମ୍ବନଶୀଳା ହେଉଛି। ଯେଉଁ ନାରୀକୁ ସ୍ୱାମୀ ନିଜର ବ୍ୟକ୍ତିଗତ ସଂପତ୍ତି ଭଳି ମନଇଚ୍ଛା ବ୍ୟବହାର କରୁଥିଲା **(Woman is her husband's own property and she has no other free life)**ସେହି ନାରୀ ଆଉ ତା'ସ୍ୱାମୀର ହାତଖେଳଣା ହେଇ ରହିନାହିଁ। ଛାଡ଼ପତ୍ରର ଧମକ ତାକୁ ବିଚଳିତ କରି ପାରୁନି। ବରଂଚ ସେ ଏକା ଏକା ଜୀବନ ସଂଗ୍ରାମରେ ଲହୂଲୁହାଣ ହେଇ ବି ଯୁଝି ଶିଖିଛି। ବଞ୍ଚି ଶିଖିଛି। ନାରୀ ଯେ ଏକ ବିପଣୀର ସାମଗ୍ରୀ ନୁହେଁ, ତାର ନିଜସ୍ୱ ଅସ୍ତିତ୍ୱ ରହିଛି, ସ୍ୱାଭିମାନ, ପରିଚୟ ଅଛି ଏକଥା ସେ ପ୍ରମାଣ କରିଛି।

ନାରୀ ପୁରୁଷ ଯେମିତି ଗୋଟିଏ ରଥର ଦୁଇଟି ଚକ। ଗୋଟିଏ ବୃନ୍ତର ଦୁଇଟି ଫୁଲ। ନାରୀର ସାମାଜିକ, ଆର୍ଥିକ ବିକାଶରେ ହିଁ ଦେଶର ବିକାଶ। ତେଣୁ ଗୋଟିଏ ଦେଶର ନାରୀ ଯେତେ ଉନ୍ନତ ସେ ଦେଶ, ସେ ସମାଜ ସେତେ ଉନ୍ନତ। ସେମାନଙ୍କ ହାତରେ ହିଁ ଅଛି ଭବିଷ୍ୟତ ନାଗରିକମାନଙ୍କ ଭବିଷ୍ୟତ ଗଠନ। ତେଣୁ ନାରୀମାନଙ୍କ ସୁରକ୍ଷା, ନିରାପତ୍ତା, ସ୍ୱାଧୀନତା, ଶିକ୍ଷା ହିଁ ହେଉଛି ସବୁଠାରୁ ବଡ଼ ଆବଶ୍ୟକତା। ନାରୀକୁ କେବଳ ସନ୍ତାନ ପ୍ରସବ ଓ ଲାଳନ ପାଳନର ମାଧ୍ୟମ ବା ଘର ପାଇଁ ରାନ୍ଧିବାର ଛାଗା ଚାକରାଣୀ କରି ଆଜିବି ପୁରୁଷ ନିଜର ପୁରୁଷତ୍ୱ ଜାହିର କରେ। ବେଳେ ବେଳେ ଆମ ସମାଜର ମହିଳାମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ସାମାଜିକ ପ୍ରଥା ବା ବ୍ୟବସ୍ଥା କଥା ଚିନ୍ତା କଲେ ମନରେ ବିଦ୍ରୋହ ସୃଷ୍ଟି ହୁଏ। ସବୁ ନୀତି ନିୟମ, ପ୍ରଥା ସତେକି ଏହି ନାରୀଜାତି ପାଇଁ। କିଛି ଅଶୁଭ ଘଟଣା ଘଟିଲେ ନୂଆ ବାହା ହୋଇଥିବା ଝିଅକୁ ଦୋଷ ଦିଆ ଯାଏ। ସେ ଯଦି ପୁତ୍ର ସନ୍ତାନ ଜନ୍ମ ନକରି ନ ପାରିଲା ନିନ୍ଦା, ଗଞ୍ଜଣା ଶୁଣେ। ଅଳ୍ପ ବୟସରୁ ବିଧବା ହେଲେ ବି ତାକୁ ପୁନଶ୍ଚ ବିବାହ ଦେବାକଥା ସହଜରେ କେହି ଗ୍ରହଣ କରନ୍ତି ନାହିଁ ଅଥଚ ଝିଅପୁଅ ବାହାହେବାର ବୟସ ହେଇଥିଲେ ବି ସ୍ତ୍ରୀ ଥାଉ କି ମରିଯାଉ ପୁରୁଷ ଲାଗି ଏ ନିୟମ ଲାଗୁହୁଏ ନାହିଁ। ଲଜିଂରୁ ଆରମ୍ଭ କରି ବଡ଼ ବଡ଼ ହୋଟେଲ, ଗଣିକା ବସ୍ତି ଯାଇ ପୁରୁଷ ନିଜର ପ୍ରବୃତ୍ତି ତୃପ୍ତ କରୁଛି। ଅଥଚ ସ୍ତ୍ରୀ ଯଦି ଏଭଳି କିଛି କଲା ସମାଜ ତାକୁ ଗଣିକା, ପତିତା କହୁଛି। ଏ କି ପ୍ରକାର ସମାଜ ବ୍ୟବସ୍ଥା ? ଜଣେ ରକ୍ତମାଂସର ନାରୀକୁ ସମାଜର ନାଁରେ ଯୁଗେ ଯୁଗେ ବଳି ହିଁ ଦିଆଯାଉଛି। ପୁରୁଷ ଅଧିକୃତ ଏ ସମାଜ କେତେ ନିଷ୍ଠୁର ଭାବରେ ନାରୀ ପାଇଁ ଲକ୍ଷ୍ମଣର ତିନିଗାର କାଟି ନ ଦେଇଛି ! ଯେଉଁ ନିୟମତଳେ ପେଷି ହେଇ ଚାଲିଛି ହଜାର ହଜାର ତରୁଣୀଙ୍କ ଆଶା, ସ୍ୱପ୍ନ, ଭବିଷ୍ୟତ ଏବଂ ମୂଲ୍ୟବାନ ଜୀବନ।

ପୁଣି ଏକ ସାମାଜିକ ପ୍ରଥା ରହିଛି, ପୁଅମାନେ ଝିଅମାନଙ୍କୁ ବାହାହେବା ପାଇଁ ଦେଖିବାକୁ ଆସିବେ। ମନ ନ ପାଇଲା ଯାଏଁ ସେମାନେ ଯେତେ ଶହ ଝିଅ ଆଳୁପିଆଜ ମୂଲାଇଲାଭଳି ଦେଖି ମୂଲାଇ ଚାଲିବେ। ଝିଅ ଛେଳିକୁ କାଟିଲା ଭଳି ଅବସ୍ଥାରେ ଯାଇ ସାଜିସୁଜି ଠିଆ ହେବ। ସେମାନଙ୍କର ଏଣୁ ତେଣୁ ପ୍ରଶ୍ନର ଉତ୍ତର ଦେବ। ପୁଅ ଦେଖିବାକୁ କଣା, ଛୋଟା, କଳା, କନ୍ଦର୍ଯ୍ୟ ଯାହା ହେଇଥାଉନା କାହିଁକି ବାଛବିଚାର ହେବ ନାହିଁ। ଅଥଚ ଝିଅ ସେମିତି ହେଲେ ବିବାହ ମାର୍କେଟରେ ରିଜେକ୍ଟ ହେଇଯିବ। ଅଚଳ ଆଠେଣି ଭଳି ଚଳିବନି। ପୁଅ . ଜିନିଷ ଦେଖିଲା ଭଳି ଦେଖିବ। ବାପାମା ବି ଝିଅକୁ ବହଳ ସ୍ନୋ ପାଉଡ଼ରରେ ସଜାଇ ଦେଖିବାକୁ ଆସୁଥିବା ଲୋକଙ୍କ ଆଗରେ ନିରୂପାୟ ହୋଇ ଠିଆ କରାଇବେ। ପୁଣି ବରଘର ଦେଖି ଆସିଲେ କନ୍ୟାଘର ଭୂରି ଭୋଜନ ଦେବାକୁ ବାଧ୍ୟ। ବରଘର ପସନ୍ଦ କରିପାରନ୍ତି ନ ପାରନ୍ତି। ପୁନଶ୍ଚ ଜାତକ ବା ଜନ୍ମପତ୍ରୀ ମିଳାହେବ। (ରାଜଯୋଟକ ସାଜିଥିବା ସ୍ୱାମୀସ୍ତ୍ରୀ ଛାଡ଼ପତ୍ର ଦେବାର ଦୃଷ୍ଟାନ୍ତ ବିରଳ ନୁହେଁ) ଜନ୍ମପତ୍ରୀ ମିଳାଇବା ଆଗରୁ କର୍ମପତ୍ରୀ ମିଳାଇବା କଥା ଆମ ସମାଜରେ ପ୍ରଚଳିତ ହେଇ ନାହିଁ। ତାଛଡ଼ା ପୁରୁଷକେନ୍ଦ୍ରିକ ସମାଜ ନାରୀକୁ ନିଜ କବଳରେ ରଖିବା ପାଇଁ ହିଁ ବୟସ ନିର୍ଦ୍ଧାରଣ କରିଛି। ଝିଅ ଠାରୁ ପୁଅ ବୟସରେ ବଡ଼ ହେବାକୁ ବାଧ୍ୟ। ଜଣେ ଷାଠିଏ ବର୍ଷର ବୁଢ଼ା ତେଣୁ ଏକ ଷୋଳବର୍ଷର ଝିଅକୁ ବିବାହ କରିପାରେ। କିନ୍ତୁ ଜଣେ ଝିଅ ତାଠାରୁ କମ୍ ବୟସର ପୁଅକୁ ବାହାହେଇ ପାରିବନି। ଅବଶ୍ୟ ଏହାର କିଛିଟା ବ୍ୟତିକ୍ରମ ଘଟିଲାଣି। ତେବେ ଏହା ବି ଯେ ପୁରୁଷର **dominant** କରିବାର ଏକ କୌଶଳ ସ୍ୱୀକାର କରିବାକୁ ହେବ। ଏସବୁ ଦେଖିଲେ ମନେହୁଏ ଯେମିତି **woman's life is just like a curry leaf, used in the curry and thrown out.** ଯେତେବେଳେ ଦରକାର ତାକୁ ବ୍ୟବହାର କର ଓ ଫୋପାଡ଼ି ଦିଅ। ସବୁଠୁ ଆଶ୍ଚର୍ଯ୍ୟ କଥା ଏବେବି ସମାଜର କୁସଂସ୍କାର ପୂର୍ଣ୍ଣ ଚଳଣିକୁ ଆମେ ଗ୍ରହଣ କରିଚାଲିଛୁ। କାହିଁକି ଜଣେ ଷାଠିଏ ବର୍ଷର ବୁଢ଼ା ନାତୁଣୀ ବୟସର ଝିଅକୁ ବାହାହେଇ ପାରିବ? କାହିଁକି ବିଧବା ହେଲାପରେ ଝିଅଟି ସ୍ୱାମୀର ସ୍ମୃତି ନେଇ ଜଳିବ ? ଅଥଚ ସ୍ତ୍ରୀ ମଲାପରେ ସ୍ୱାମୀ ଖୁବ୍ ସହଜରେ ବାହାହେଇ ପାରିବ। କାହିଁକି ସବୁବେଳେ ପୁଅର ବୟସ ବେଶି ହେବା ଦରକାର ? କାହିଁକି ଜଣେ ଉଚ୍ଚଶିକ୍ଷିତା, ରୋଜଗାରକ୍ଷମ ଝିଅକୁ ତାଠୁ ସ୍ୱଳ୍ପଶିକ୍ଷିତ, ବେକାର ଯୁବକ ଦେଖି ଆସିବ ଆଉ ଯୌତୁକ ଦାବୀ କରିବ ? ଆମ ସମାଜ ପରୋକ୍ଷରେ ନାରୀ ଜାତିକୁ ଶୋଷଣ କରୁ ନାହିଁ କି ? ନାରୀ ଯେ କ୍ରୀତଦାସୀ ନୁହେଁ, ଭୋଗ ସାମଗ୍ରୀ ନୁହେଁ, ସେ ପୁରୁଷର ସବୁଠାରୁ ବଡ଼ ବାନ୍ଧବୀ, ସହକର୍ମିଣୀ, ସୁଖଦୁଃଖର ଅର୍ଦ୍ଧାଙ୍ଗିନୀ ଏକଥା ଏ ସମାଜ କେବେ ଅନୁଭବ କରିଛି କି ? ଯଦି କରିଥାଏ ତାହାଲେ ଏ ପାତର ଅନ୍ତର ନୀତି କାହିଁକି? ପ୍ରକୃତରେ ସୃଷ୍ଟିକର୍ତ୍ତାଙ୍କ ଦୃଷ୍ଟିରେ ନାରୀ ଓ ପୁରୁଷ ସମାନ ହେଲେ ହେଁ ସମାଜର ବିଧି, ପ୍ରଥା ହିଁ ନାରୀକୁ ହୀନ କରି ଦେଇଛି ପୁରୁଷ ଆଖିରେ। କେବେ ତାର କହିବାର ସ୍ୱାଧୀନତାକୁ ଜିଭ କାଟିଦେଇ 'ଖନା' କରି ଦେଇଛି ତ କେବେ ତାର ତ୍ୟାଗ, ଦେଶପ୍ରୀତିକୁ ସହି ନ ପାରି ତାକୁ ଅଗ୍ନିରେ ନିକ୍ଷେପ କରିଛି। ପରିବାରର ଦାୟିତ୍ୱ, ସମାଜର ଦାୟିତ୍ୱ ଦେଇ ଦେଇ ତାକୁ କୂର୍ମ କରି ଦେଇଛି। ତା ଆଗରେ ଆଦର୍ଶ, ତ୍ୟାଗ, ସହନଶୀଳତା, ଉତ୍ସର୍ଗ ଏହିଭଳି ବଡ଼ବଡ଼ ଶବ୍ଦ ତିଆରି କରି ଏକ ରକ୍ଷଣଶୀଳ ପରିବେଷ ଭିତରେ ବନ୍ଦୀ କରି ଦେଇଛି। ତାକୁ କୁହାଯାଇଛି ସେମାନେ ଗୀତା ପଢ଼ି ପାରିବେନି, ପୁରାଣ ପଢ଼ିପାରିବେନି, ସଂସ୍କୃତ ପଢ଼ିପାରିବେନି। ଏସବୁ ପଢ଼ିଲେ ଲକ୍ଷେ ପାପ ହେବ। ତା ଆଗରୁ

ଟିକେ ଦେଖିଲେ ଆଶାପୂର୍ଣ୍ଣାଙ୍କ ''ପ୍ରଥମ ପ୍ରତିଶ୍ରୁତି''ରେ ସତ୍ୟବତୀକୁ କୁହାଯାଇଛି ଝିଅମାନେ ପାଠପଢ଼ିଲେ ତାର ଚଉଦ ପୁରୁଷ ନର୍କରେ ପଡ଼ିବେ। ସେମିତି ''ରେବତୀ'' ଗଳ୍ପରେ ଜେଜୀମା ଝିଅମାନଙ୍କର ଯେ ପାଠ କଣ ହେବ ତାର ଉତ୍ତର ଖୋଜି ପାଉନାହିଁ। ତା ଭିତରେ ଦୃଢ଼ ବିଶ୍ୱାସ ହେଉଛି ଯେ ରେବତୀ ପାଠ ପଢ଼ିଲା ବୋଲି ସେ ନିଜର ପୁଅ, ବୋହୂକୁ ହରାଇଲେ ଓ ଝିଅ ପିଲାକୁ ପାଠ ପଢ଼ାଇବା ଦୋଷରେ ହିଁ ବାସୁ ହଇଜାରେ ମରିଗଲା। ଏସବୁ ଘୋର ପାପ। କୁଆ ବୋବାଇଲେ ତାଳ ପଡ଼ିଲାର କାକତାଳୀୟ ବିଚାରରେ ଏହିଭଳି ଅଜ୍ଞାନ ଅନ୍ଧକାର ଭିତରେ ତାଙ୍କୁ ଠେଲି ଦିଆ ଯାଉଥିଲା। ପଢ଼ିବାର ଇଚ୍ଛାକୁ, ଅନ୍ତର୍ନିହିତ ପ୍ରତିଭାକୁ ଦମନ କରାଯାଉଥିଲା। ତଥାପି ନାରୀ ଅଧିକାର ସଂପର୍କରେ ସଚେତନ ହେଉନାହିଁ, ନ୍ୟାଯ୍ୟ ଦାବୀକୁ ବି ହାସଲ କରିବାରେ ଆଗ୍ରହ ଦେଖାଇ ନାହିଁ। ସେ କହିନାହିଁ "I can do, I will be like myself" ପୁରୁଷ କୌଣସି ଦିନ କହିନାହିଁ ତୁମେ ତୁମପରି ହୁଅ, ତମ ନିଜ ଇଚ୍ଛାରେ ଜୀଅଁ, ଆପଣା ବିଶ୍ୱାସ, ରୁଚି ମୁତାବକ ସ୍ୱାଧୀନ ଭାବରେ ଇଚ୍ଛାର ଜୀବନଟେ ବାଛିନିଅ। ବରଂଚ ଆମେ ତାଙ୍କୁ ଆଦର୍ଶର ଲୋଭ ଦେଖାଇ କହିଛୁ ତୁମେ ସତୀ ସାବିତ୍ରୀ ଭଳି ହୁଅ, ସୀତାପରି ହୁଅ, ଦୁର୍ଗାପରି ହୁଅ, ଝାନ୍ସୀରାଣୀ ଲକ୍ଷ୍ମୀବାଈଙ୍କ ଭଳି ହୁଅ। ନାରୀ କୌଣସି ଦିନ ପୁରୁଷକୁ କହିନାହିଁ ତମେ ନିଜେ ପ୍ରଥମେ ରାମଚନ୍ଦ୍ର ପରି ହୁଅ, ସତ୍ୟବାନ ପରିହୁଅ। ପୁଣି ନାରୀହିଁ ସ୍ୱାମୀଙ୍କ ପାଇଁ ସାବିତ୍ରୀବ୍ରତ ପାଳିବ। ସ୍ୱାମୀର ଆୟୁ, ସ୍ୱାସ୍ଥ୍ୟ ଲାଗି ଶିବପୂଜା କରିବ, ବିଭିନ୍ନ ଓଷାବ୍ରତ ପାଳିବ, ଭାଇ ପାଇଁ, ଘରର ସମସ୍ତଙ୍କ ପାଇଁ ବିଭିନ୍ନ ଓଷା, ଏକାଦଶୀ ଏମିତି କିଛି କରିବ ଓ ବିଧବା ହେଇଗଲେ ବି ପରଗତ ସ୍ୱାମୀପାଇଁ ହବିଷ କରିବ ଏମିତି କେତେ କେତେ ଉପାସବ୍ରତ ଶାସ୍ତ୍ର କରିଛି। ହେଲେ ଏମିତି କିଛି ବ୍ରତ, ଉଷା, ପର୍ବ ଅଛିକି ଯେଉଁଠି ସ୍ୱାମୀ ସ୍ତ୍ରୀର ଆୟୁ, ସ୍ୱାସ୍ଥ୍ୟ ପାଇଁ ପାଳିବ ? ବ୍ରତ ବାନ୍ଧିବ, ଓଷା କରିବ ? ଏମିତି କିଛି ଦିନ ଅଛିକି ଯେଉଁ ଦିନରେ ଭାଇଟି ଭଉଣୀ ପାଇଁ ପାଳିବ, ତାର ସୁଖଜୀବନ, ସ୍ୱାସ୍ଥ୍ୟ ଲାଗି ନିଜକୁ ଉପାସ ରଖିବ? ଯଦି ନାହିଁ ତାହାଲେ ନାରୀପାଇଁ ଏତେ ବିଧିବଦ୍ଧ ନିୟମ, ଶାସ୍ତ୍ରପୁରାଣ ବା ଲକ୍ଷ୍ମଣର ଗାର କାହିଁକି ? କାହିଁକି ସେ ହିଁ ଉପାସ କରିବ, ନିଷ୍ଠା ଦେଖାଇବ? ତଥାପି ନାରୀ ଯୁଗେ ଯୁଗେ ସହନଶୀଳା ହେଇ ଦେଶ, ଜାତିର, ସମାଜର କଲ୍ୟାଣ କରିବା ପାଇଁ ନିଜକୁ ବାଣ୍ଟିଦେଇଛି। ତା ବଦଳରେ କିଛି ବି ଚାହିଁ ନାହିଁ। ତାଛଡ଼ା ନାରୀହିଁ ହେଉଛି ପୁରୁଷର ପ୍ରେରଣା। ପ୍ରତ୍ୟେକ ସଫଳ ପୁରୁଷ ଜୀବନରେ ଜଣେ ସଫଳ ନାରୀର ହିଁ ତ୍ୟାଗ ରହିଛି, ଭୂମିକା ରହିଛି। ଯାହାଙ୍କ ପ୍ରେରଣା, ସେବା, ତ୍ୟାଗ, ସାହାଯ୍ୟ ପୁରୁଷଟିକୁ ଜୀବନରେ ସଫଳ ହେବାପାଇଁ ଉତ୍ସାହିତ କରିଛି ବା ସମସ୍ତ ବାଧାବିଘ୍ନର କଣ୍ଟାକୁ ଉପାଡି ଫିଙ୍ଗି ଦେଇଛି। ପୁରୁଷ ଏମାନଙ୍କୁ କେବଳ ଶଯ୍ୟାସଙ୍ଗିନୀ କରି ସଫଳ ହେଇନି ଅଧିକନ୍ତୁ ଧନ୍ୟ ହେଇଛି ଏଭଳି ନାରୀର ସାହଚର୍ଯ୍ୟ, ପ୍ରେରଣା ପାଇ। ନୋବେଲ ପୁରସ୍କାର ବିଜେତା ବିଭିନ୍ନ ଯୋଡ଼ି ଭିତରୁ ମ୍ୟାଡ଼ାମ୍ କ୍ୟୁରୀ ଏବଂ ପେରି କ୍ୟୁରୀ ଅନ୍ୟତମ। ଇଂଲଣ୍ଡର ବିଖ୍ୟାତ ପ୍ରଧାନମନ୍ତ୍ରୀ ଓ୍ୱଲିୟମ ଗ୍ଲାଡ୍‌ଷ୍ଟୋନଙ୍କ ଜୀବନରେ ତାଙ୍କର ପତ୍ନୀ କ୍ୟାଥାରାଇନ୍‌ହିଁ ଥିଲେ ପ୍ରେରଣା। ଆମେରିକାର ପ୍ରଖ୍ୟାତ କବି ଏଡ୍‌ଗାର ଆଲାନ୍ ପୋଙ୍କ ଜୀବନରେ ତାଙ୍କର ପତ୍ନୀ ଭର୍ଜିଆ ଥିଲେ ପ୍ରେରଣା, ସହକର୍ମିଣୀ। ଜଣେ ଜଣେ ନାରୀ ପାଇଁ ଟ୍ରୟ ଯୁଦ୍ଧ ହେଇଯାଏ ଆଉ ଜଣେ ନାରୀଙ୍କର ତ୍ୟାଗ, ସହଯୋଗ ପୁରୁଷକୁ ବିଖ୍ୟାତ, ଅମର କରିଦିଏ। ତେଣୁ ପ୍ରତ୍ୟେକ ସଫଳ ନାରୀପଛରେ ଜଣେ ପୁରୁଷ (ବାପା, ସ୍ୱାମୀ, ଭାଇବନ୍ଧୁ) ଅଥବା ଜଣେ ସଫଳ ପୁରୁଷ ପଛରେ ଜଣେ ନାରୀ (ମା, ସ୍ତ୍ରୀ, ଭଉଣୀ, ବାନ୍ଧବୀ) ର ଭୂମିକାକୁ

ଅସ୍ୱୀକାର କରାଯାଇପାରେନା । ଗାନ୍ଧୀଙ୍କ ପଛରେ ଥିଲେ କସ୍ତୁରବା ଛାଇ ଭଳି। ଶିବାଜୀଙ୍କ ପଛରେ ଥିଲେ ତାଙ୍କର ମା ଜୀଜାବାଈ। ରମାଦେବୀ କୁହନ୍ତୁ କି ମାଳତୀ ଚୌଧୁରୀ କୁହନ୍ତୁ ଏ ସମସ୍ତେ ତାଙ୍କ ସ୍ୱାମୀଙ୍କର ପ୍ରେରଣା ଓ ନିଜେ ଜଣେ ଜଣେ ତ୍ୟାଗର ମୂର୍ତ୍ତି। ଏହିଭଳି ଅନେକ ଉଦାହରଣ, ଅନେକ ଦୃଷ୍ଟାନ୍ତ। କୌଣସି ନାରୀ ବିନା କୌଣସି ପୁରୁଷ ବୋଧହୁଏ ସଫଳ ହୋଇନାହିଁ। କାରଣ ପ୍ରତ୍ୟେକ ପୁରୁଷର ଜନ୍ମ ନାରୀର ଗର୍ଭରୁ।

ଆମ ଦେଶର ନାରୀକୁ କେତେବେଳେ ପୁରୁଷ ସମାଜ ସୀତା କରି ଦେଇଛି, ସାବିତ୍ରୀ କରିଦେଇଛି, କେତେବେଳେ ଦ୍ରୌପଦୀ, କୁନ୍ତୀ, ଅହଲ୍ୟାରେ ପରିଣତ କରିଛି ତ କେତେବେଳେ ଦେବଦାସୀ କରି ପାଦରେ ଘୁଙ୍ଗୁର ପିନ୍ଧାଇ ଦେଇଛି। କେତେବେଳେ ସେ ଆମ୍ରପାଲ୍ଲୀ ହେଇଛି ତ କେତେବେଳେ ବେଶ୍ୟା ଜରତା। ଦେବୀ ଆସନରୁ ଏ ଦେଶର ଲଜ୍ଜାବତୀ ସତୀ ନାରୀ ପରସ୍ଥିତି ଚାପରେ ଓହ୍ଲାଇ ଆସି ବେଶ୍ୟା ପାଲଟି ଯାଇଛି। ଏମାନଙ୍କର ହିସାବ ଆମେ କେହି ରଖିନାହୁଁ। ସବୁଠୁ ଦୁଃଖର ବିଷୟ ବର୍ତ୍ତମାନ ସମୟରେ ବି ନାରୀ ଦେହବ୍ୟବସାୟ କରୁଛି ଓ ତାହା ତାର ବଞ୍ଚିବାର ମାଧ୍ୟମ ପାଲଟୁଛି। ଏବେବି ସୋନାଗାଛି କି ରେଡ୍‌ଲାଇଟ୍ ଏରିଆ ନାଁ ବଞ୍ଚିରହିଛି। ଦିନରେ ଯେଉଁ ପୁରୁଷମାନେ ସେମାନଙ୍କୁ ଘୃଣାକରୁଛନ୍ତି, ବାରଙ୍ଗନା କହି ନିଜ ପିଲାପିଲିଙ୍କୁ ଦୂରେଇ ରଖୁଛନ୍ତି ରାତିରେ ସେହିମାନେ ହିଁ ଅତର ପକାଇ ଗାଡ଼ି ଛୁଟାଉଛନ୍ତି। କେତେ ପରିତାପର ବିଷୟ, କେତେ ଅପମାନ ଆଉ ଲଜ୍ୟାଜନକ ଏ ବ୍ୟାପାର। ପୁରୁଷ ଯୁଗେ ଯୁଗେ ସୁନାମାଠିଆ ସାଜି ଚକ୍ ଚକ୍ ହେଇଛି। ଅସତୀ ହେଇଛି କେବଳ ନାରୀ। ଅଥଚ ଅସତୀ କରିଛି ତାକୁ କିଏ ? ବେଶ୍ୟାପଡ଼ା ଘେରାଉ କରି ଆମେ କେବଳ ସେମାନଙ୍କୁ ଜେଲରେ ବନ୍ଦ କରିପାରୁ, ସମ୍ବାଦପତ୍ରରେ ଗୌରବ ନେବା ପାଇଁ ବଡ଼ ବଡ଼ ଅକ୍ଷରରେ ପ୍ରକାଶ କରିପାରୁ କିନ୍ତୁ ଏମାନଙ୍କୁ ସାମାଜିକ ମର୍ଯ୍ୟାଦା ବା ସ୍ଥିର ଆସନ ଦେବାକୁ କେବେ ଆଗେଇ ଆସୁକି ? କେବେ ଜାଣିବାକୁ ବା ସମାଧାନ କରିବାକୁ ଚାହୁଁକି ସେମାନଙ୍କ ଅସହାୟ ପରିସ୍ଥିତିର କଥା ? ଦେହରୁ ଯୌବନ ଚାଲିଗଲାପରେ ସେମାନଙ୍କର ଅବସ୍ଥା କଣ ହୁଏ, କାହାର ସାହାରା ନେଇ ସେମାନେ କେମିତି ବଞ୍ଚିରହନ୍ତି ବୁଢ଼ୀକାଳେ କେବେ କେହି ଚିନ୍ତାକରେ ?

ପ୍ରକୃତରେ ଚିନ୍ତାକଲେ କେତେ ବିଚିତ୍ର ଏ ନାରୀ ଜୀବନ। ଜାୟା ଜନନୀ ଭଗିନୀ ହେଇ ବାଣ୍ଟି ହେଇଯିବ। ପୁରୁଷର ସାହାରା ଦେବ ଅଥଚ ଅବଳା ଦୁର୍ବଳାର ଉପାଧି ପାଇବ। ଜନ୍ମନେବ କେଉଁଠି, ମରିବ ପୁଣି କେଉଁଠି। କେବେ ପୁରୁଷ ଲାଗି ଖେଳନା କଣ୍ଢେଇ ସାଜିବ ଆଉ କେବେ ଫୁଲଦାନି ଭଳି କାହାରି ଜୀବନ ଅଗଣାରେ ଶୋଭା ପାଇବ। ପ୍ରତ୍ୟେକ ଝିଅ ପାଇଁ ସତେକି ଜୀବନଟା କେବଳ ପରୀକ୍ଷାଗାର। ରାଷ୍ଟ୍ର କବି ମୈଥିଲୀ ଶରଣ ଗୁପ୍ତାଙ୍କ ଭାଷାରେ କହିଲେ-

"ଅବଲା ଜୀବନ୍ ହାୟ ତୁମ୍ହାରି ଏହି କାହାଣୀ
ଆଞ୍ଚଲ ମେଁ ହେ ଦୁଧ୍ ଔର୍ ଆଖୋଁମେଁ ପାନି"

ଓଡ଼ିଶାର କବିର କଲମରେ ନାରୀର ରୂପରେଖ ବିଭିନ୍ନ ସମୟରେ ଅନେକ ରୂପରେ ରୂପାୟିତ ହୋଇଛି। ପ୍ରକୃତରେ ଏହି ଅବଳାର ଝିଅ ଜୀବନରେ ଯେତିକି ସମସ୍ୟା ବୋହୂ ହେଲାପରେ ତାଠି ବେଶି ସମସ୍ୟା। ସମସ୍ୟାର ଶେଷ ନାହିଁ। ଝିଅରୁ ପତ୍ନୀ, ମା'ରେ ସେ ରୂପାନ୍ତର ନେଲେ ହେଁ ଦୁଃଖର ଶେଷ ନାହିଁ। ବଞ୍ଚିବାରେ, ଅଧିକାର ସାବ୍ୟସ୍ତ କରିବାରେ, ନ୍ୟାୟ ପାଇବାରେ,

ଶିକ୍ଷିତା ହେବାରେ, ନିଜ ପାଇଁ ନିଜ ଗୋଡ଼ରେ ଠିଆ ହେବାରେ ସବୁଠାରେ ତାକୁ ସଂଗ୍ରାମ କରିବାକୁ ପଡ଼ିଥାଏ । ଆଜି ପୁରାଣର ନାରୀ, ମହାଭାରତର ନାରୀ କେବଳ କିମ୍ବଦନ୍ତୀ ଭିତରେ ରହିଯାଇଛି । ଯେଉଁମାନେ ସୀତା ପାତାଳ ଗର୍ଭରେ ପଶି ଗଲାବେଳେ ଲୁହ ଗଡ଼ାନ୍ତି, ସିନେମାରେ ବଧୂନିର୍ଯ୍ୟାତନା ଦେଖି ହାୟ ହାୟ କରନ୍ତି ସେହିମାନେ ଘରେ ସୀତା ଭଳି ବୋହୂ, ସ୍ତ୍ରୀକୁ ସନ୍ଦେହ କରନ୍ତି, କଳଙ୍କ ରଟାନ୍ତି, ଯୌତୁକ ଅଥବା ଜାତି, ଭୁଲବୁଝାମଣା, ସ୍ୱାର୍ଥପାଇଁ ଗର୍ଭବତୀ ଥିଲେ ମଧ୍ୟ ପୋଡ଼ି, ଗଳାଚିପି ହତ୍ୟା କରି ଦିଅନ୍ତି । ସତରେ କଣ କିରୋସିନି, ପେଟ୍ରୋଲରେ ନିଆଁ ଧରାଇଲାବେଳେ ସେମାନଙ୍କ ହାତ ଥରି ଉଠେ ନାହିଁ, ବିବେକ ବାଧା ଦିଏ ନାହିଁ? ଏହିଭଳି ଅଜସ୍ର ପ୍ରଶ୍ନ ଆଜି ମୁଣ୍ଡ ଟେକିଛି ।

ବର୍ତ୍ତମାନ ସମୟ ଏକ ଘଡିସନ୍ଧିର ସମୟ । ନାରୀ ଦ୍ରୁତ ଭାବରେ ଶିକ୍ଷିତା, ଆଧୁନିକା ହେଇ ଚାଲିଛି । ବିଭିନ୍ନ ଉଚ୍ଚପଦବୀରେ ଅଧିଷ୍ଠିତା ହେଇଛି । କାର ଚଳାଇବା କି ମଟର ସାଇକେଲ ଏପରିକି ଉଡ଼ାଜାହାଜ ଚଳାଇବାରେ ମଧ୍ୟ ସଫଳ ହେଇଛି । ବାଚେନ୍ଦ୍ରି ପାଲ ଭଳି ନାରୀମାନେ ପର୍ବତ ଆରୋହଣ କଲେଣି, ପି.ଟି.ଉଷାଭଳି ଦୌଡ ରାଣୀ ସାଜିଲେଣି ପୁଣି ଆଶାପୂର୍ଣ୍ଣାଦେବୀ, ମୈତ୍ରେୟୀଦେବୀ, ମହେଶ୍ୱତା, ମହାଦେବୀ ବର୍ମା ଭଳି **ସର୍ବ** ଭାରତୀୟ ସ୍ତରରେ ନାରୀମାନେ ଲେଖିକାର ସ୍ୱୀକୃତି ପାଇଲେଣି ଏବଂ ବହୁ ଗୁରୁତ୍ୱପୂର୍ଣ୍ଣ, ଦାୟୀତ୍ୱପୂର୍ଣ୍ଣ ବିଭାଗରେ ଦକ୍ଷତାର ସହ ନିଯୁକ୍ତି ପାଇଲେଣି । ତଥାପି ଆମର ଯୌଥ ପରିବାର ଦ୍ରୁତ ଭାବରେ ଭାଙ୍ଗିବାକୁ ଆରମ୍ଭ କରିଛି ବା ଭାଙ୍ଗି ଯାଉଛି । ଉଚ୍ଚଶିକ୍ଷିତା ନାରୀଟିଏ ଶାଶୁଶ୍ୱଶୂର, ଦିଅରନଣନ୍ଦ, ଜାଆନଣନ୍ଦଙ୍କୁ ନେଇ ଚଳିବାକୁ ରାଜି ହେଉ ନାହିଁ । ବିବାହ ପରେ ଶୀଘ୍ର ସ୍ୱାମୀସହ ଏକୁଟିଆ ରହିବାକୁ ପସନ୍ଦ କରୁଛି । ନିଜ ପିଲାମାନଙ୍କୁ ମଧ୍ୟ ସେହି ଢାଞ୍ଚାରେ ଗଢୁଛି । ଯାହାଫଳରେ କି ବୁଢ଼ାବାପଟି ନିଜ ରୋଜଗାରିଆ ପୁଅକୁ, କଷ୍ଟକରି ମଣିଷକରି ଏଡ଼େବଡ଼ କରିଥିବା ମା'ଟି ନିଜ ପୁଅକୁ, ଭଉଣୀ ଭାଇକୁ ହରାଉଛି । ଧୀରେ ଧୀରେ ଗୋଟେ ବ୍ୟବଧାନ ବା ଜେନେରେସନ ଗ୍ୟାପ୍ ତିଆରି ହେଉଛି । ଶାଶୁବୋହୂର ସଂପର୍କରେ ଏକ ତିକ୍ତତା ଆସିଯାଉଛି । କେହି କାହାକୁ ସହ୍ୟ କରିପାରୁନାହାନ୍ତି । ଏହା ଏକ ସମସ୍ୟା ହେଇ ମୁଣ୍ଡ ଟେକୁଛି । କେଉଁଠି ଶାଶୁ ଆଡ଼ଜଷ୍ଟ କରିପାରୁନି ତ କେଉଁଠି ବୋହୂ । କେଉଁଠି ଶାଶୁ ଉପରେ ବୋହୂ ଅତ୍ୟାଚାର କରୁଛିତ କେବେ ବୋହୂ ଉପରେ ଶାଶୁ । ଏଭଳି ଧାରାଟିଏ ଯଦି ଗଢ଼ିବାକୁ ଆରମ୍ଭ କରେ ତାହାଲେ ଶେଷରେ ଆମର ଯୌଥପରିବାର ବା ପାରିବାରିକ ସମସ୍ତ ସଂପର୍କ ଧ୍ୱଂସ ପାଇଯିବ ।

ଜଣେ ଶିକ୍ଷିତା ବୋହୂ ଯଦି ଶାଶୁକୁ ମଫସଲୀ କହେ, ଚାକରାଣୀ ଭଳି ଖଟାଏ, ସ୍ୱାମୀଆଗରେ ମିଛସତ କହି ଗାଳିଶୁଣାଏ, ଦେହପା, ଖିଆପା ପ୍ରତି ଧ୍ୟାନ ନ ଦିଏ ଓ ଶାଶୁକୁ ଏକୁଟିଆ ଗାଁରେ ରଖି, ନଣନ୍ଦ ଦିଅର ଠାରୁ ଅଲଗା ରହି ନିଜର ପିଲାଛୁଆ ନେଇ ସୁଖରେ ରହିବାକୁ ଚାହେଁ ତାହାଲେ ସେଭଳି ଝିଅ ତାର ଶିକ୍ଷାପ୍ରାପ୍ତ ଡିଗ୍ରୀକୁ ପୋଡ଼ିଦେବା ଦରକାର, ବିଶ୍ୱବିଦ୍ୟାଳୟକୁ ଫେରାଇ ଦେବା ଦରକାର । ଯେଉଁ ଶିକ୍ଷା ନାରୀକୁ ନମ୍ର ନ କରି ଉଗ୍ର କରେ, ମା' ପୁଅକୁ ଭାଇଭଉଣୀକୁ ଅଲଗାକରେ ସେଭଳି ଶିକ୍ଷାର ମୂଲ୍ୟକଣ ? ଉପଯୋଗିତା କଣ ? ନାରୀ ଯଦି ଆଡ଼ଜଷ୍ଟକରି ଶିଖିବନି, ଜାୟା ଜନନୀ ଭଗିନୀ ଏଭଳି ବିଭିନ୍ନ ରୂପରେ ନିଜକୁ ବାଣ୍ଟି ପାରିବନି ତାହାଲେ ନାରୀଜନ୍ମର ମୂଲ୍ୟ କଣ ? "ସର୍ବଂସହା"ର ଉପଯୋଗିତା କଣ ? ଆଜି ଯିଏ ବୋହୂ

ସେ ବି କାଲି ମା' ହେବ, ଶାଶୁ ହେବ। ସେତେବେଳେ ନିଜର ପିଲାମାନେ ଯଦି ସେମିତି ବ୍ୟବହାର ଦେଖାନ୍ତି ଯେମିତି ସେ ନିଜର ଶାଶୁଶ୍ୱଶୁର ସହିତ କରିଥିଲା ତାହାଲେ? ସେଭଳି ବୁମେରାଂକୁ ସହି ହେବ ତ?

ପୁଣି ଶାଶୁ ଯଦି ବୋହୂକୁ ଝିଅ ଭଳି ନ ଦେଖନ୍ତି, ସବୁ ବେଳେ ବାଛନ୍ତି, ଟିକିଏ ଟିକିଏ କଥାକୁ ଧରନ୍ତି, ମିଛସତ ଲଗାଇ ଚାରିଆଡ଼େ କହିବୁଲନ୍ତି, ପୁଅମାଧମରେ ବୋହୂ ଉପରେ ମାଡ଼ ଚଢ଼ାନ୍ତି ଓ ନାନା ପ୍ରକାରର ନିର୍ଯ୍ୟାତନା ଦିଅନ୍ତି ସେ କ୍ଷେତ୍ରରେ ଆଡ଼ଜଷ୍ଟ କରିବା, ସହ୍ୟ କରିବା କଷ୍ଟକର ହୋଇପଡ଼େ। ବୋହୂର ଶାଶୁଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା, ଭକ୍ତି ରହେ ନାହିଁ। ଉଭୟେ ଉଭୟଙ୍କ ସହିତ ମାନସିକ, ଶାରୀରିକ ସବୁପ୍ରକାରର ଆଡ଼ଜଷ୍ଟ କରିବା ନିହାତି ଆବଶ୍ୟକ। ଏହି ଆଡ଼ଜଷ୍ଟ ପାଇଁ ଦୁହେଁ ଅନୁକୂଳ ପରିବେଶ ସୃଷ୍ଟି ପାଇଁ ଆନ୍ତରିକ ଚେଷ୍ଟା କରିବା ଦରକାର। ନ ହେଲେ ପାଶ୍ଚାତ୍ୟ ଦେଶ ଭଳି ଆମର ପାରିବାରିକ ଜୀବନ ବୋଲି କିଛି ରହିବ ନାହିଁ। ଦୁଃଖର ବିଷୟ ଅଧିକାଂଶ ଯୌତୁକ ଜନିତ ବଧୂହତ୍ୟାରେ ଶାଶୁ ନଣନ୍ଦଙ୍କର ହିଁ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ରହିଥାଏ।

ପ୍ରକୃତରେ ପୃଥିବୀରେ ଦୁଇଟି ସୁନ୍ଦର ଶବ୍ଦ, "ମା" ଏବଂ "ଘର"। ଯେ କୌଣସି ଭାଷାରେ ଏହି ଶବ୍ଦ ଯୋଡ଼ାକ ଉଚ୍ଚ ସ୍ଥାନରେ ରହିଛି। ଏହି ଦୁଇଟି ଶବ୍ଦ ପଛରେ ରହିଛି ମମତ୍ୱ ବୋଧ। "ମା" ପୃଥିବୀଭଳି ସହନଶୀଳା ଆଉ ଆମର ଚିନ୍ତା, ଆମର ସ୍ୱପ୍ନ, ସୁଖ "ଘରକୁ" ହିଁ କେନ୍ଦ୍ରକରି। ତେଣୁ ଓଡ଼ିଆରେ ଅଛି "ବୈକୁଣ୍ଠ ସମାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର"। ଏହି ସ୍ନେହ ଅନୁରାଗହିଁ ଘରକୁ ବୈକୁଣ୍ଠ କରିଦିଏ। ସୁଖୀ ଘରତ ସ୍ୱର୍ଗଠାରୁ ମଧ ସୁନ୍ଦର। ଏହି ସୁଖୀ ଘରର ଚାବିକାଠି ହେଲେ ନାରୀମାନେ। ନାରୀର ମମତାମୟୀ ସ୍ପର୍ଶ, ତ୍ୟାଗହିଁ ଘରକୁ ସ୍ୱର୍ଗ କରେ ଆଉ ବିପରୀତ ହେଲେ ତାହା ନର୍କରେ ପରିଣତ ହୋଇଯାଏ। ପ୍ରାଚୁର୍ଯ୍ୟ ଓ ବିଳାସ ଭିତରେ ଶୀତତାପ ନିୟନ୍ତ୍ରିତ ଘରେ ରହିବାର ଅର୍ଥ ନୁହେଁ ସୁଖୀ ପରିବାର ଗଢ଼ିବା। ଗଛତଳେ, କୁଡ଼ିଆଘରେ ମଧ ସ୍ୱର୍ଗ ରଚନା କରାଯାଇପାରେ। ମାନସିକ ଶାନ୍ତିହିଁ ଘରର ସବୁଠୁ ବଡ଼ ବିଭବ। ଗୋଟିଏ ଘରକୁ ସଜାଡ଼ିବା ଖୁବ୍ କଷ୍ଟକର; କିନ୍ତୁ ଭାଙ୍ଗିଦେବା ବଡ଼ ସହଜ। ତେଣୁ ଘରକୁ ଶାନ୍ତି, ସୁଖର ଭଣ୍ଡାର କରିବାର ଚାବିକାଠି ନାରୀମାନଙ୍କ ହାତରେ। ତେଣୁ ଯୌଥ ପରିବାର ଭାଙ୍ଗିଯିବା ପଛରେ ଅଛି ସ୍ତ୍ରୀଙ୍କର ମନ୍ତ୍ରଣା, ଈର୍ଷା, ପରଶ୍ରୀକାତରତା ଓ ପରିବେଶ ଭିତରେ ନିଜକୁ ଖାପ ନ ଖୁଆଇ ପାରିବାର ଅପାରଗତା। ତାଛଡ଼ା ନାରୀହିଁ ନାରୀର ସବୁଠାରୁ ବଡ଼ ଶତ୍ରୁ ବୋଲି ସବୁ ସମୟରେ ନିଜକୁ ପ୍ରମାଣିତ କରିଛି।

ଆଉ ଗୋଟିଏ କଥା ହେଲା ନାରୀ ନିଜକୁ ଏ ବିଜ୍ଞାପନ ଯୁଗରେ ଏଭଳି ମଡ଼େଲ କରି ବିଜ୍ଞାପିତ କରୁଛି ଯେ ବେଳେ ବେଳେ ସ୍ୱାଧୀନତା ସ୍ୱେଚ୍ଛାଚାରିତାରେ ପରିଣତ ହେଉଛି। ପ୍ରଚୁର ଟଙ୍କା ଲୋଭରେ ନାରୀତ୍ୱ ବା ଲଜ୍ୟା ସଙ୍କୋଚ ସବୁକିଛିକୁ ପଛରେ ପକାଇ ନାରୀ ନିଜ ଦେହ, ସୌନ୍ଦର୍ଯ୍ୟ ବ୍ୟବହାର କରୁଛି। ବିଭିନ୍ନ ପୋଷ୍ଟରରୁ ଆରମ୍ଭ କରି ସିନେମା ବା ଉତ୍ପାଦିତ କୌଣସି ଜିନିଷ ଲାଗି ସେ ବ୍ୟବହୃତ ହେଉଛି। ଯାହାକି କୋମଳମତୀ ବାଳକ ବାଳିକାଙ୍କର ମାନସିକ ବିକୃତିର କାରଣ ହେଉଛି। ଏସବୁ ପୋଷ୍ଟର, ବିଜ୍ଞାପନ ରଦ୍ଦ କରିବା କଥା ଜନସାଧାରଣ ଚିନ୍ତାକରିଛନ୍ତି କି ? ଜର୍ମାନୀରେ ଏଥିପାଇଁ ଥରେ ମହିଳାମାନେ ସଂଗଠିତ

ହୋଇ ଏଭଳି ଅଶ୍ଳୀଳ ପୋଷ୍ଟର ଉପରେ କଳରବୋମ୍ ଫିଙ୍ଗିବାର ଅଭିଯାନ ଆରମ୍ଭ କରିଥିଲେ। ଅଥଚ ଆମ ଦେଶରେ ଭାଇଭଉଣୀ, ବାପାମା ସମସ୍ତେ ଆମେ ଏକାଠି ବସି ପୋଷ୍ଟର ଦେଖୁଛୁ। ଯୁଗ ଆଗେଇଲାଣି କହି ଆମେ ଝିଅମାନଙ୍କୁ ଏଥିପାଇଁ ଉତ୍ସାହ ଦେଉଛୁ, ଗୌରବାନ୍ୱିତ ଅନୁଭବ କରୁଛୁ। ବିଜ୍ଞାପନରେ ଦାତା, ମଡ଼େଲ ହେଉଥିବା ନାରୀ ପ୍ରଭୃତି କେବେ ଚିନ୍ତା କରିଛନ୍ତି କି ଏତଦ୍ୱାରା ସମାଜ ଉପରେ ତାର କି ପ୍ରଭାବ ପଡୁଛି ? ଅଧିକାଂଶ ରେପ୍, ରିଭେଞ୍ଜ, ଭାଓଲେନ୍ସ, ମର୍ଡ଼ର ଏ ସବୁର କୁପରିଣାମ ନିଶ୍ଚୟ। ଏହାଦ୍ୱାରା ଗୋଟିଏ ଝିଅର, ଗୋଟିଏ ଭଉଣୀର, ଗୋଟିଏ ସ୍ତ୍ରୀର, ଗୋଟିଏ ମା'ର ବା ସମଗ୍ର ନାରୀଜାତିରହିଁ ଭାବମୂର୍ତ୍ତି କ୍ଷୁର୍ଣ୍ଣ ହେଉଛି। ଲଜ୍ଜା ଓ ଚରିତ୍ର ଆଜି ଆଉ ନାରୀର ଆଭୂଷଣ ହୋଇ ରହିନାହିଁ। ଭାରତୀୟ ନାରୀ ହେବାରେ କି ଗୌରବ ଅଛି ଆମ ପାଖରେ ? ପାଶ୍ଚାତ୍ୟ ଢାଞ୍ଚାରେ ଗଢ଼ିଉଠୁଥିବା ଭାରତୀୟ ନାରୀ ତାର କେଉଁ ମୌଳିକ ପରିଚୟ ନେଇ ବିଶ୍ୱଦରବାରରେ ନିଜର ସ୍ୱତନ୍ତ୍ର ଆସନ ଜାହିର କରିବ ? ଆମର ଶିକ୍ଷା, ସଭ୍ୟତା, ସଂସ୍କୃତି କଣ କେବଳ ଉଗ୍ରତା, ସ୍ୱେଚ୍ଛାଚାରିତା ନିମନ୍ତେ ଅଭିପ୍ରେତ ?

ଏହି ଭଳି ଅଜସ୍ର ପ୍ରଶ୍ନ, ଅଜସ୍ର ସମସ୍ୟା ଆଜି ଆମ ଆଗରେ ମୁଣ୍ଡଟେକିଛି। ସମାଧାନ ସତେ କି ଏକ ସୁଦୂର ପରାହତ ସଙ୍ଗୀତ। ଏହି ସମସ୍ୟା ଗୁଡ଼ିକୁ ଆଖି ଆଗରେ ରଖି ଓ ନାରୀର ପ୍ରକୃତିର କେତୋଟି ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି ମୁଁ "ମୋ ଦୃଷ୍ଟିରେ ନାରୀ"ର ମୂଲ୍ୟାଙ୍କନ କରିଛି। ନିଜେ ନାରୀ ହୋଇଥିବାରୁ ନାରୀର ବ୍ୟକ୍ତିଗତ, ସାମାଜିକ, ପାରିବାରିକ ସମସ୍ୟାକୁ ଗଭୀର ଭାବରେ ହୃଦୟଙ୍ଗମ କରିଛି। ନିଜେ ସମାଧାନ ଲାଗି କିଛିଟା ଚେଷ୍ଟା କରିଛି। ତେବେ ଏସବୁ କାଳିକଲମ ବା ପୁସ୍ତକ ଭିତରେ ଯଦି ସୀମିତି ରହିଯାଏ ତାହାଲେ ଲେଖି କିଛି ଫଳ ହେବ ନାହିଁ। ନାରୀ ଓ ପୁରୁଷଙ୍କ ଜୀବନ ପାଇଁ ବା ବର୍ତ୍ତମାନର ସମାଜ ପାଇଁ ଯଦି ଏହି ପୁସ୍ତକ କିଛିଟା ଦିଗ୍‌ଦର୍ଶନ ଦେଖାଏ ବା ଏହାର ଉପଯୋଗିତା ମିଳେ ତାହାଲେ ମୋର ଏ କିଞ୍ଚିତ ସାଧନା ସାର୍ଥକ ହୋଇଛି ବୋଲି ଭାବି ନିଜକୁ ଧନ୍ୟ ମନେ କରିବି। ସମଗ୍ର ନାରୀ ଜାତିକୁ ମୋର ଏତିକି ଅନୁରୋଧ, ଅପେକ୍ଷାକର, ଧୈର୍ଯ୍ୟଧର, ଆମ ପାଇଁ କେଉଁଠିନା କେଉଁଠି ଭଲଦିନଟିଏ ଅପେକ୍ଷା କରିଛି।

ଅତୀତରେ "ମୋ ଦୃଷ୍ଟିରେ ନାରୀ"ର ଏକ ସ୍ୱତନ୍ତ୍ର ଶୀର୍ଷକ ରହି ଧାରାବାହିକ ଭାବରେ ଏହା "ଧରିତ୍ରୀ" ସମ୍ବାଦ ପତ୍ରରେ ପ୍ରାୟ ଦେଢ଼ ବର୍ଷ ଧରି ପ୍ରକାଶିତ ହୋଇଥିଲା। ସେଥିରୁ କେତୋଟି ନିର୍ବାଚନ କରି ମୁଁ ସଂକଳିତ କରିଛି। ତାଛଡା "ଖବର କାଗଜ" (୰ଧୀରେନ୍ ପଟ୍ଟନାୟକଙ୍କ ଦ୍ୱାରା ସମ୍ପାଦିତ ବର୍ତ୍ତମାନ ଲୁପ୍ତ) ର "ବନିତା" ପୃଷ୍ଠାରେ, "ସମ୍ବାଦ"ର "ଶୋଭନା" ପୃଷ୍ଠାରେ ଓ ପ୍ରଜାତନ୍ତ୍ରର ସାପ୍ତାହିକୀ ପ୍ରଭୃତିରେ ପ୍ରକାଶ ପାଇଥିଲା। "ସୁଚରିତା"ରେ ୧୯୮୫ ରେ ଅମୃତା ପ୍ରୀତମ୍ (ଧରିତ୍ରୀର ବାର୍ଷିକୀ ଉତ୍ସବରେ ମୁଖ୍ୟ ଅତିଥି ହିସାବରେ ଓଡ଼ିଶା ଆସିଥିବା ଅବସରରେ) ଙ୍କର ଏକ ଦୀର୍ଘ ସାକ୍ଷାତ୍‌କାର ସ୍ଥାନ ପାଇଥିଲା ଓ ନାରୀ ସଂପର୍କରେ କିଛି ପ୍ରଶ୍ନ ସେଥିରେ ଥିଲା। ଆଜି ଏସବୁ ପତ୍ର ପତ୍ରିକାକୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି।

"ମୋ ଦୃଷ୍ଟିରେ ନାରୀ"ର ମୁଖବନ୍ଧ ପଦ୍ମଶ୍ରୀ ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ ଲେଖି ମୋତେ ଧନ୍ୟ ଏବଂ ଗୌରବାନ୍ୱିତ କରିଛନ୍ତି। ପ୍ରକୃତରେ ତାଙ୍କର ବଳିଷ୍ଠ ଅଭିମତ ଏ ପୁସ୍ତକର ସୌଷ୍ଠବ ବୃଦ୍ଧି କରିଛି। ଏହି ଅବସରରେ ମୁଁ ତାଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି।

ସେ ହିଁ ''ପ୍ରତିମାନାୟକ'' ଭଳି କବିତା ଲେଖି ଆଧୁନିକା ଅସହାୟା ନାରୀର ବିକଟ ଜୀବନ ଯାତ୍ରା ସଂପର୍କରେ ଦିନେ ସମଗ୍ର ଓଡ଼ିଶାର ଦୃଷ୍ଟି ଆକର୍ଷଣ କରିଥିଲେ। ପ୍ରତିମା, ଅଳକା ସାନ୍ୟାଲ ଭଳି ଝିଅମାନଙ୍କର ଆଜି ବି ଜନ୍ମ ହେଉଛି।

ଏଭଳି ଏକ ସଂକଳନକୁ ପ୍ରକାଶ କରିବାର ଅତି ଆଗ୍ରହ ଦେଖାଇଥବା ପ୍ରକାଶକ ''ଲାର୍କବୁକ୍ସ''ର ଶ୍ରୀ ମହେନ୍ଦ୍ର ମିଶ୍ରଙ୍କୁ ମଧ୍ୟ ମୁଁ ମୋର କୃତଜ୍ଞତା ଓ ଧନ୍ୟବାଦ ଜଣାଉଛି। ତାଙ୍କର ଉଦ୍ୟମ ବିନା ଏହା ଆଲୋକ ଦେଖିପାରି ନ ଥାନ୍ତା । ଅତି ଆଗ୍ରହରେ ସେ ଏହାର ଛାପିବାର ଦାୟିତ୍ୱ ନେଇଛନ୍ତି। ଏ ପୁସ୍ତକର ପ୍ରେରଣା ହିସାବରେ ଯିଏ ପର୍ଦ୍ଦାପଛରେ ରହିଗଲେ ସେ ହେଲେ ମୋର ମା ଓ ବାପା। ମା'ତ ଅନେକ ଦିନରୁ ଚାଲି ଯାଇଛନ୍ତି, କିନ୍ତୁ ତାଙ୍କର ତ୍ୟାଗ, ଧୈର୍ଯ୍ୟ ସହ ବାପାଙ୍କର ନାରୀପ୍ରତି ବାତ୍ସଲ୍ୟ, ପ୍ରେମ, ଶ୍ରଦ୍ଧା, ଆଶିର୍ବାଦ ମୁଁ ଦେଖିଛି। ଆଜି ଏତ୍ୟବସରରେ ବାପା ରବୀ ନାଥ ବାରିକ, ମାଆ ଇନ୍ଦୁମତୀଙ୍କୁ ମୁଁ ସ୍ମରଣ କରୁଛି । ଶେଷରେ କବି ସୌରୀନ୍ଦ୍ର ବାରିକଙ୍କ ଉପଦେଶ ମୋତେ ଏ ଦିଗରେ ଉତ୍ସାହିତ, ପ୍ରେରଣା ଯୋଗାଇଛି। ସମସ୍ତଙ୍କୁ ଆଜି ମୁଁ ମୋର ନମ୍ର କୃତଜ୍ଞତା ଜଣାଉଛି। ଧନ୍ୟବାଦ।

**କବିତା ବାରିକ**



# ସୂଚୀ

# ନାରୀର ସୁରକ୍ଷା ଓ ଯୁବସମାଜର ଭୂମିକା

ଜୀବନରେ ତ ଅନେକ ସ୍ୱପ୍ନ। ହେଲେ ସବୁ ସ୍ୱପ୍ନ ପାଇଁ ସଭିଏଁ ଲମ୍ବ ରାତି ପା'ନ୍ତି ନାହିଁ। ବେଳେ ବେଳେ ସ୍ୱପ୍ନର ରାତି ହଠାତ୍ ପାହିଯାଏ। ଅଧାସ୍ୱପ୍ନ କଷ୍ଟ ଦିଏ।

ଝିଅଟିଏ ଟିକେ ଜାଣିବା ଶୁଣିବା ହେଲେ ତାର ମଧ ସ୍ୱପ୍ନଦେଖା ଆରମ୍ଭ ହୁଏ। ସେ କିଛି ଆକାଶ ଛୁଆଁ ସ୍ୱପ୍ନ ନ ଦେଖିଲେ ବି ଗୋଟାଏ ଅତି ସାଧାରଣ ସ୍ୱପ୍ନ ଦେଖେ। ସାଧାରଣ ଝିଅଟିଏର ମନତଳେ ରହିଥାଏ ଘର କରିବାର ସ୍ୱପ୍ନ, ଜଣକର ଜୀବନ ଅଗଣାରେ ଫୁଲ ହୋଇ ଫୁଟିବାର ଭାବପ୍ରବଣତା। ସ୍ୱାମୀ, ସଂସାର, ଘର, ମାତୃତ୍ୱ, ଏଇ ଏକାଭଳି ସ୍ୱପ୍ନ ପ୍ରାୟ ପ୍ରତିଟି ଝିଅ ଭିତରେ ରହିଛି। ସମସ୍ତେ ଚାହାନ୍ତି ଏକ ଦୃଢ଼ ଆଶ୍ରୟ। ଜୀବନର ନିରାପତ୍ତା। ପ୍ରତ୍ୟେକ ଝିଅପରି ବାପା ମା'ଙ୍କର ସ୍ୱପ୍ନ ହେଲା ଝିଅକୁ ଭଲ ପାତ୍ରରେ ବାହାଦେବା। ହେଲେ ଏଇ ଝିଅଟି ଯେତେବେଳେ ଦୁର୍ଭାଗ୍ୟବଶତଃ କେଉଁ କାମୁକ ଗୁଣ୍ଡାହାତରେ ପଡିଯାଏ ଅଥବା ଗଣଧର୍ଷଣର ଶିକାର ହୁଏ ସେତେବେଳେ? ତାର ଭବିଷ୍ୟତ ସମ୍ପର୍କରେ କେହି କଣ କେବେ ଚିନ୍ତା କରିଛନ୍ତି?

ବର୍ତ୍ତମାନ ଏହା ବୋଧହୁଏ ଆମ ପାଇଁ ସବୁଠାରୁ ବଡ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନବାଚୀ। ଯୁଗ ଆଜି କେଉଁଠି ପହଞ୍ଚିଲାଣି। ସବୁଠୁ ଦୁଃଖର ବିଷୟ ହେଲା ଏହି ସୁଶିକ୍ଷିତ, ଅତ୍ୟାଧୁନିକ ଯୁଗରେ ଆମେ ବିଶ୍ୱାସ ହରାଇ ବସିଛୁ। ଆଜି କାହାରି ଉପରେ ଆସ୍ଥା ରଖା ଯାଇ ପାରେନା। ଯେ କୌଣସି ବୟସର ଯୁବକ, କିଶୋର, ବୃଦ୍ଧ ଯାହା କହନ୍ତୁ ନା କାହିଁକି କାହାରିକି ଆମ ଝିଅ ବୋହୁମାନେ ବିଶ୍ୱାସ କରିପାରୁ ନାହାନ୍ତି ସହଜରେ। ଏହା ସେମାନଙ୍କର ଦୋଷ ନୁହେଁ, ସମୟର ଦୋଷ। ଯୁଗ ଯେତେ ଆଧୁନିକ, ଶିକ୍ଷିତ ହେଉଛି ଲୋକଙ୍କ ଆଦିମ ପ୍ରବୃତ୍ତି ସେତେ ବେଶୀ ବୃଦ୍ଧି ପାଉଛି। ସବୁଠୁ ପରିତାପର କଥା ଯେ ପୁରାଣରେ ଯେଉଁ ନାରୀକୁ ମା'ର ସମ୍ମାନ ଦିଆ ଯାଉଥିଲା, ସୀତା, ସାବିତ୍ରୀଙ୍କ ଭଳି ସମ୍ମାନ କରାଯାଉଥିଲା, ନାରୀ ନମସ୍ୟା, ପୂଜନୀୟା ଥିଲା, ସେହି ନାରୀକୁ ବିଚ୍ ବଜାରରୁ ଟେକିନିଆଯାଇ ଧର୍ଷଣ କରାଯାଉଛି। ପୁଣି ଖବର କାଗଜରେ ବଡବଡ ଅକ୍ଷରରେ ତାହା ପ୍ରକାଶ ପାଉଛି ଓ ପାଠକମାନଙ୍କ ଲାଗି ଏହି ରୋଚକ ସମ୍ବାଦ ପ୍ରତିକ୍ରିୟାଶୂନ୍ୟ ହୋଇ ଯାଉଛି।

ଦିନଥିଲା ଗାର୍ଗୀ, ମୈତ୍ରେୟୀ, ଲୋପାମୁଦ୍ରାଙ୍କ ଭଳି ନାରୀମାନେ ସମାଜରେ ଉଚ୍ଚ ଆସନ ଜମାଇ ପାରିଥିଲେ। ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ପଦ୍ମାବତୀ ଭଳି ବୀରାରାଣୀଙ୍କୁ ଉଦାହରଣ ଦେଇ ନାରୀ ଯେ ଦୁର୍ବଳା ନୁହେଁ ସାବ୍ୟସ୍ତ କରାଯାଉଥିଲା। କିନ୍ତୁ ସମୟ ସହ ସବୁ ଯେମିତି ବଦଳିଗଲା। ନାରୀଦେହକୁ ପଣ୍ୟଭଳି କିଣାଗଲା। ବେଶ୍ୟାପଡାସବୁ ଗଢ଼ିଉଠିଲା। ସାରଳା ଯୁଗ ଥିଲା ସେହିପରି ଘୋର ଅନୀତିର ଯୁଗ। ତେଣୁ ନାରୀ ପୁରୁଷର ସଂପର୍କ ଓ ବ୍ୟଭିଚାରକୁ ବ୍ୟାସଦେବ ଏବଂ ସାରଳା ଦାସ ମହାଭାରତରେ ସୁନ୍ଦର ଭାବେ ରୂପାୟିତ କରିଛନ୍ତି। ସେମିତି ଆସିଲା ମୋଗଲ ରାଜତ୍ୱ। ମୁସ୍‌ଲିମ୍ ସମ୍ରାଟମାନେ ପର୍ଦାପ୍ରଥା ତଳେ ନାରୀର ସୌନ୍ଦର୍ଯ୍ୟ, ପ୍ରତିଭାକୁ

ଚାପିଦେଲେ। ଅନ୍ୟପଟେ ଏମାନଙ୍କର କାମନାର ଶିକାର ହେଇ ଗଢ଼ିଉଠିଲା ସୁନ୍ଦରୀ ନାରୀମାନଙ୍କର ହାରେମ। ନୃତ୍ୟ, ଗୀତ ସୁରାପାନ ମଧରେ ନାରୀକୁ ଉପଭୋଗର ବିଳାସ ସାମଗ୍ରୀ ଭାବରେ ବ୍ୟବହାର କରାଗଲା।

ପୁଣି ଯୁଗ ବଦଳିଲା। ବଦଳିବା ସହିତ ପରିବର୍ତ୍ତନ ଆସିଲା। ଯେଉଁ ନାରୀକୁ ପୁରୁଷର କ୍ରୀତନକ ଭାବେ ଅନ୍ଧକାର ଗୃହରେ ନିକ୍ଷେପ କରାଯାଉଥିଲା ସେ ଶିକ୍ଷିତା ହେଲା। ନାରୀ ସ୍ୱାଧୀନତା ପାଇଁ ଆନ୍ଦୋଳନ କଲା। ପୁରୁଷ ସହିତ ମଧ ସମାନ ଆସନ ପାଇଲା। ଏଥିପାଇଁ ସ୍ୱତନ୍ତ୍ର ସୁବିଧା ସୁଯୋଗର ବ୍ୟବସ୍ଥା ପାଇଁ ଆଇନ ପ୍ରଣୟନ କରାଗଲା। ନାରୀମୁକ୍ତି ପାଇଁ କେତେକ ଆନ୍ଦୋଳନ ହେଲାନି, ସଭାସମିତିରେ ବଡ଼ ବଡ଼ ମହାପୁରୁଷମାନେ ବେଶ୍ ଭାଷଣ ଦେଲେ। ବହୁ ଉପାଦେୟ ପ୍ରବନ୍ଧସବୁ ଲେଖାଗଲା।

ଏ ଦେଶର ନାରୀ ଦେଶର ମୁକ୍ତି ସଂଗ୍ରାମରେ ନିଜକୁ ସାମିଲ କରିଦେଲା। କମଳା ନେହେରୁ, ସରୋଜିନୀ ନାଇଡୁ, ରମାଦେବୀ, କସ୍ତୁରବାଙ୍କ ଭଳି ସ୍ୱାଧୀନଚେତା ସେବିକାମାନଙ୍କର ଜନ୍ମ ହେଲା। ବିଦେଶିନୀ ମହିଳା ଶ୍ରୀମା, ଭଗିନୀ ନିବେଦିତା ଏ ଦେଶକୁ ନିଜର କର୍ମଭୂମି ଭାବେ ଗ୍ରହଣ କରି ନେଲେ। ପତିତ ଜନତାର ସେବା ପାଇଁ ନିଜ ଜୀବନର କ୍ଷେତ୍ରଭୂମି ଭାବରେ ଭାରତକୁ ଗ୍ରହଣ କଲେ ମଦର ଟେରେସା। ଏହିଭଳି ଅଜସ୍ର ଦୃଷ୍ଟାନ୍ତର ଅଭାବ ନାହିଁ।

ପୁନଶ୍ଚ ପୁରାଣରେ ବର୍ଣ୍ଣିତ ଅଛି ଯେଉଁଠି ପୁରୁଷର ଶକ୍ତି କାର୍ଯ୍ୟକାରୀ ହୋଇ ପାରିନାହିଁ ସେଇଠି ନାରୀର ଶରଣ ଦେବାଦେବୀମାନେ ମଧ ନେଇଛନ୍ତି। ସେଇଥିପାଇଁ ବୋଧହୁଏ ଦୁର୍ଗାଙ୍କର ଜନ୍ମ। ଦୁର୍ଗା ସଂସାରରେ ଜଗଜ୍ଜନନୀ ଭାବରେ ପରିଚିତା। ଆଜି କିନ୍ତୁ ଆମେ ଯଦି ଏହିଭଳି ଗୌରବମୟ ଇତିହାସ ସହିତ ବର୍ତ୍ତମାନର ସମାଜକୁ ତୁଳନା କରିବୁ ତେବେ ହତାଶ ହେବୁ। ଶିକ୍ଷିତ ଯୁଗରେ ମଣିଷ ବେଶି ହୋଇଛି ପାଶବିକ। ଶିକ୍ଷିତ ସଭ୍ୟ ମଣିଷ ଆଜି ଲଜ୍ୟା ନିବାରଣ ପାଇଁ ବସ୍ତ୍ର ପିନ୍ଧୁଛି, ନାରୀପୁରୁଷର ସମ୍ପର୍କରେ ନିର୍ଦ୍ଦିଷ୍ଟତା ଆସିଛି, ଅଥଚ ସମୟ ସେହି ଆଦିମ ଯୁଗର ପ୍ରଥମ ପାହାଚରେ ଅଟକି ଯାଇଛି। ରାସ୍ତାଘାଟ ଯେଉଁଠି ଯିଏ ପାଇଲା ଝିଅ ବୋହୂ ନିର୍ବିଶେଷରେ ଉଠାଇ ନେଇ ପାଶବିକ ଅତ୍ୟାଚାର କରି ଛାଡ଼ିଦେଲା କିମ୍ବା ମାରି ପକାଇଦେଲା। ଏ କଥାଟି ଏତେ ସାଧାରଣ ହେଇ ଯାଇଛି ଯେ ତାର ଗୁରୁତ୍ୱ ବି ହଜିଯାଇଛି। ଲୋକଙ୍କ ମଧରେ କୌଣସି ଚାଞ୍ଚଲ୍ୟ ସୃଷ୍ଟି କରୁନାହିଁ। ପ୍ରତିଦିନ ସମ୍ବାଦପତ୍ର ଦେଖନ୍ତୁ ଏମିତି ଏକ ଘଟଣା ନିଶ୍ଚିତ ଭାବରେ ଥିବ। ପରଝିଅକୁ ଅନାଇବାଟା ପାପ ବା ପରସ୍ତ୍ରୀ ଉପରେ ଆଖି ପକାଇବାଟା ଅନ୍ୟାୟ ବୋଲି ଦିନେ ଧରାଯାଉଥିଲା। ଆଜି ଏହି କଥାଟି କହିଲେ ଯେ କେହି ହସି ହସି ସହଜରେ ଉଡ଼ାଇ ଦେବେ।

ବର୍ତ୍ତମାନ ସମୟରେ ନାରୀର ସୁରକ୍ଷା ବା ନିରାପତ୍ତା ଏକ ବିବଦମାନ ପ୍ରଶ୍ନବାଚୀ ହେଇ ଠିଆ ହେଇଛି। ବୟସରେ ଅତି ସାନ ହେଲେବି ପିଲାଟି ତାର ବଡ଼ ଭଉଣୀ ବା ମା' ସମାନର କାହାରିକୁ ଦେଖିଲେ କିଛି ଅଶ୍ଳୀଳ ଇଙ୍ଗିତ ଦେବାକୁ ପଛାଉ ନାହିଁ। ବୃଦ୍ଧା ଉପରେ ପଚିଶ ବର୍ଷର ଯୁବକ ବା ଅପ୍ରାପ୍ତବୟସ୍କା ଝିଅଟି ଉପରେ ପୌଢ଼ର ପାଶବିକ ଅତ୍ୟାଚାର କିଛି ନୂଆ କଥା ନୁହେଁ। ସେମିତି ଭାଇ ସହିତ ଭଉଣୀ ବା ସ୍ୱାମୀ ସହିତ ସ୍ତ୍ରୀ ଥିଲେ ମଧ ଭାଇ ବା ସ୍ୱାମୀଟି ଭଉଣୀର ବା ସ୍ତ୍ରୀର ଇଜ୍ଜତ ରକ୍ଷା କରିବାକୁ ସକ୍ଷମ ହୋଇପାରୁନାହିଁ। ତେଣୁ କେଉଁ ଭରସାରେ ତୁମେ ତୁମ ସ୍ୱାମୀ, ଭାଇ ବା ଆତ୍ମୀୟଙ୍କ ସହିତ ଦାଣ୍ଡକୁ ବାହାରିବ ?

(ତାହାଲେ କ'ଣ ନାରୀ ଗୃହବନ୍ଦୀ ହେଇଯିବ?) ବାପଠାରୁ ଝିଅକୁ ଛଡ଼ାଇ ନିଆଯାଉଛି ତ ସ୍ୱାମୀକୁ ବାନ୍ଧି ଦେଇ ସ୍ତ୍ରୀକୁ ଉଠାଇ ନେଇ ଯାଉଛନ୍ତି। ଭାଇ ଆଗରେ ଭଉଣୀର ଲୁଣ୍ଠନ କରାଯାଉଛି। ଏମିତି ଏମିତି ହଜାର ହଜାର ଦୃଷ୍ଟାନ୍ତ। ଏପରିକି ଗର୍ଭବତୀ ନାରୀ ବା ପିଲାଛୁଆର ମା'ଟି ବି ବାଦ୍ ପଡୁନାହିଁ। କେତେ ନୃଶଂସ ଏ ବିଷୟ ଆଉ କାରୁଣ୍ୟପୂର୍ଣ୍ଣ। ଲଙ୍କାର ରାଜା ରାବଣ ତ କେତେ ଉଚ୍ଚରେ ଏଠି। ସେ ସୀତାଙ୍କୁ ହରଣ କରିଥିଲା, ଲୁଣ୍ଠନ ନୁହେଁ। ଏ କ୍ଷେତ୍ରରେ କିଏ କାହାର ସମ୍ମାନ ରଖିବ ବା ରକ୍ଷାକରିବ? ଯେଉଁଠି ଆଇନ୍ ସଂପୂର୍ଣ୍ଣ ସହାୟତା ଦେବାକୁ ସକ୍ଷମ ହୋଇ ପାରୁନି କି ସମାଜ ନିରାପତ୍ତାର କବଚ ପାଇଟି ପାରୁନି। ଏପରିକି ପୋଲିସ୍ ବାଲା, ନେତା, ମନ୍ତ୍ରୀ ପ୍ରଭୃତିଙ୍କୁ ମଧ୍ୟ ବିଶ୍ୱାସ କରାଯାଉନାହିଁ। ଅନ୍ୟମାନଙ୍କ କଥା ନ କହିବା ଭଲ। ସେଥିପାଇଁ ଝିଅ ଯଦି କଲେଜରୁ କି ସ୍କୁଲରୁ ଠିକ ସମୟରେ ନ ଫେରିଲା ବାପାମାଙ୍କ ମନ ଭିତରେ ଅମଙ୍ଗଳ ଆଶଙ୍କା, ଆତଙ୍କ ଖେଳିଯାଉଛି। ସ୍ତ୍ରୀ ଯଦି ଅଫିସ ଯାଉଛି, ସନ୍ଧ୍ୟା ପୂର୍ବରୁ ନ ଫେରିଲେ ସ୍ୱାମୀ ଚିନ୍ତିତ ହେଉଛି। ପାପ ଛୁଉଁଛି। ଝିଅକୁ ଦୂରକୁ ପଢ଼ିବାକୁ ଛାଡ଼ିବାକୁ, ହଷ୍ଟେଲରେ ରଖିବାକୁ ବା ଚାକିରୀ କ୍ଷେତ୍ରରେ ଛାଡ଼ିବାକୁ ବାପ ମା'ମାନେ ଭୟ କରୁଛନ୍ତି। ସମସ୍ତଙ୍କର ସେହି ଗୋଟାଏ କଥା। ଆଜିକାଲି ସ୍ଥାନକାଳ ଯାହା ହେଲାଣି କିଏ ବା ଯୁବତୀ ଝିଅ କି ସ୍ତ୍ରୀକୁ ଏକୁଟିଆ ଛାଡି ଥୟ ଧରି ରହିବ। ଖାଲି ଯୁବତୀ ନୁହନ୍ତି, ନାବାଳିକା, ବୃଦ୍ଧା ସମସ୍ତେ ବିପନ୍ନା। ଅକ୍ଷମ, ଅପାରଗ ଝିଅ ବି ବାଦ୍ ଯାଉ ନାହିଁ। ଆମ ଆଇନ ବି ପ୍ରମାଣକୁ ଆଧାର କରି ଦୋଷୀକୁ ଛାଡିଦେଉଛି। ଟଙ୍କା ଦେଇ ଆସାମୀ ସହଜରେ ମୁକୁଳି ପାରୁଛି।

ଯୁଗେ ଯୁଗେ ନାରୀ ଅବଳା ବୋଲି ହିଁ ସାବ୍ୟସ୍ତ ହୋଇଛି। ନାରୀକୁ ଲତା ଓ ପୁରୁଷକୁ ଗଛ ସହ ତୁଳନା କରାଯାଇଛି। ଏହି ଦୃଷ୍ଟିରୁ ଦେଖିଲେ ନାରୀ ଅବଳା ବୁଦ୍ଧିରେ ନୁହେଁ, ବରଂ ଶାରୀରିକ ଶକ୍ତିରେ, ଶାରୀରିକ ଗଠନରେ। ଯେଉଁଥି ପାଇଁ ସେ ସମାଜରେ ଦ୍ୱିତୀୟ ସ୍ଥାନ (secondary place)ପାଇଛି। ଏହି ଶାରୀରିକ ଗଠନ ପାଇଁ ହିଁ ସୌନ୍ଦର୍ଯ୍ୟ, ଶିକ୍ଷା, ଚାକିରି, ବୁଦ୍ଧି, ଅଧିକ ଥିବା ସତ୍ତ୍ୱେ ନାରୀ ପୁରୁଷର ଅଧୀନ ବା suppressed ହୋଇ ରହିଛି। କହିବା ବାହୁଲ୍ୟ ଯେ "Throughout history they have always been subordinated to men. ... They have taken nothing, they have only received. ... Woman has always been man's dependant ... in the past all history has been made by men. At the present time, when women are beginning to take part in the affairs of the world, it is still a world that belongs to men. ... Thus we must view that the body of woman is one of the essential elements in her situation in the world." (Simone de Beauvoir from her book "The second Sex")

ଅଥଚ ନାରୀ ଏକ ଚମତ୍କାରୀତା ଯିଏକି ନିଜେ ଅନ୍ୟ ଏକ ଜୀବନକୁ ଜନ୍ମଦିଏ, ପୁଣି ସେ ସମଗ୍ର ପୁରୁଷ ଜାତିର ଜନ୍ମଦାତ୍ରୀ। ଅଥଚ St. Thomasଙ୍କ ଭଳି ଲୋକ ମଧ୍ୟ ଘୋଷଣା କରିଥିଲେ ପୁରୁଷ ନାରୀ ପାଇଁ ସୃଷ୍ଟି ହୋଇନାହିଁ, ନାରୀ ପୁରୁଷ ପାଇଁ ସୃଷ୍ଟ। (For the man is not of the woman but the woman of the man) ତାଙ୍କ ଭଳି

ଲେଖକ ଦାର୍ଶନିକ ଲେଖିଥିଲେ, "Man is above woman. ... It is unchangeable that woman is destined to live under man's influence and has no authority from her Lord."

ଐତିହାସ ବି କହେ ଯେ ସବୁ ସମୟରେ ପୁରୁଷ ନିଜ ହାତରେ କ୍ଷମତାକୁ ଜାବୋଡ଼ି ଧରିଛି। ନାରୀକୁ ମାଟି ବା ଭୂଇଁ କହିଲା ବେଳେ ସେ ନିଜକୁ ବୀଜ ବୋଲି ପ୍ରମାଣିତ କରିଛି। ନାରୀ ଶୀତଳ ଝରଣା ବା ପାଣି ହେଲେ ସେ ହେଉଛି ଲେଲିହାନ ନିଆଁ। ଆଦିମକାଳରୁ ମଣିଷ ସୃଷ୍ଟି ବା ଉତ୍ପାଦନ ପାଇଁ ନାରୀପୁରୁଷ ବା ପାଣି ସହ ନିଆଁର ହିଁ ବିବାହ ଯୋଡ଼ିଛି। କିନ୍ତୁ ଆଜି ? ଏ ସବୁର କୌଣସି ଶାସ୍ତ୍ରସମ୍ମତିକୁ ପୁରୁଷର କାମନା ଅପେକ୍ଷା ରଖୁନାହିଁ।

ପୁରୁଷର କ୍ଷଣିକ ଉତ୍ତେଜନାର ଶିକାର ହୋଇ କେତେ ଝିଅ ଗଣିକା ହୋଇଯାଉଛନ୍ତି। ସମାଜ ବାଛନ୍ଦ କରୁଛି। ସାରା ଜୀବନ କାହାକୁ ବାହା ହେବାର ସୁଯୋଗ ମିଳୁନି ତ କିଏ ଲଜ୍ୟା, କଳଙ୍କ ସହି ନପାରି ବାଧହୋଇ ଆତ୍ମହତ୍ୟା କରୁଛି। ମୂଲ୍ୟବାନ କୋମଳ ସୁନ୍ଦର ଜୀବନଟେ ଅସମୟରେ ଭିଭିଯାଉଛି, ସ୍ୱପ୍ନଭରା କଅଁଳ ସବୁଜ ଜୀବନରେ ହାହାକାର ଭରିଯାଉଛି। କେତେ ସୁନାର ସଂସାର ସବୁଦିନ ପାଇଁ ଉଜୁଡ଼ି ଯାଉଛି। ସ୍ନେହୀ ସ୍ୱାମୀ, ସନ୍ତାନ ଠାରୁ ଦୂରେଇ ଯାଉଛି। ଜେଉଁ ବୃଦ୍ଧ-ବାପ ଝିଅର ଏ ଦୁର୍ଦ୍ଦଶା ଦେଖି ନ ପାରି ପାଗଳ ହୋଇ ଯାଉଛି ତ କିଏ ଜୀବନ ହାରି ଦେଉଛି। ଏହା ଯେତିକି ବେଦନା ଦାୟକ, ସେତିକି କ୍ଷୋଭର ବିଷୟ।

## ଆମ ଯୁବସମାଜ କେତେଦୂର ପ୍ରତିକ୍ରିୟାଶୀଳ

ଏହିଭଳି ଅଘଟଣା ଯେଉଁ ଝିଅମାନଙ୍କ ଜୀବନରେ ଘଟୁଛି ସେଥିପାଇଁ ଯୁବ-ସମାଜ କିଛି ପରିମାଣରେ ଦାୟୀ ନିଶ୍ଚେ। ତେବେ ଅନ୍ୟପକ୍ଷରେ ଆଦର୍ଶବାଦୀ ଯୁବକମାନେ ପ୍ରତିକ୍ରିୟାଶୀଳ କି ? କେବେ ଏହା ଉପରେ ସେମାନେ ଚିନ୍ତା କରିଛନ୍ତି ?

ଅନେକ ସମୟରେ ଦେଖାଯାଉଛି ଡାକ୍ତରମାଇନା ପରେ ଧର୍ଷିତା ଝିଅଟିର ଭବିଷ୍ୟତ ଚୁକ୍ତି ହେଇଯାଏ। ତା ପରେ ସେ କ'ଣ କରେ, କୁଆଡେ ଯାଏ, କେମିତି ବଞ୍ଚେ, ତାର ପରିବାର, ବନ୍ଧୁବାନ୍ଧବ, ସମାଜ ତାକୁ କେମିତି ବ୍ୟବହାର ଦେଖାନ୍ତି, ଗ୍ରହଣ କରନ୍ତି ? ଏମିତି ଅନେକ ପ୍ରଶ୍ନ ଉଠିପାରେ। ଯଦି କେସ୍‌ଟି କୋର୍ଟକୁ ଆସୁଛି ତେବେ ପୋଲିସରୁ ଆରମ୍ଭ କରି ଓକିଲଯାଏଁ ଝିଅଟିକୁ ପ୍ରଶ୍ନ ପଚାରି ପଚାରି ଆହୁରି ଦୟନୀୟ, ଲଜ୍ୟାକର ଅବସ୍ଥା ସୃଷ୍ଟି କରୁଛନ୍ତି। ପୋଲିସ ମଧ୍ୟ କେତେ କ୍ଷେତ୍ରରେ ଏଭଳି ଅପରାଧ କରିବାକୁ ପଛାଉନାହଁ। ରକ୍ଷକ ଭକ୍ଷକ ସାଜିବାର ଦୃଷ୍ଟାନ୍ତ ବିରଳ ନୁହେଁ ଭାରତବର୍ଷରେ।

କେତେକ କାମାତୁର ମଣିଷଙ୍କର କ୍ଷଣିକ ଉତ୍ତେଜନାର ଚରିତାର୍ଥ ପାଇଁ ନିମିଷକ ମଧ୍ୟରେ ଗୋଟିଏ ନିରୀହା ଝିଅର ବହୁ ସଞ୍ଚିତ ସ୍ୱପ୍ନସବୁ ଟୁକୁରା ଟୁକୁରା ହୋଇଯାଉଛି। ଭବିଷ୍ୟତ ଅତଳ ଅନ୍ଧକାର ଭିତରେ ହଜି ଯାଉଛି। କିଏ ସ୍ୱପ୍ନ ହରାଉଛି, କିଏ ଭବିଷ୍ୟତ ହରାଉଛି ତ କାହାର ସୁଖ ସଂସାର ଖଣ୍ଡ ଖଣ୍ଡ ହୋଇ ଯାଉଛି। ସ୍ୱାମୀ-ସନ୍ତାନଙ୍କୁ ନେଇ ସୁନ୍ଦର ଘର କରିଥିବା ଗୃହିଣୀଟି ସବୁଦିନ ପାଇଁ ନିର୍ବାସିତା ହୋଇଯାଉଛି ତା ପରିବାରରୁ। ହୁଏତ କେତେକ କ୍ଷେତ୍ରରେ ଆତ୍ମହତ୍ୟା ହିଁ ହେଉଛି ନିଜକୁ ମୁକ୍ତି ଦେବାର ମାଧ୍ୟମ। ଅଥଚ ତାର ଏଥିରେ କୌଣସି ଦୋଷ ନାହିଁ।

ପୁଣି ଅନେକ ଯାଗାରେ ଦେଖାଯାଏ ବାପାମା କେସ୍‌ଟିକୁ ଚାପି ଦିଅନ୍ତି ଲୋକଲଜ୍ଜା, ବଦନାମ ହେବା ଭୟରେ। ଆଉ କେଉଁଠି କେସ୍ ଚାଲେ ଅନିର୍ଦ୍ଦିଷ୍ଟ ବର୍ଷ ପାଇଁ। ଶେଷରେ ପ୍ରମାଣ ନହେବାରୁ କେସ୍‌ଟିକୁ କୋର୍ଟରୁ ବରଖାସ୍ତ କରାଯାଏ। ଆସାମୀ ସହଜରେ ଖସିଯାଏ ଓ ଅପରାଧ ପରେ ଅପରାଧ କରିଚାଲେ। ପ୍ରମାଣ ମିଳେନାହିଁ। ପ୍ରମାଣ ଥିଲେ ବି ସାକ୍ଷୀଦେବାକୁ ଲୋକେ ବାହାରନ୍ତି ନାହିଁ। କାହିଁକିନା ଆଇନ୍‌କାନୁନ ସେମାନଙ୍କୁ ନିରାପତ୍ତା ଦେଇ ପାରେନାହିଁ। ଏ କ୍ଷେତ୍ରରେ ଝିଅଟି ଯଦି ଆତ୍ମହତ୍ୟା ନକରି ବଞ୍ଚିରହିବାର ମନବଳ ସଞ୍ଚୟ କଲା ତାପରେ? ଆମ ସମାଜର ପୁଅମାନେ ତ ପିତ୍ତଳ ଗରା, ଧୋଇଧାଇ ଦେଲେ ଚିକ୍କଣ। କିନ୍ତୁ ଝିଅଟି ଅସତୀ ହୋଇଯାଏ। ଅନେକ ଭାବନ୍ତି ଦୋଷୀ ଦଣ୍ଡ ପାଇଲେ ବି ଝିଅର ଅକ୍ଷତ କୁମାରୀତ୍ୱ ତ ଆଉ ଫେରି ଆସିବନି। ପୁଣି ଦେଖାଯାଉଛି ଏଭଳି ଝିଅମାନଙ୍କୁ ସମାଜ ହିଁ ବଞ୍ଚିବାକୁ ସୁସ୍ଥଭାବରେ ଦିଏନାହିଁ। ଘରେ ଯଦି ତାର ଆଉ ଦୁଇ ତିନୋଟି ଭଉଣୀ ଥା'ନ୍ତି ସେମାନେ କାଳେ ଏ ବଦନାମ ଯୋଗୁଁ ବାହା ହୋଇ ପାରିବେ ନାହିଁ ବାପାମାଙ୍କର ଚିନ୍ତା ଅଧିକ ବଢ଼ିଯାଏ। ବିଚାରୀ ଝିଅଟି ହୁଏତ ଚାକିରି କରିବ — ଅବଶ୍ୟ ଯଦି ଶିକ୍ଷିତା, ଚାକିରି କରିବାର ଯୋଗ୍ୟତା ଥାଏ। କିନ୍ତୁ ଆଜିକାଲି ଯେଉଁ ଚାକିରିର ସମସ୍ୟା ତାହା ସମସ୍ତଙ୍କୁ ଅଛି ବହୁତେ ଜଣା। ପୁଣି ଏଭଳି ଝିଅମାନଙ୍କୁ କିଏ ଚାକିରି ଦେବ? ଯଦି ପାଏ ତାର କଲିଗ୍‌ମାନେ କେମିତି ବ୍ୟବହାର ତାକୁ ଦେଖାଇବେ ? ପୁଣି ଝିଅଟି ଯଦି ପାଠ ପଢ଼ିନଥାଏ ଏବଂ ଖୁବ୍ ଗରିବ ହୋଇଥାଏ ଓ ତାର ଜ୍ଞାତିଭାଇମାନେ ତାକୁ ଗ୍ରହଣ ନ କରନ୍ତି, ତେବେ ସେ କଣ କରିବ? ଗୋଟିଏ ଦିଗରେ ହୁଏତ ମରଣର ଶୀତଳ ଆହ୍ୱାନ; ଅନ୍ୟ ଦିଗଟି ହୋଇପାରେ ନିଜକୁ ଫୁଟ୍‌ପାଥିରେ ବିକ୍ରିକରି ବଞ୍ଚିବାର ପ୍ରୟାସ। ଆମେହିଁ ତାକୁ ମରଣ ମୁହଁକୁ ବା ବେଶ୍ୟାପଡାକୁ ରାସ୍ତା ପରିଷ୍କାର କରିଦେଉ। ଏମିତି କେତେ କେତେ ଭଲ ଝିଅ ଫୁଟ୍‌ପାଥିରେ ନିଜକୁ ବିକ୍ରି କରିବାକୁ ବାଧ ହେଉଛନ୍ତି। କେତେ ମୂଲ୍ୟବାନ ଜୀବନର ଦୀପ ଅକାଳରେ ଲଜ୍ଜା, ଅପମାନ ସହି ନପାରି ଲିଭି ଯାଉଛି। ବାକି ଯିଏ ରହିଲା ସାରା ଜୀବନ କଳଙ୍କିନୀର ଆଖ୍ୟା ପାଇ ସେ ଜୀବନ ରାସ୍ତାରେ ଝୁଣ୍ଟି ଝୁଣ୍ଟି ଚାଲୁଛି। କେହି ସାହା ନାହାନ୍ତି, ଆହା ପଦେ କହିବାକୁ ନାହାନ୍ତି। ଯେଉଁମାନେ ଅଛନ୍ତି ସେମାନେ ତାର ଅସହାୟତାର ହିଁ ସୁଯୋଗ ନେବାଲାଗି ଅପେକ୍ଷା କରିଥାନ୍ତି।

ଦେଖାଯାଉଛି ଯଦି ଝିଅଟି ଚାକିରି କରେ ତଥାପି ତାକୁ ମୁକ୍ତି ମିଳେ ନାହିଁ। ତା ପଛରେ ଷ୍ଟାମ୍ପ ବାଡ଼ାଯାଇଥିବ ଯେ ତାକୁ ଦିନେ ରେପ୍ କରାଯାଇଥିଲା ବୋଲି। ଭଲା ଅଭଲା ଲୋକେ ଟିପ୍ପଣୀ ଦେବେ, ଆଡ଼େଇ ରହିବେ ଯେମିତି ଛାଇ ପଡ଼ିଗଲେ ମାରାହୋଇଯିବେ (ଅଥଚ ଏହି ଭଦ୍ରଲୋକମାନେହିଁ ତାର ଅବସ୍ଥା ଲାଗି ଦାୟୀ)। କାଛ ବାଡ଼କୁ ଦେଖାଇ କହିବେ। ଠାଠାରି ହେବେ। ଏହା ଝିଅଟିକୁ ଆହୁରି ଅସହାୟ କରିଦିଏ। ଯାହା ଫଳରେ କି ସମର୍ଥନ ବିନା ବଞ୍ଚିବାର ସଂଗ୍ରାମ ପାଖରେ ଝିଅଟିର ମନବଳ ଭାଙ୍ଗିଯାଏ। ସେ ଯେ ଦିନେ କାହାର ଝିଅ ଥିଲା, ବଧୂ ହେବାର ସ୍ୱପ୍ନ ଦେଖିଥିଲା, ସନ୍ତାନସନ୍ତତିର ଜନନୀ ହେଇ ସମ୍ମାନରସହ ବଞ୍ଚିବାକୁ ଚାହିଁଥିଲା ସେ ସବୁ ପଛରେ ପଡ଼ିଯିବ। ତାର ସ୍ୱପ୍ନ, ଭାବପ୍ରବଣତା, ନାରୀସୁଲଭ ସମ୍ଭ୍ରନ୍ତତା ବିଚିତ୍ର ଭାବରେ ମୋଡ଼ ବାଙ୍କିବ। ନିଷ୍ଠୁର ନିୟତି ତାକୁ ଏକ ଗଛ ନଥିବା, ପାଣି ନଥିବା, ଛାଇହୀନ ଟାଙ୍ଗରା ଭୂଇଁରେ ଠିଆ କରାଇ ଦେଇଥିବ।

ଏହି ପରିପ୍ରେକ୍ଷୀରେ ସମସ୍ତ ଶିକ୍ଷିତ ଯୁବକ ତଥା ବୁଦ୍ଧିଜୀବୀମାନେ ଚିନ୍ତା କରିବା ଉଚିତ ଯେ ଏଭଳି ଏକ ବିଷମ ସମସ୍ୟାର ସମାଧାନ କରାଯିବ କିପରି ? ଆଇନ୍‌କାନୁନ୍ ଦ୍ୱାରା

ଜେବେ ମନର ସଂସ୍କାର କରାଯାଇପାରେନା। ଏଠି ଦରକାର ନୈତିକ ବିବେକ ବା ଆନ୍ତରିକ ମାନବିକତା। ବିବେକ ନଥିବା ମଣିଷ ଜଣେ ପଶୁ। ଜଣେ ଅସହାୟା ଝିଅକୁ ସାହାଯ୍ୟକରିବା ମାନବିକତାର ପରିଚୟ। ଏହି ମାନବିକତା ଜଣକୁ ମନୁଷ୍ୟତାରୁ ଉଠାଇ ଆଣି ଦେବତାର ଆସନ ଦିଏ। ଅପରପକ୍ଷେ କୁକର୍ମ ଜଣେ ମଣିଷକୁ ରାକ୍ଷସ କରିଦିଏ। ଜଣେ ନାରୀର ସୁରକ୍ଷା ପୁରୁଷର ବିବେକୀମନ ନୁହେଁ ତ ଆଉ କଣ ?

ଯୁବକମାନେ ହେଲେ ଭରପୂର ଶକ୍ତି, ଉତ୍ସାହ, ମାନବିକତା ବା ନୈତିକତାର ପ୍ରତୀକ। ଜଣେ ଜରାଗ୍ରସ୍ତ ବ୍ୟକ୍ତି ଉପଦେଶ ଦେଇପାରନ୍ତି। ଅନୁଭୂତିର ପରିପକ୍ୱତା ଯୋଗୁଁ ବିଭିନ୍ନ କାର୍ଯ୍ୟ ନିମନ୍ତେ ପରାମର୍ଶ ଦେବାକୁ ସକ୍ଷମ ହୋଇପାରନ୍ତି, କିନ୍ତୁ ତାଙ୍କ ପକ୍ଷରେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବା, ପରିବର୍ତ୍ତନ ଆଣିବା ସମ୍ଭବ ନୁହେଁ। ଯୁବ ସମାଜ ହେଲେ ସୃଜନୀଶୀଳତାର ପ୍ରତୀକ। ସେମାନେ ଗଢ଼ିବାର ସ୍ୱପ୍ନ ଦେଖି ପାରିଥିବାରୁ ଭାଙ୍ଗି ପାରନ୍ତି। ସେମାନେ ଇଚ୍ଛାକଲେ ଅନ୍ୟାୟର ପ୍ରତିବାଦ କରିପାରିବେ ଅଥବା ପରିସ୍ଥିତିକୁ ନିୟନ୍ତ୍ରଣ କରିପାରିବେ। ଏ ପରିପ୍ରେକ୍ଷୀରେ ତେଣୁ ଯୁବସମାଜର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଦୋଷୀକୁ ଉପଯୁକ୍ତ ଶାସ୍ତି ଦେବା ସହିତ ମନର ସଂସ୍କାର କରିବାପାଇଁ ସଂଘବଦ୍ଧ ହେବା ଓ ଉଶୃଙ୍ଖଳତାକୁ ନିୟନ୍ତ୍ରଣ କରିବା ଲାଗି ଆଗଭର ହୋଇ ବାହାରି ପଡ଼ିବା ଆବଶ୍ୟକ। ସେମାନେ ଯଦି ମା'କୁ ମା'ର, ଭଉଣୀକୁ ଭଉଣୀର ସମ୍ମାନ ଦିଅନ୍ତି ତେବେ ଅନେକାଂଶରେ ପରିସ୍ଥିତି ସୁଧୁରି ଯାଆନ୍ତା। ହେଲେ ଯୁବସମାଜ ଯଦି ଉଦ୍‌ଭ୍ରାନ୍ତ ହୁଅନ୍ତି, ମଦ୍ୟପି ଦୁଶ୍ଚରିତ୍ର ହୁଅନ୍ତି ତାହେଲେ ସେମାନେ ଯାହାକୁ ପାରିବେ ତାକୁ ରାସ୍ତାରୁ ଟେକି ନେବେ। ଆମର ଆଇନ୍‌କାନୁନ, ଦଣ୍ଡବିଧାତାମାନେ ଏସବୁ ଖାଲି ଜଳ ଜଳ ହୋଇ ଦେଖୁଥିବେ। କେହି କାହାକୁ ରକ୍ଷା କରି ପାରିବେ ନାହିଁ। ତେବେ ମାନବିକତାର ଜୟ ଯୁଗେ ଯଗେ ହୋଇଛି। ଅନୁତାପ ରାକ୍ଷସକୁ ଦେବତାରେ ପରିଣତ କରିଛି। ନିଜକୁ ପ୍ରଶ୍ନ କରିବା ଉଚିତ ଯେ ଜୀବନ ମୂଲ୍ୟବାନ ନା ଉତ୍ତେଜନା ? ମୁହୂର୍ତ୍ତର ପାଗଳାମି ଲାଗି ଗୋଟେ ଝିଅକୁ ସାରା ଜୀବନ ମୂଲ୍ୟ ଦେବାକୁ ପଡୁଛି। ଚିନ୍ତା କରିବା ଦରକାର, ଇନ୍ଦ୍ରିୟ ସୁଖ ଠାରୁ ଈଶ୍ୱରଙ୍କର ଏହି ସୁନ୍ଦର କମନୀୟ ସୃଷ୍ଟିର ନିରାପତ୍ତା, ସମ୍ମାନ ବା ମର୍ଯ୍ୟାଦା କଣ ବଡ଼ କଥା ନୁହେଁ ? ଏମିତି ଭାବରେ ଜଣେ ନିରୀହା ନାରୀର ସ୍ୱପ୍ନ, ଭବିଷ୍ୟତ, ବଞ୍ଚିରହିବାର ଲୋଭ, ଆଦର୍ଶ, ଶିକ୍ଷା, ପ୍ରତିଭାକୁ ସବୁଦିନ ପାଇଁ ନଷ୍ଟ କରିଦେବାଟା କ'ଣ ମାନବିକତା ? ଈଶ୍ୱର କ୍ଷମା ଦେବେ ତ ? ଆପଣ ଆଇନକୁ, ସମାଜକୁ ଫାଙ୍କି ଦେଇପାରନ୍ତି, କିନ୍ତୁ ଯିଏ ଆପଣଙ୍କୁ ସଂସାରକୁ ଆଣିଛନ୍ତି ସେ ତ ସବୁ ଦେଖୁଛନ୍ତି। ତେଣୁ ଅପରାଧୀ ହେବା ଆଗରୁ ଥରେ ଚିନ୍ତା କରନ୍ତୁ ଉକ୍ତ ମହିଳା ଜଣକ ଯଦି ଆପଣଙ୍କ ମା' କିମ୍ବା ଭଉଣୀ ଆସନରେ ଥାଆନ୍ତେ ? ଆପଣଙ୍କୁ ପୃଥିବୀର ଆଲୋକ ଦେଖାଇବା ପାଇଁ ଯିଏ ମାସ ମାସ ତାର ଗର୍ଭରେ ଧରିଛି, ସେ ଜଣେ ନାରୀ। ସେହି ନାରୀର ବନ୍ଦନା କରାଯାଇପାରେ, ଲୁଣ୍ଠନ ନୁହେଁ। ଭାଷଣ, ପ୍ରବନ୍ଧ, ଏସବୁରେ ପ୍ରତିକ୍ରିୟା ସୃଷ୍ଟି କରି ନ ପାରେ କିନ୍ତୁ ଯଦି ଟିକିଏ ବି ବିବେକ ଥାଏ ଆପଣଙ୍କ ପାଖରେ ପଚାରି ଦେଖନ୍ତୁ ତ ?

ଆଉ ଗୋଟାଏ ପ୍ରଶ୍ନ ଉଠେ, ବର୍ତ୍ତମାନ ସୁଦ୍ଧା ଏମିତି ଏକ ଅସହାୟା ଝିଅକୁ ପତ୍ନୀର ଗୌରବ ଦେବାକୁ ଆମର ଯୁବବନ୍ଧୁମାନେ ପ୍ରସ୍ତୁତ ହୋଇପାରିଛନ୍ତି କି ? ଏହା ସତ ଯେ ପ୍ରତ୍ୟେକ ସ୍ୱାମୀ ଚାହାନ୍ତି ନିଜ ସ୍ତ୍ରୀର ଅକ୍ଷତ କୁମାରୀତ୍ୱକୁ। ସ୍ତ୍ରୀ ଚରିତ୍ରହୀନା ହେଉ, କଳଙ୍କିନୀ ହେଉ, ଏକଥା କୌଣସି ସ୍ୱାମୀ କେବେ ବି ସହ୍ୟ କରିପାରିବେନି। ତଥାପି ଜଣେ ନିର୍ଦ୍ଦୋଷ ଝିଅର ଅସହାୟତାର ସୁଯୋଗ ନେଇ ଯେଉଁମାନେ ନର୍କର ଦ୍ୱାରରେ ତାକୁ ଛାଡ଼ିଦେଇ ଚାଲି ଯାଆନ୍ତି,

ତାର ବା ଦୋଷ କ'ଣ? ବିନା ଦୋଷରେ ତାକୁ ସମାଜ କେଉଁ ବଳରେ ବାରଣ କରିବ ବା ସେ କାହିଁକି ବାଧ୍ୟ ହୋଇ ପାରିବନି? ଏଥିପାଇଁ ଆମ ସମାଜ କି ବ୍ୟବସ୍ଥା କରିଛି?

ଆମ ସମାଜର ଉଦ୍ୟମଶୀଳ, ସଂସ୍କାରକାମୀ ଶିକ୍ଷିତ ଯୁବକମାନେ ଯଦି ଏଭଳି ଝିଅମାନଙ୍କୁ ପତ୍ନୀର ସମ୍ମାନ ଦିଅନ୍ତେ, ତେବେ ହୁଏତ କେତେ ବୃଦ୍ଧ ପିତା ଅକାଳ ବଜ୍ରପାତରୁ ବର୍ତ୍ତି ଯାଆନ୍ତେ, କେତେ ମୃତ୍ୟୁଗାମୀ ଝିଅଙ୍କୁ ରକ୍ଷା କରାଯାଇପାରନ୍ତା। ଲଜ୍ଜା, ଅପମାନ, ସଙ୍କୋଚ, ଘୃଣାରୁ କେତେ ଅସହାୟା ଝିଅ ବର୍ତ୍ତିଯାଇ ପାରନ୍ତେ। ଏହା ହୁଅନ୍ତା ଯୁବସମାଜର ମାନବିକତା ଏବଂ ମହାନତା !

ମାଟିର ଦେହ ସଂସାରରେ ସତ୍ୟ ନୁହେଁ। ଦେହର ଅଶୁଦ୍ଧତା କାହାକୁ ଅସତୀ କରି ଦିଏନା। ଆତ୍ମାକୁ ଅପବିତ୍ର କରିଦିଏନା। ତାହାଲେତ ଆମେ କୁନ୍ତୀ, ଦ୍ରୌପଦୀ ପ୍ରଭୃତିଙ୍କୁ ଅସତୀ କହିଥାନ୍ତୁ। ମନର ନିର୍ମଳତା ଓ ମନର ମିଳନ ହିଁ ବାସ୍ତବିକ ପ୍ରକୃତ ସତ୍ୟ। ସତୀତ୍ୱ ହେଲା ଆମ ମନରେ କଳଙ୍କିଧରା ଏକ ବିଶ୍ୱାସ। ଏ ବିଶ୍ୱାସରେ ସଂସ୍କାର ଅଣାଯାଇ ପାରେ। ମନର ପବିତ୍ରତାହିଁ ଦେହକୁ ପବିତ୍ର କରେ। ମନ ହିଁ ସ୍ୱର୍ଗ ବୋଲି ଆମ ପୂର୍ବପୁରୁଷମାନେ କହି ଯାଇଛନ୍ତି। 'ମନର ମୂଳେ ଏ ଜଗତ' — ମନହିଁ ଗାଡ଼ିଆକୁ ଗଙ୍ଗା କରିଦିଏ।

ଅହଲ୍ୟାକୁ ପଥର ହେବାକୁ ଅଭିଶାପ ଦେଇ ଗୌତମ ସଂସାରରେ ବଡ଼ ହୋଇ ଯାଇନାହାନ୍ତି। ଅଥଚ ପାଷାଣୀ ଅହଲ୍ୟାକୁ ଶ୍ରୀରାମଚନ୍ଦ୍ର ଉଦ୍ଧାର କରି ଯୁଗେ ଯୁଗେ ମହାନ ଆଦର୍ଶର ଦୃଷ୍ଟାନ୍ତ ପାଲଟିଛନ୍ତି। ଏହା ଶ୍ରୀରାମଚନ୍ଦ୍ରଙ୍କର ଉଦାର ମାନବିକତାର ନିଦର୍ଶନ। ଆମ ନାରୀସମାଜ ଆଜି ଚାହେଁ ଏହିଭଳି ରାମଚନ୍ଦ୍ରମାନଙ୍କୁ, ଯେଉଁମାନଙ୍କର ପଦରେଣୁ ପାଇ ଏ ସମାଜର ଶହ ଶହ ଧର୍ଷିତା ଝିଅ ଉଦ୍ଧାର ପାଇଯାନ୍ତେ। ନାରୀ ଜୀବନରେ ସାଇତି ରଖିଥିବା ସେହି ସୁନ୍ଦର ସ୍ୱପ୍ନକୁ ଫେରିପାଆନ୍ତେ। ମଥାରେ ସିନ୍ଦୂର, ହାତରେ ଶଙ୍ଖା ଲଗାଇ ସମାଜରେ ଅନ୍ତତଃ ମୁଣ୍ଡ ଉଠାଇ ଚାଲନ୍ତେ। ପତ୍ନୀର ଗୌରବ ପାଇ ଆତ୍ମହତ୍ୟା କଥା ଚିନ୍ତା କରନ୍ତେ ନାହିଁ। ଏହି ନୂତନ ଗୌରବ ପାଇ ନୂଆ ଜନ୍ମ ଲୋଡ଼ନ୍ତେ। ତାଛଡ଼ା ଏହିସବୁ ନାରୀମାନଙ୍କର ଥଇଥାନ, କଲ୍ୟାଣ ସମିତିମାନ ଘରୋଇ ଉଦ୍ୟମ ବା ଶିଳ୍ପପତିମାନଙ୍କର ଆନୁକୂଲ୍ୟରେ ସ୍ଥାପନ ମଧ୍ୟ କିଛିଟା ସମସ୍ୟାର ସମାଧାନ କରନ୍ତା। ତାଛଡ଼ା ଯେଉଁ ଯୁବକମାନେ ଏହିଭଳି ଝିଅମାନଙ୍କୁ ପତ୍ନୀ ଆସନ ଦେବାକୁ ଇଚ୍ଛୁକ ସେହି ସଂସ୍କାରବାଦୀ, ଉଦ୍ୟମଶୀଳ, ଉଚ୍ଚମନା ଯୁବକମାନଙ୍କୁ କିଛି ପୁରସ୍କାର, ବୃତ୍ତି, ଚାକିରି, ଭୂମି ପ୍ରଭୃତି ଯଦି ସରକାର ଯୋଗାଇ ଦେବାର ଘୋଷଣା କରନ୍ତେ ତାହେଲେ ଅନେକ ଯୁବକ ଉତ୍ସାହ ପ୍ରକାଶ କରନ୍ତେ। ଜମି, ବୃତ୍ତି, ପୁରସ୍କାର, ଚାକିରି ଲୋଭରେ ଯଦି ଯୁବକଟି ବିବାହ କରି ଝିଅଟିକୁ ଛାଡ଼ିଦିଏ କିମ୍ବା ତା ଉପରେ ଅକଥନୀୟ ଅତ୍ୟାଚାର କରେ ଓ ଝିଅଟି ଏଥିପାଇଁ ଲିଖିତ ଭାବରେ ଅଭିଯୋଗ କରେ, କୋର୍ଟରେ ଆଶ୍ରୟ ନିଏ ତେବେ ଚାକିରି ଛଡ଼ାଇ ନେବା, ଜରିମାନା ଆଦାୟ କରିବା ଓ ଝିଅଟିକୁ ଥଇଥାନ କରିବାର ବ୍ୟବସ୍ଥା ରହିବା ନିହାତି ଆବଶ୍ୟକ। ତାହେଲେ ସ୍ତ୍ରୀକୁ ଛାଡ଼ିଦେବା, ମାରିଦେବା କି ନିର୍ଯ୍ୟାତନା ଦେବାର ଭୟ ରହିବ ନାହିଁ। ଏସବୁ ସଂପର୍କରେ କଡ଼ାକଡ଼ି ଆଇନ୍ ପ୍ରଣୟନ ହେବା ଦରକାର। ଯେଉଁ ଝିଅ ବା ନାରୀମାନେ ବିବାହ କରିବାକୁ ଇଚ୍ଛୁକ ନୁହନ୍ତି ବା ସେ ବୟସ, ସେ ଅବସ୍ଥା ପାର ହୋଇଯାଇଥାଏ ସେଭଳି ଝିଅମାନଙ୍କୁ ସରକାରୀ, ବେସରକାରୀ ଉଦ୍ୟମରେ ଥଇଥାନ କରିବା, ଯୋଗ୍ୟତା ଅନୁସାରେ ଜୀବୀକା ବା କର୍ମ ନିଯୁକ୍ତି ଦେବା, ସମ୍ମାନର ଜୀବନଟେ ଜୀଇଁବାର ସୁଯୋଗ ସୃଷ୍ଟି କରିବା ନିଶ୍ଚିତ ଭାବରେ ଆବଶ୍ୟକ।

ମୁଁ ଜାଣେ କେବଳ ଲମ୍ବା ଲମ୍ବା ପ୍ରବନ୍ଧ ଲେଖିଦେଲେ, ବଡ଼ ବଡ଼ ସଭାରେ ତାଳି ମାରିଲେ, ବାହାସ୍ଫୋଟ ମାରି ଗର୍ଜନ କରି ବିପ୍ଳବୀର ଭାଷଣ ଦେଲେ ପ୍ରକୃତ ସମସ୍ୟାର ସମାଧାନ ହେବନାହିଁ। ଏହାକୁ କେତେଦୂର ବାସ୍ତବ-ରୂପରେଖ ବା କାର୍ଯ୍ୟରେ ପରିଣତ କରାଯାଇ ପାରିବ ସେଥିପାଇଁ ଯୋଜନା, ଚିନ୍ତା ଓ ଦୂରଦୃଷ୍ଟିର ଆବଶ୍ୟକତା ରହିଛି। ଏଥିଲାଗି ଯୁବସମାଜ ଓ ତାଙ୍କର ଅଭିଭାବକମାନେ ଆଗେଇ ଆସିବା ଦରକାର। ଜଣାନାହିଁ ଏ ପଦକ୍ଷେପ ଲାଗି ଅଭିଶପ୍ତା ଅହଲ୍ୟାମାନଙ୍କୁ କେତେବର୍ଷ ଅପେକ୍ଷା କରିବାକୁ ପଡ଼ିବ।



# ସୁଖର ମାପକାଠି

ଏଥର ବି ସେହିକଥା ରୀତାର। ମୋତେ ଏମିତି ଘରେ ବାହାଦେଲ ଯେ କିଛି ଅଛୁ ନାହିଁ। ନା ଭଲ ଖଣ୍ଡେ ପିନ୍ଧିବାକୁ ନା ଟିକେ ସଉକ୍ ମେଣ୍ଟାଇବାକୁ ଅଛି। ଯା'ଙ୍କୁ ଯେତେବେଳେ ଦେଖ ପଇସା ନାହିଁ କି ସମୟ ନାହିଁ। ଖାଲି କାମ, କାମ। ଆଜିଯାଏଁ ସ୍କୁଟରଟେ କରି ପାରିଲେ ? ସେହି ରଙ୍ଗଛଡା ସାଇକେଲଟା ବାହା ହେଲାଦିନୁ ଦେଖି ଆସୁଛି। ପାଖ ମହାପାତ୍ର ବାବୁଙ୍କର ତ ପୁଣି ଏକା ଚାକିରି ! ଦୁଇଟା ଜାଗା କିଣି ସାରିଲେଣି। ଗୋଟାକରେ ଘର ତିଆରି ଚାଲିଛି। ବାହାଘର ବେଳେ ଯେତିକି ଗହଣା ଦେଇଥିଲ ସେତିକି। ଆଜିଯାଏଁ ଯା'ଙ୍କ ପଇସାରେ ନାକଫୁଲଟେ କିଣା ହୋଇଛିନା ? ପିଲାମାନେ ସେଇ ସୂତା ଜାମାପଟା ପିନ୍ଧୁଛନ୍ତି। ମୋ କଥାତ ନ କହିବା ଭଲ . . ।

ବାସ୍ ବାସ୍ . . . । ରୀତାକୁ ଆଉ ଆଗକୁ ମାଡିବାକୁ ଦେଲିନାହିଁ। ସେତେବେଳକୁ ସେ ମୁହଁରେ ଲୁଗାକାନିକୁ ଚାପି ସୁଁ ସୁଁ ହେବାକୁ ଆରମ୍ଭ କଲାଣି। ଏଇ ଅଝଟ ଭଉଣୀକୁ ବୁଝାଇବାକୁ ଯାଇ ମୁରୁକି ହସିଦେଲି। ବିଚାରୀ ଦୁନିଆ କ'ଣ ଦେଖିଛି ? ଖୁସି ହେବାର ଅର୍ଥ ସେ ଖାଲି ଟଙ୍କା, ଗହଣା ଜମିକିଣା, ଦାମୀ ପୋଷାକ ପିନ୍ଧାଟିକୁ ବୁଝିଛି। ଅନ୍ୟମାନେ କ'ଣ ଖାଉଛନ୍ତି, କେମିତି ଚଳୁଛନ୍ତି, କଳାଧନରେ ରାତାରାତି କେମିତି କୋଠା ବାଡ଼ାଉଛନ୍ତି ଇତ୍ୟାଦିକୁ ଦେଖି ସେ ସେହିମାନଙ୍କ ସହିତ ନିଜ ସ୍ୱାମୀକୁ, ନିଜର ସଂସାରକୁ ତୁଳନା କରି ଭାଙ୍ଗି ପଡୁଛି, ଈର୍ଷା କରୁଛି, ଦୁଃଖ ପାଉଛି ଆଉ ସ୍ୱାମୀକୁ ପଦେଲେଖାଁ ଶୁଣାଇ ଦେଉଛି। ନଚେତ୍ ଅଧିକାଂଶ ଦିନ ରୁଷି ବସୁଛି।

ସୁଖର ସଂଜ୍ଞା ସତରେ ଆଜି କେତେ ବଦଳି ନ ଯାଇଛି ! ଟଙ୍କା ତ ଦୁନିଆକୁ କିଣି ରଖିଛି। ମଣିଷର ଏତେଟିକେ ନିରୋଳା ଖୁସି ବି ଟଙ୍କା ଦ୍ୱାରା ବିକ୍ରି ହୋଇଯାଉଛି। ସେଥିପାଇଁ ପ୍ରତ୍ୟେକ ସ୍ତ୍ରୀ ଆଜିକାଲି ସ୍ୱାମୀର କମ୍ ରୋଜଗାର ଦେଖିଲେ ଚିଡ଼ି ଉଠୁଛନ୍ତି। ସ୍ୱାମୀ ଘରକୁ ଉପୁରି ନ ଆଣିଲେ କି ସାଧୁତା ଦେଖାଇଲେ ସେଇଟା ତାଙ୍କର ଅପାରଗତା ବୋଲି ସେମାନେ ଭାବୁଛନ୍ତି। ଏଥିପାଇଁ ସ୍ୱାମୀକୁ କାଇବାଡ଼ ଦେଖାଇ ଅନ୍ୟର ଉଦାହରଣ ଦେବାକୁ ଭୁଲୁନାହାନ୍ତି। ଟିକେ ବି ସ୍ୱାମୀର ହୃଦୟକୁ ଚିହ୍ନିବାକୁ ସେମାନେ ପ୍ରସ୍ତୁତ ନୁହନ୍ତି। ଫଳତଃ ସ୍ୱାମୀସ୍ତ୍ରୀର ମଧୁର ସମ୍ପର୍କ ବ୍ୟାହତ ହେଉଛି। ଏପରିକି ବେଳେ ବେଳେ ଦୁଇଦୁଇଟା ଜୀବନ ନଷ୍ଟ ହୋଇ ଯାଉଛି ଏବଂ ପିଲାମାନଙ୍କର ଭବିଷ୍ୟତ ଅନ୍ଧାର ହୋଇଯାଉଛି। ଯେଉଁ ଟଙ୍କା ସବୁ ଅର୍ଥର କାରଣ, ତାହା ଯେ ପୁଣି ସବୁ ଅନର୍ଥର କାରଣ ହୋଇପାରେ ଏକଥା ବାସ୍ତବ କ୍ଷେତ୍ରରେ ଭୁଲି ହେଇ ଯାଉଛି। ସୁଖସ୍ୱପ୍ନର ମାପକାଠି ହିସାବରେ ପ୍ରତ୍ୟେକ ନାରୀ, ପୁରୁଷ ଟଙ୍କାକୁ ହିଁ ମାଧ୍ୟମ କରି ନେଇଛନ୍ତି। ମୁଁ ରୀତାକୁ ବୁଝାଇବାକୁ ଚେଷ୍ଟା କଲି, ଏଇ ଟଙ୍କା ପଇସା ଜୀବନର ସବୁକିଛି ନୁହେଁ ଲୋ ହୁଣ୍ଡୀ ! ତୁ କ'ଣ ଏତେ ବୋକୀ ହେଉଛୁ ଯେ ସୁଖକୁ ଟଙ୍କାର ମାପରେ ମାପୁଛୁ ? ସୁଖକୁ ସତରେ କ'ଣ ଟଙ୍କାରେ ମାପିହୁଏ ? ତୋର ଏଇ ପୁଅ ଝିଅ ଯୋଡ଼ାକ କ'ଣ ତୋର

ସବୁଠୁ ବଡ଼ ସମ୍ପତ୍ତି ନୁହଁନ୍ତି? ସଦ୍ ଚରିତ୍ର, ଶାନ୍ତଶିଷ୍ଟ, ସୁନ୍ଦର ସ୍ୱାମୀ କ'ଣ ତୋର ଯଥେଷ୍ଟ ନୁହେଁ? ତୁ କ'ଣ ଚାହୁଁଛୁ ସ୍ୱାମୀ ଖୁବ୍ ବେଶି ରୋଜଗାର କରୁଥିବ, ମଦ ପିଉଥିବ, ତୋତେ ବାଡ଼ଉଥିବ, ଅଥବା କେଉଁ ଅନ୍ୟଝିଅକୁ ନେଇ ବୁଲୁଥିବ? ଏହାହିଁ କ'ଣ ତୋ ପାଇଁ ସୁଖ? ଦୂର ପର୍ବତ ଭଳି ପରର ସୁଖକୁ ପ୍ରକୃତ ସୁଖ ବୋଲି ଆମେ କହୁ; ଅଥଚ ନିଜେ ଯାହା ପାଇଥାଉ ତାହା ଯଥେଷ୍ଟ ନୁହେଁ ବୋଲି ମୁଣ୍ଡ ବାଡ଼େଇ ହେଉ। କପାଳକୁ ନିନ୍ଦା କରୁ। ବର୍ତ୍ତମାନର ପ୍ରାପ୍ତି ତାର ସମସ୍ତ ଗୁରୁତ୍ୱ ହରାଇଦିଏ। ଅଥଚ ସେ ସମୟକୁ ହାତଛଡ଼ା କରିଦେଲାପରେ ଆମେ ଧନ୍ଦି ହେଉ, ସେ ଦିନଗୁଡ଼ିକ କେତେ ଭଲ ଥିଲା ବୋଲି। ସେତେବେଳକୁ ନେଡ଼ି ଗୁଡ଼ କହୁଣୀକୁ ବୋହି ଯାଇଥାଏ। ସମୟ ଏତେ ଆଗକୁ ଚାଲିଯାଇଥାଏ ଯେ ସାରାଜୀବନ ପସ୍ତେଇବାକୁ ପଡ଼େ।

ଖାଲି ରୀତା ନୁହେଁ କି ମୁଁ ନୁହେଁ। ଆମେ ସମସ୍ତେ ଏହିପରି। ଏଇ ନାରୀଜାତିଟା ହିଁ ସେମିତି। ଲୋଭ ଓ ପ୍ରାପ୍ତିର ଆଶା ଏତେବେଶି ଯେ ସାଂସାରିକ ନିରୋଳା ସୁଖ ସେଠି ହଜିଯାଏ। ଅଳ୍ପରେ ସନ୍ତୋଷ ମିଳେ ନାହିଁ। ସୁଖକୁ ଟଙ୍କା, ସୁନା, କୋଠାବାଡ଼ିରେ ମାପ କରି କରି ସୀମିତ ଜୀବନକୁ ସେମାନେ ଅଶାନ୍ତିରେ ସାରି ଦିଅନ୍ତି। ବୁଝିଲା ବେଳକୁ ଜୀବନ ଶେଷ ହୋଇଯାଇଥାଏ। ସେତେବେଳେ ଅନୁଶୋଚନା କଲେ ସେ ମୂଲ୍ୟବାନ ଜୀବନ ଆଉ ଫେରି ଆସେନା।

ଆହା; ଅଳ୍ପରେ ସନ୍ତୁଷ୍ଟ ହୋଇ ନିଜର ମୂଲ୍ୟ ନିଜେ ବୁଝି, ନିଜର ସୀମିତ ପରିସର, ସୀମିତ ଆୟବ୍ୟୟ ଭିତରେ ଚଳି ଯଦି ଟିକେ ଶାନ୍ତିରେ ଆମେ ଏହି ଅଳୀକ ସଂସାରରେ ବଞ୍ଚି ପାରନ୍ତେ, ତେବେ କେଡ଼େ ସୁନ୍ଦର ଭାବେ ଏ ଜୀବନ ଗଢ଼ିଯାନ୍ତା ସତେ! ଅର୍ଥଲାଳସାରୁ ମୁକୁଳି ପାରିଲେ ହିଁ ଜୀବନର ସୌନ୍ଦର୍ଯ୍ୟ ଆଖିରେ ପଡ଼େ। ଈଶ୍ୱର ତାଙ୍କ ସୃଷ୍ଟିରେ ସୌନ୍ଦର୍ଯ୍ୟର ତ ଅଭାବ ରଖି ନାହାନ୍ତି। ଥରେ ପ୍ରକୃତ ସୁଖ ପାଇଗଲେ ଆଉ କଣ ମାପକାଠିର ଦରକାର ପଡ଼େ?

ଅତି ଦୁଃଖର ବିଷୟ ଯେ ଏହି ସୁଖର ବାଲିହରିଣ ଦେଖାଇ ସ୍ତ୍ରୀମାନେହିଁ ସ୍ୱାମୀମାନଙ୍କୁ ଲାଞ୍ଚ ନେବା ଲାଗି ଉତ୍ସାହ ଦିଅନ୍ତି। ଯେତେ ସବୁ କଳାଟଙ୍କା ବା ଲାଞ୍ଚମିଛର କାରବାର ହେଉଛି ତା ପଛରେ ଅଛି ପ୍ରକୃତରେ ଘରଣୀଙ୍କର କରାମତି। ସେ ଯଦି ପ୍ରଥମରୁ ଏଭଳି ଅସଦ୍‌ବାଟରେ ଆସୁଥିବା ଧନ ପାଇଁ ପ୍ରତିବାଦ କରନ୍ତେ, ପାପଧନ ବୋଲି ମନେ କରନ୍ତେ ତାହାଲେ ହୁଏତ ଏଭଳି ଏକ ପ୍ରଚଳିତ ପ୍ରଥା ବା ସାମାଜିକ ସମସ୍ୟାକୁ ରୋକାଯାଇ ପାରନ୍ତା। କାକୁଡ଼ି ଚୋରକୁ ଉତ୍ସାହ ଦେଲେ ସେ ଯେମିତି ବଡ଼ ହେଲେ ଡକାୟତି କରିବାକୁ ସାହସ ପାଏ ସେମିତି ଟିକିଏ ଟିକିଏ ଲାଞ୍ଚ ଓ ମିଛ ବଢ଼ି ବଢ଼ି ସ୍କାମ୍‌ଲିଂ ପର୍ଯ୍ୟନ୍ତ ମଧ୍ୟ ପହଞ୍ଚି ଯାଇପାରେ। ଏ କ୍ଷେତ୍ରରେ ଗାଳ୍ପିକ ରବି ପଟ୍ଟନାୟକଙ୍କ ଗୋଟିଏ ଗଳ୍ପ ମନେପଡ଼େ। ଗପଟିର ନାଁ ରତ୍ନାକର। ନାୟକ ଜଣେ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର, ଦୀର୍ଘ ପଚିଶ ବର୍ଷ ଚାକିରି ଭିତରେ ସେ ଦୁଇଟି କୋଠା, ବ୍ୟାଙ୍କ ବାଲାନ୍ସ, କଳାଧନ ସଞ୍ଚୟ କରି ପାରିଛନ୍ତି। ଡୋନେସନ୍ ଦେଇ (ମାତ୍ର ଚାଳିଶ ହଜାର ବଡ଼ପୁଅ, ସାନପୁଅ ମାତ୍ର ପଚାଶ ହଜାର) ଜଣେ ଇଞ୍ଜିନିୟରିଂ ବାଙ୍ଗାଲୋରରେ ଓ ଜଣେ ଡାକ୍ତରୀ କର୍ଣ୍ଣାଟକରେ ପଢୁଛି। ଝିଅ ପାଇଁ ଯଥେଷ୍ଟ ଅଛି। ଦରକାର ପଡ଼ିଲେ ଆଇ.ଏ.ଏସ୍. କି ଆଇ.ପି.ଏସ୍. ଜ୍ୱାଇଁ ମିଳିଲେ ତା ଲାଗି ଘରଟିଏ ତୋଳିଦେବେ। ଏସବୁ ବୁଦ୍ଧି ସେ ନିଅନ୍ତି ସ୍ତ୍ରୀଙ୍କ ଠାରୁ। ସ୍ତ୍ରୀଙ୍କର ସୁପରାମର୍ଶରେ ସେ ଏତେ ବଡ଼ ହୋଇ ପାରିଛନ୍ତି। ଶଳା ନାଁରେ

ଦୁଇଖଣ୍ଡ ବସ୍ କଟକ ଭୁବନେଶ୍ୱର ରୁଟ୍‌ରେ ଚାଲିଛି ଭଡ଼ାଡି ଭଡ଼ାଡି। [illegible]
ଘର ରେଡ୍ ହେଇ ଯାଇଛି। ଆଗରୁ ସେ ସୁରାକ୍ ପାଇଥିଲେ ରାତାରାତି ପାଷେଇଦେଇ ଥା'ନ୍ତେ। ଟଙ୍କାସହ ସେ ଧରା ପଡ଼ିଯିବା ଆଗରୁ ସ୍ତ୍ରୀ ପରାମର୍ଶ ଦେଲେ, "ଦେଖ ତମେ କିଛିଦିନ ଗାଁକୁ ପଳାଅ।" ମହାଶୟ ସ୍ତ୍ରୀଭକ୍ତ ସ୍ୱାମୀଜଣକ ବି ସ୍ତ୍ରୀଙ୍କ ଅମୂଲ୍ୟ ପରାମର୍ଶରେ ସନ୍ଧ୍ୟା ସାତଟାବେଳେ ଅନ୍ଧାରିଆ ଅନ୍ଧାରିଆ ଘର ଛାଡ଼ି ଗାଁକୁ ପଳାଇଲେ। ଗାଁରେ ବୋଉ ଏତେବର୍ଷ ପରେ ପୁଅକୁ ଦେଖି ଖୁସି। ସେହି କହିଲେ ଏସବୁ ପାଇଁ ଜଣେ ଦାୟୀ। ସେ ତୋ ସ୍ତ୍ରୀ। "ତାଆରି ଯୋଗୁଁ ତ ଏତେ କଥା। ପଇସା ପାଇଁ ତୋ ମୁହଁ ଉପରକୁ ହୋଇଗଲା।"

ନାୟକ ହୃଦ୍‌ଗମ କରିଛନ୍ତି, ସତରେ ସ୍ତ୍ରୀ ଯଦି ଏ ଦିଗରେ ତାଙ୍କୁ ପ୍ରବର୍ତ୍ତାଇ ନଥାନ୍ତେ ତାହାଲେ ସେ କଣ ଆଜି ଏ ବାଟରେ ଏତେ ରାସ୍ତା ଆସି ଯାଇ ଥାନ୍ତେ? ଯଦି ଜୀଜାବାଈ ଭଳି ବୋଉଟିଏ ପାଇଥାନ୍ତେ, ଯଦି ସେ ମୀରାବାଈ ପରି ସ୍ତ୍ରୀଟିଏ ପାଇଥାନ୍ତେ ତେବେ କଣ ଏତେ ତଳକୁ ଖସିଯାଇ ପାରିଥାନ୍ତେ? ହୁଏତ ଭୁଲ ବି ତାଙ୍କର, କିନ୍ତୁ ପ୍ରଶ୍ରୟ ପାଇ ହିଁ ସେ ଆହୁରି ଭୁଲ୍ ପରେ ଭୁଲ କରି ଚାଲିଛନ୍ତି।

ତେଣୁ ଲେଖକ କହିଛନ୍ତି, "ଭାରତବର୍ଷରେ ବୋଧହୁଏ ଆଉ ଏମିତି ନାରୀ ଜନ୍ମ ହେଉ ନାହାନ୍ତି। ଆଉ ସେଥି ପାଇଁ ବୋଧେ ତାଙ୍କ ପରି ସବୁ ଭାରତୀୟ ସନ୍ତାନ ଆଜି ଏତେ ବିପଥଗାମୀ, ଉଦ୍‌ଭ୍ରାନ୍ତ, ଲୋଭୀ, କପଟୀ, ଲମ୍ପଟ ଓ ଶଠ। ଯୋଉ ଦେଶରେ କୁନ୍ତୀ ପରି ମା ନାହାନ୍ତି, ଦ୍ରୌପଦୀ ପରି ସ୍ତ୍ରୀ ନାହାନ୍ତି, ସେ ଦେଶରେ ଯୁଧିଷ୍ଠିର ଅର୍ଜୁନ ଜନ୍ମ ନେବେ କେମିତି ଯେ?"

ଏ ପ୍ରଶ୍ନ ମୁଁ ବି ସମସ୍ତ ନାରୀଜାତିକୁ ପଚାରୁଛି। ସତ୍ୟବାନଙ୍କ ଭଳି ସ୍ୱାମୀ ପାଇବାକୁ ହେଲେ ନିଜକୁ ସାବିତ୍ରୀ କରିବାକୁ ପଡିବ। ରାମଚନ୍ଦ୍ରଙ୍କ ଭଳି ବର କାମନା କଲାବେଳେ ନିଜକୁ ପଚାରିବାକୁ ପଡ଼ିବ ମୁଁ ନିଜେ ସୀତା ତ? ଏ ଭଳି ପୁତ୍ର ପାଇବାକୁ ହେଲେ ସେଭଳି ମା' ହେବାକୁ ପଡ଼ିବ।

ବାସ୍ତବିକ ସ୍ତ୍ରୀ ହିଁ ହେଲା ଘରର ଚାବିକାଠି। ସେ ଜୀବନ ନଉକାକୁ ଯେମିତି ମୋଡ଼ିବ ମଙ୍ଗ ସେମିତି ଆଗକୁ ମାଡ଼ିଯିବ। ସେମାନେ ସୃଷ୍ଟିକାରିଣୀ ଯେମିତି, ସେମିତି ଧ୍ୱଂସ କାରିଣୀ। ଟିକିଏ ଯଦି ଭାବନ୍ତେ ସେମାନେ ଆପଣାର ବ୍ୟକ୍ତିଗତ ସ୍ୱାର୍ଥ, ସୁଖ ପାଇଁ ସମାଜକୁହିଁ ବଳି ପକାଉଛନ୍ତି। ଏଥିପାଇଁ ଦେଶଦଶର କ୍ଷତି ଯାହା ହେଉ ଯାଉଛି ତାହାର ପୂରଣ ନାହିଁ। ଟିକିଏ ଯଦି ସୁଖ, ସ୍ୱାଚ୍ଛନ୍ଦ, ଲାଳମିଛକୁ ପରିତ୍ୟାଗ କରିହୁଅନ୍ତା ତେବେ ଏ ସୃଷ୍ଟି, ଏ ଜାତି, ଏ ପୃଥିବୀ କେତେ ସୁନ୍ଦର, ସ୍ୱାଭାବିକ, ସ୍ନିଗ୍ଧ ନହୋଇଯାନ୍ତା ସତରେ!



# ଯୌତୁକର ବଳିଦ୍ୱାରରେ ନାରୀ

ନମିତାର ବି ସବୁଝିଅଭଳି ସ୍ୱପ୍ନ ଥିଲା, ଘର ସଂସାର, ସ୍ୱାମୀ, ଶାଶୁଘର, ପିଲାଛୁଆ ଏମିତି କେତେ କଣ। ନିଜେ ସେ ସାଙ୍ଗମାନଙ୍କୁ କାର୍ଡ଼ ବାଣ୍ଟିଥିଲା। କାର୍ଡ଼ ବାଣ୍ଟି ନ ଥିଲାଯେ ସ୍ୱପ୍ନ ଆଉ ଖୁସି ହିଁ ବୁଣି ଦେଇଥିଲା। କେତେ ଜାକଜମକରେ ବାହାଘର ହେଇ ନ ଥିଲା ତାର। ନିଜର ସାମର୍ଥ୍ୟ ଅନୁଯାୟୀ ବାପା ତାର ଯାହା ପାରିଥିଲେ ଦେଇଥିଲେ। ଅଥଚ ଅଷ୍ଟମଙ୍ଗଳା ସରିନି ଜଣ ହେଲାନା ତୁରନ୍ତ କଲର ଟି.ଭି.ଟେ ପଠାଅ। ବାହାଘରର ଋଣ ସହ ଏତେ ଶୀଘ୍ର ଏ ଦାବୀ ବାପା ତାର ପୂରଣ କରି ପାରିଲେନି। ପରିଣାମ ଭୋଗିବାକୁ ପଡ଼ିଲା ନମିତାକୁ। ପୋଡ଼ି ହେଇ ମରିଯାଇଥିବାର ଖବର ଆସି ପହଁଞ୍ଚିଲା। ଯୌତୁକଲାଗି ସେମାନେ ନମିତା ଭଳି ସ୍ୱପ୍ନଭରା ଝିଅକୁ ପୋଡ଼ି ପକାଇଲେ। ମଲାବେଳେ ଜମାନବନ୍ଦୀ ବି ନିଆ ଯାଇ ପାରିଲାନି।

ଉଷାର ବି ସେହି ଅବସ୍ଥା। ପତି ଘରେ ଅକଥନୀୟ ଯନ୍ତ୍ରଣା। ବାରମ୍ବାର ଏଇଟା ଆଣ ସେଇଟା ଆଣ ଚରାଦ। ଶେଷରେ ବାପଘରକୁ ପଳାଇ ଆସିଲା। ଶୁଣାଗଲା ସ୍ୱାମୀ ତାର ଆଉ ଗୋଟିଏ ବାହାହେବେ। ଅଥଚ ଗର୍ଭବତୀ ଉଷା ଯିବ କୁଆଡ଼େ? ଲାଞ୍ଛନା ହେଉକି ନିର୍ଯ୍ୟାତନା ହେଉ ଯେତେହେଲେ ସ୍ୱାମୀଘର ତ! ତାଛଡ଼ା, ବିବାହିତା ଝିଅକୁ ସାରାଜୀବନ ପୋଷିବାକୁ ବା ଏମିତି ଭାବରେ ଜୀବନ ନଷ୍ଟ କରି ଦେବାକୁ କେତେ ଜଣ ବାପାମା, ଭାଇ ଭାଉଜ ଚାହାଁନ୍ତି? ବାପା ଛାଡ଼ି ଦେଇ ଆସିଲେ। ଦୁଇଦିନ ପରେ ଶୁଣାଗଲା ଉଷା ମରିଯାଇଛି ଦେହ ଖରାପ ଯୋଗୁଁ। ସୁସ୍ଥ ଉଷାର ଦି'ଦିନ ଭିତରେ ଏମିତି କଣ ହେଲା ଯେ ମରିଗଲା? ପୁଣି ବାପ, ଭାଇ ପହଁଞ୍ଚିଲା ବେଳକୁ ଶବ ଜଳାସରିଲାଣି। ହାୟ! ଯୌତୁକ ଲାଗି ପିଲା ପେଟରେ ଥିଲେ ବି ସେମାନେ ତାକୁ ଦୟା କଲେନାହିଁ। ରାସ୍ତାରୁ କଣ୍ଟା ହଟାଇଦେଲେ। ବାପାଭାଇ ପୋଲିସରେ ଦେଲେ। ସ୍ୱାମୀ ବନ୍ଧାହେଲେ। ପୁଣି କିଛି ଦିନ ପରେ ଜାମିନ୍‌ରେ ଖଲାସ ହେଲେ। କେସ୍ ଚାଲିଲା। ପ୍ରମାଣ ମିଳିଲାନି। ସମସ୍ତେ ବେଶ୍ ଦୋଷମୁକ୍ତ ହେଇଗଲେ। ଉଷାର ସେ ନାରୀହନ୍ତା ସ୍ୱାମୀ ଉଷାଠାରୁ ସୁନ୍ଦରୀ, ଶିକ୍ଷିତା ଝିଅକୁ ପ୍ରଚୁର ଯାନିଯୌତୁକ ନେଇ ବାହାହେଇଗଲା।

ମଞ୍ଜୁ ବି କଣ ଜାଣିଥିଲା ଯୌତୁକର ଯଜ୍ଞରେ ସେ ଆହୁତି ହେବ ବୋଲି? ମଫସଲୀ ଝିଅ। ଭାଇର ପିଅନ ଚାକିରି। ଏତେ ଆଇନ କାନୁନ କଥା ଜଣା ନାହିଁ। ବାପା ମା ମରି ଯାଇଛନ୍ତି ପିଲାଦିନୁ। ଦୁଇଟା ପିଲାର ମା ହେଲା ପରେ ସ୍ୱାମୀ ତା'ର ଯୌତୁକ କିଛି ପାଇ ନାହାନ୍ତି ବୋଲି ସ୍ମରଣ କଲେ। ଚାଲିଲା ଅତ୍ୟାଚାର। ଭାଇ ବିଚରା କଣ କରିବ? ତାର ବି ନିଜ ସଂସାର ଅଛି। ସ୍ୱାମୀ ତା'ପରେ ତାରି ଆଗରେ ଆଉ ଗୋଟିଏ ବାହାହେଇ ନେଇ ଆସିଲେ। ତାକୁ ଘରୁ ବାହାର କରିଦେଲେ। ସମାଜରେ ଗୋଡ଼ ଭାଙ୍ଗି ଛିଡ଼ା ହେବାଠାରୁ ଆରମ୍ଭ କରି କୋର୍ଟ କଚେରୀ ପର୍ଯ୍ୟନ୍ତ ଯାଇ ନିଜର ପତ୍ନୀତ୍ୱ ଜାହିର କରିବା ପାଇଁ ଲଢ଼େଇ କରିବା ସାଧାରଣ ମଫସଲୀ ମଞ୍ଜୁ କି ଗରିବ ଭାଇ ପକ୍ଷେ କେତେ ଯେ କଷ୍ଟସାଧ୍ୟ ତାହା ସେମାନେ ହିଁ ଜାଣନ୍ତି। ଦୁଇଦୁଇଟା ପିଲାକୁ ଧରି କୁଆଡ଼େ ଯିବ ମଞ୍ଜୁ?

ଏହିଭଳି ଅନେକ ଉଦାହରଣ, ତାର ଶେଷ ନାହିଁ। ଯୌତୁକର ଯଜ୍ଞରେ ପ୍ରତିଦିନ ଭାରତୀୟ ନାରୀ ବଳି ପଡ଼ି ଚାଲିଛି। ସମ୍ବାଦପତ୍ରରେ ବଡ଼ବଡ଼ ଅକ୍ଷରରେ ଛପା ହେଉଛି ଯୌତୁକ ଲାଗି ନବବଧୂକୁ ପୋଡ଼ି ଦିଆଗଲା, ତଣ୍ଟି ଚିପି ହତ୍ୟା କରାଗଲା, ନିର୍ଯ୍ୟାତନା ଦିଆଗଲା, ଇତ୍ୟାଦି ଇତ୍ୟାଦି। ପୁଣି ଏହାର ସଂଖ୍ୟା ଏତେ ବଢ଼ିଗଲାଣି ଯେ ଲୋକେ ପ୍ରତିକ୍ରିୟାଶୂନ୍ୟ ହେଇଗଲେଣି। କାହାପାଟିରୁ ଆହାପଦେ ବି ବାହାରୁ ନାହିଁ। ଯେଉଁ ନାରୀକୁ ଦିନେ ପୂଜା କରାଯାଉଥିଲା, ମା ଭଉଣୀ କହି ଉଚ୍ଚାସନ ଦିଆଯାଉଥିଲା, ପତ୍ନୀତ୍ୱର ମର୍ଯ୍ୟାଦା ଦିଆଯାଉଥିଲା, ଅର୍ଦ୍ଧାଙ୍ଗିନୀ, ଗୃହଲକ୍ଷ୍ମୀର ସମ୍ମାନ ଦିଆଯାଉଥିଲା ତାକୁ ଯୌତୁକ ଲାଗି ପୋଡ଼ି ଦେଉଛନ୍ତି, ତଣ୍ଟିଚିପି ଝୁଲାଇ ଦେଉଛନ୍ତି, ଅକଥନୀୟ ଅତ୍ୟାଚାର କରୁଛନ୍ତି, ପିଟିପିଟି ମାରି ଦେଉଛନ୍ତି? ଏହା ପୁଣି ଭାରତଭଳି ଏକ ଆଦର୍ଶବାଦୀ ଦେଶରେ ସମ୍ଭବ ହେଉଛି? ବିଶ୍ୱାସ କରି ହେଉନି। ଗୋଟାଏ ମଟର ସାଇକେଲ, ଫ୍ରିଜ୍, ସ୍କୁଟର, ସାଇକେଲ, ନଗଦ ଟଙ୍କା କି ସୁନା ମୁଡି ଅଥବା ଆଲମୀରାଟେ ଲାଗି ବିବାହିତା ଝିଅଟି ମରଣ ମୁହଁକୁ ଠେଲି ହେଇଯାଉଛି। ପୁଣି ଏଥିରେ ଶାଶୁ, ନଣନ୍ଦ, ଯାଆ ପ୍ରଭୃତି ସାହାଯ୍ୟ କରୁଛନ୍ତି! ନାରୀ ହେଇ ନାରୀର ଶତ୍ରୁ ହେଉଛି, ମୃତ୍ୟୁର କାରଣ ପାଲଟୁଛି। କେମିତି ବିଶ୍ୱାସ ହେବ ଯେ ଏ ଦେଶରେ ରାମଚନ୍ଦ୍ର, ସତ୍ୟବାନ ଭଳି ସ୍ୱାମୀ ଜନ୍ମ ହେଇଥିଲେ? ଏକପତ୍ନୀବ୍ରତ କରି ଜୀବନ କଟାଇ ଦେଇଥିଲେ। ବେଳେବେଳେ ପ୍ରତ୍ୟୟ ହୁଏନି ଯେ ଏମିତି ନୃଶଂସ ଭାବରେ ନାରୀହତ୍ୟା କରାଯାଉଛି ବୋଲି। ଅଥଚ ଏସବୁ ଯେ କଳ୍ପନା ନୁହେଁ ସତ୍ୟ ଏକଥା ଗ୍ରହଣ କରି ନେବାରେ କଷ୍ଟ ହୁଏ।

## ଯୌତୁକର ପରମ୍ପରା:-

ନାରୀ ଓ ପୁରୁଷ ଭିତରେ ବିବାହ ଏକ ପବିତ୍ର ବନ୍ଧନ; ଯାହାକୁ କି କେହି କେହି ବୈଦିକ ବିଧି ବୋଲି କହିଥାନ୍ତି। କେତେ ଗୁଡ଼ିଏ ବୈଦିକ ଶ୍ଳୋକକୁ ବିବାହର ମନ୍ତ୍ର ଭାବରେ ଗ୍ରହଣ କରାଯାଉଥିଲା। ମୁଖ୍ୟତଃ ଏଇଥିପାଇଁ ଋଗ୍‌ବେଦକୁ ହିଁ ଗ୍ରହଣ କରାଯାଇ ବିବାହ କାର୍ଯ୍ୟ ବଢ଼ାଇ ଦିଆଯାଉଥିଲା। ଝିଅକୁ ବିଦାୟ କଲାବେଳେ ନିଜର ସାମର୍ଥ୍ୟ ଅନୁସାରେ ପିତାମାତା କିଛି ଶ୍ରଦ୍ଧାର ଉପଢୌକନ ଦେଉଥିଲେ। ଏହି ଉପଢୌକନକୁ ଦେଇ ସେମାନେ ଝିଅର ସୁଖୀ ଏବଂ ସ୍ଥାୟୀ ବୈବାହିକ ଜୀବନର ଶୁଭ ମନାସୁଥିଲେ। ତା ସହିତ ଶାଶୁଘରେ ସ୍ୱାମୀ, ଶାଶୁ-ଶ୍ୱଶୁର, ଯାଆ, ନଣନ୍ଦ ପ୍ରଭୃତି ସମସ୍ତଙ୍କ ମନନେଇ ଚଳିବାକୁ ଉପଦେଶ ଦେଉଥିଲେ।

ମୁଖ୍ୟତଃ ଏହାହିଁ ଥିଲା ଯୌତୁକର ପୃଷ୍ଠଭୂମି। ଝିଅ ସବୁଦିନ ପାଇଁ ଘରୁ ଚାଲି ଯାଉଛି। ଏ ଘରେ ତାର ଆଉ କୌଣସି ଅଧିକାର ରହିବ ନାହିଁ। ଝିଅର ନୂଆ ସଂସାର ପାଇଁ ତେଣୁ ବାପାମା କିଛି ଶ୍ରଦ୍ଧାର ଉପହାର ଝିଅକୁ ଦେଉଥିଲେ। ତା ପଛରେ ଥିଲା ସେମାନଙ୍କର ପ୍ରଗାଢ଼ ସ୍ନେହ, ଭଲପାଇବା ଓ ଆନ୍ତରିକ ଆଶୀର୍ବାଦ। ଆଜି କିନ୍ତୁ ଯୌତୁକର ସ୍ୱରୂପ ବଦଳି ଯାଇଛି। ଏହା ଏକ ''ଦାବୀ''ରେ ପରିଣତ ହେଇଛି। ବିବାହ କହିଲେ ଏବେ ନଗଦ ଟଙ୍କା, ଗାଡ଼ି, ସ୍କୁଟର, ଫ୍ରିଜ୍, ଟେଲିଭିଜନ, ଟେପ୍‌ରେକର୍ଡର, ସୁନା, ରେଡ଼ିଓ, ଘଣ୍ଟା, ଫର୍ଣ୍ଣିଚର ପ୍ରଭୃତିକୁ ବୁଝାଉଛି। ଯୌତୁକ ଆଉ ପ୍ରୀତି-ଉପହାର ହେଇ ରହିନାହିଁ। ଏହା ବିବାହର ମିଡ଼ିଆ ପାଲଟିଛି। କନ୍ୟାପିତାମାତାମାନେ ଆଜି ଯୌତୁକ ଦେଇ ବରଙ୍କୁ କିଣୁଛନ୍ତି। ହୁଏତ ଏହି ଉପଢୌକନ ଦେବାର ରୀତିକୁ ଯେଉଁମାନେ ଦିନେ ସୃଷ୍ଟିକରିଥିଲେ, ସେମାନେ କଳ୍ପନା ବି କରି ନଥିଲେ ଯେ ଏହି ପରମ୍ପରାଟି ଦିନେ ଏତେ କୁତ୍ସିତ ଓ ଭୟଙ୍କର ଆକାର ଧାରଣ କରିବ, ଯାହାପାଇଁ କେତେ ନିରୀହା ଝିଅ ବଳି ପଡ଼ିବେ, କେତେ କନ୍ୟାପିତା ସର୍ବସ୍ୱାନ୍ତ ହୋଇଯିବେ, ଅସମୟରେ ଝିଅମାନଙ୍କୁ ହରାଇବେ।

ସେତେବେଳେ ଯୌତୁକ ଏକ ପ୍ରୀତିପୂର୍ଣ୍ଣ ପରମ୍ପରା ଥିଲା । ପ୍ରାଚୀନ ପୃଷ୍ଠା ଖୋଲିଲେ ଜଣାଯାଏ ଯେ ସେ ସମୟରେ ଆଠ ପ୍ରକାରର ବିବାହ ପ୍ରଚଳିତ ଥିଲା । ସେ ସବୁ ହେଲା ବ୍ରହ୍ମ, ପ୍ରଜାପତେୟ, ଆର୍ଯ୍ୟ, ଦୈବ, ଗାନ୍ଧର୍ବ, ଅସୁର, ରାକ୍ଷସ ଓ ପିଶାଚ । ପ୍ରଥମ ଚାରି ପ୍ରକାରର ବିବାହକୁ କନ୍ୟାଦାନ କୁହାଯାଉଥିଲା । କନ୍ୟା କୁ ଅଳଙ୍କାର, ଶାଢ଼ିରେ ସୁସଜ୍ଜିତ କରି ଦାନ କରାଯାଉଥିଲା । (ଆଜିକାଲି କିନ୍ତୁ କନ୍ୟାଦାନ ଉପରେ ଗୁରୁତ୍ୱ ଦିଆ ନ ଯାଇ କନ୍ୟାପିତା କଣ ଦାନ କରିବେ, ତାହାହିଁ ଦେଖା ଯାଉଛି ।)

ଏହି ଆଠ ପ୍ରକାର ବିବାହ ଭିତରେ ବ୍ରହ୍ମ ବିବାହକୁ ଶ୍ରେଷ୍ଠ ବିବାହ ହିସାବରେ ଗ୍ରହଣ କରାଯାଇଥିଲା । ଏ ବିବାହରେ ବରଘର ଲୋକେ କନ୍ୟା ଛଡା ଆଉ କିଛି ବି ଗ୍ରହଣ କରୁନଥିଲେ । କିନ୍ତୁ ଆର୍ଯ୍ୟ ବିବାହରେ ଗାଈ, ବଳଦ, ପ୍ରଭୃତି ଉପହାରମାନ କନ୍ୟାପିତା ଦେଉଥିଲେ । ଅନ୍ୟ ବିବାହ ଗୁଡ଼ିକରେ କଣ ଦିଆଯିବ ସେମିତି କିଛି ଧରାବନ୍ଧା ନୀତିନିୟମ ନଥିଲା । ତେବେ ଯୌତୁକରେ ଘୋଡ଼ା, ହାତୀଠାରୁ ଜମିଦାନ ପର୍ଯ୍ୟନ୍ତ ରୀତି ପ୍ରଚଳିତ ଥିଲା । ସାରଳାଙ୍କ ସମୟରେ ବି ଯେ ଯୌତୁକ ପ୍ରଚଳିତ ଥିଲା ଏକଥା ମହାଭାରତରୁ ସ୍ପଷ୍ଟ ହୁଏ । ମଧ୍ୟଯୁଗରେ କନ୍ୟାକୁ ସୁନା ସହିତ ତୁଳନା କରାଯାଉଥିଲା । ଏ ସମୟରେ କନ୍ୟା ପାଇଁ ବରଘର ବା ବରକୁ କିଛି ମୂଲ୍ୟ ଦେବାକୁ ପଡୁଥିଲା । ତେଣୁ କନ୍ୟାପିତାମାନେ ବରର ସାମର୍ଥ୍ୟ ଦେଖି ନିଜ ଝିଅକୁ ବିବାହ ଦେବାପାଇଁ ରାଜି ହେଉଥିଲେ । ଖ୍ରୀ.ପୂ.ଚତୁର୍ଥ ଶତାବ୍ଦୀରେ ଜଣାପଡ଼େ ପୁରୁଷମାନେ ସ୍ତ୍ରୀମାନଙ୍କୁ କିଣୁଥିଲେ । ଏହି ପ୍ରଥା କିନ୍ତୁ ସେତେବେଳେ ୟୁରୋପରେ ବିପରୀତ ଭାବରେ ପ୍ରଚଳିତ ଥିଲା । ଯୌତୁକ ଝିଅ ଘରହିଁ ଦେଉଥିଲେ । ଏଥେନ୍ସର ବୈବାହିକ ଅନୁଷ୍ଠାନଗୁଡ଼ିକରେ ଯୌତୁକ ନ ହେଲେ ଚଳୁ ନ ଥିଲା । ଏଥେନ୍ସରେ ହିଁ ପ୍ରଥମେ "ଛାଡ଼ପତ୍ର" ଲାଗୁ ହୋଇଥିଲା ବୋଲି ଜଣାପଡ଼େ । ମହାକବି ହୋମର କହନ୍ତି, ଝିଅମାନେ ଆୟର ମାଧ୍ୟମ ଥିଲେ । ବିବାହ ପାଇଁ କନ୍ୟାପିତାଙ୍କୁ ଗାଈ, ବଳଦ, ଜମି ଭଳି କିଛି ଜିନିଷ ଦେବାକୁ ପଡୁଥିଲା ।

ଏସବୁରୁ ଜଣାପଡ଼େ ଶାଶୁଘରକୁ ଝିଅ ଗଲାବେଳେ ତାର ଥଇଥାନ, ରକ୍ଷଣାବେକ୍ଷଣ ନିମନ୍ତେ ବାପାମା' କିଛି ଯୌତୁକ ଦେଉଥିଲେ । ଯେଉଁଠାରେ କନ୍ୟାପିତାମାନେ ବରଠାରୁ ଯୌତୁକ ଗ୍ରହଣ କରୁଥିଲେ ସେଠାରେ ଏକମାତ୍ର ଉଦ୍ଦେଶ୍ୟ ଥିଲା ତାଙ୍କର ଆର୍ଥିକ ଅବସ୍ଥା ପରୀକ୍ଷା କରିବା, ସାମର୍ଥ୍ୟ ନଥିଲେ ସେମାନେ ଝିଅକୁ ଦେଉନଥିଲେ । କାହିଁକିନା ଝିଅ ସେଠାରେ କଷ୍ଟ, ଦୁଃଖ ପାଇବ, ଆର୍ଥିକ ଅନାଟନରେ ପଡ଼ିବ । ଝିଅ ଭଲ ପିନ୍ଧୁ, ଭଲରେ ଗଣ୍ଡେ ଖାଉ, ସୁଖରେ ରହୁ— ଏକଥା କେଉଁ ବାପାମା' ନ ଚାହାନ୍ତି ?

ଯୌତୁକ ଦାବୀ କରିବାର ନୀତିଟି ପ୍ରଥମେ ୟୁରୋପରେ ଯେମିତି ପ୍ରଚଳିତ ଥିଲା ସେମିତି ଇଂଲଣ୍ଡରେ ବିବାହ ଥିଲା କିଣାବିକାର କାରବାର । ଦୁର୍ଭାଗ୍ୟ ବଶତଃ ଏହାକୁ ଆଜି ଆମ ଦେଶର ଲୋକେ ନିଜର କରିଛନ୍ତି । ଏହାର ଉତ୍ସ କିନ୍ତୁ ଭାରତ ବର୍ଷ ନୁହେଁ । ଅଥର୍ବ ବେଦରେ ରହିଛି ବିବାହ ବେଳେ କନ୍ୟାପିତାମାନେ ନିଜେ ଯୌତୁକ ନିଜ ଇଚ୍ଛାରେ ଦେଉଥିଲେ । ବରପିତାମାନେ ଭିକାରୀ ଭଳି ମାଗୁ ନ ଥିଲେ । ଦ୍ରୌପଦୀ, ସୁଭଦ୍ରା, ଉତ୍ତରା ସେମାନଙ୍କ ବିବାହ ବେଳେ ଅନେକ ଗୁଡ଼ିଏ ଘୋଡ଼ା,ହାତୀ ସମେତ ସ୍ୱର୍ଣ୍ଣ ଅଳଙ୍କାର ବହୁପରିମାଣରେ ବାପଘରୁ ଆଣିଥିଲେ । "ରଘୁବଂଶ"ରେ ମହାକବି କାଳିଦାସ ଉଲ୍ଲେଖ କରିଛନ୍ତି ରାଜା ବିଦର୍ଭ ତାଙ୍କ ଭଉଣୀ ଇନ୍ଦୁମତୀଙ୍କୁ ବିବାହ ବେଳେ ମୂଲ୍ୟବାନ ସୁନ୍ଦର ଉପହାର ପଠାଇଥିଲେ । ସେହିପରି ଦେବକୀଙ୍କୁ ଉପହାର ମିଳିବା ସଂପର୍କରେ "ମହାଭାରତ"ରେ ଉଲ୍ଲେଖ କରାଯାଇଛି । ତେବେ ଏ ସବୁକୁ ଆଜିର

ଭଳି ଦାବୀପୂର୍ଣ୍ଣ ଯୌତୁକ କୁହାଯିବ ନାହିଁ। ଏହା ବାପାର ଝିଅ ପ୍ରତି, ଭାଇର ଭଉଣୀ ପ୍ରତି ସାମର୍ଥ୍ୟାନୁସାରେ ଶ୍ରଦ୍ଧା ଉପହାର। ପୁନଶ୍ଚ ଆକବରଙ୍କ ପୁଅ ଜାହାଙ୍ଗୀର ବିବାହ କଲାବେଳେ ବହୁ ମୂଲ୍ୟବାନ ଯୌତୁକସବୁ ଆଣିଥିଲେ ବୋଲି ଜଣାପଡ଼େ। ଜାହାଙ୍ଗୀର ଯୌତୁକ କଣ ଆଣୁଛନ୍ତି ବୋଲି ଜାଣିବା ପାଇଁ ସେତେବେଳେ ହଜାର ହଜାର ଲୋକ ପଥପାର୍ଶ୍ୱରେ ଉତ୍କଣ୍ଠିତ ଭାବରେ ଦଣ୍ଡାୟମାନ ହୋଇଥିଲେ। ଶହେ ହାତୀ, ଅସଂଖ୍ୟ ଘୋଡ଼ା, ମହଣ ମହଣ ଓଜନର ସୁନା ସହିତ ଅନେକ ଦାସଦାସୀଙ୍କୁ ଜାହାଙ୍ଗୀର ଯୌତୁକ ହିସାବରେ ପାଇଥିଲେ।

ଏସବୁ କିନ୍ତୁ ସମ୍ରାଟ ଆକବରଙ୍କୁ ବହୁତ ପ୍ରଭାବିତ କରିଥିଲା। ଏମିତି ହେଲେ ଯେ କୌଣସି କନ୍ୟାପିତା ଦରିଦ୍ର ହୋଇଯିବେ। ମଧ୍ୟଯୁଗରେ ଆକବର ହିଁ ଏକମାତ୍ର ସମ୍ରାଟ ଯିଏ କି ସର୍ବପ୍ରଥମେ ଯୌତୁକ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ। ସେ ଯୌତୁକ ନିୟନ୍ତ୍ରଣ ପାଇଁ ଚେଷ୍ଟା କରିଥିଲେ ବୋଲି ଆବ୍-ଉଲ୍-ଫାଜଲ୍‌ଙ୍କ "ଆଇନ୍-ଇ-ଆକବରୀ"ରୁ ଜଣାପଡ଼େ। ତେବେ ସେ ସମୟରେ ଛାଡ଼ପତ୍ର ବା ତଲାକ୍ ପ୍ରଥାଟିକୁ ଗ୍ରହଣ କରାଯାଉଥିଲା। ସବୁଠୁ ଦୁଃଖର ବିଷୟ ହେଲା ଏ ପ୍ରଥା ଆଜି ଏକ ବଟବୃକ୍ଷ ଭଳି ତାର ଶାଖାପ୍ରଶାଖା ମେଲାଇ ବଂଶବିସ୍ତାର କରି ଚାଲିଛି। ଦିନେ ଏହା ପରମ୍ପରା ଥିଲା, ଆଜି ଅପରିହାର୍ଯ୍ୟ ହେଇ ପଡ଼ିଛି। ମହାମାରୀ ଭଳି ମଣିଷର ମନୁଷ୍ୟତାକୁ ଗ୍ରାସ କରି ଚାଲିଛି। ସବୁଠୁ ଦୁଃଖର ବିଷୟ ହେଲା ଶହଶହ ବର୍ଷଧରି ଏହି ପ୍ରଥାଟି ଏ ଯାଏଁ ବଞ୍ଚି ରହିଛି। ଆନ୍ଦୋଳନ, ଯୌତୁକ ବିରୋଧୀ ଆଇନ୍ ପ୍ରଣୟନ ସତ୍ତ୍ୱେ ଏହା ବୃଦ୍ଧିପାଇଛି ପଛେ କମିନାହିଁ। ଝିଅକୁ ବିବାହଦେବାକୁ ବାପାମା ଭୟ କରୁଛନ୍ତି। ବିବାହ ବେଦୀରେ ବସି ଝିଅଟି ବି ତାର ଅନିଶ୍ଚିତ ଭବିଷ୍ୟତ କଥା ଭାବି ଆତଙ୍କିତ ହେଇପଡୁଛି।

## ଏହାର ସମାଧାନ କେଉଁଠି ?

ଏ ପ୍ରଶ୍ନ ଆମ ସଭିଙ୍କର ପ୍ରଶ୍ନ, ପୁଣି ଆମ୍ଭମାନଙ୍କୁ ହିଁ ପ୍ରଶ୍ନ। କାରଣ ଆଜି ଏ ଯେଉଁ ବିଷମ ସମସ୍ୟା ଆମ ଆଗରେ ସେ ସମସ୍ୟାର ବାହକ ଆମ ଭିତରେ ହିଁ ଅଛନ୍ତି। ଆମେ ଯେହେତୁ ସମସ୍ୟା ସୃଷ୍ଟି କରିଛୁ ଆମମାନଙ୍କର ହୃଦ୍‌ବୋଧ ହେଲେ ତାର ସମାଧାନ ବି ବାହାର କରିପାରିବୁ। ମୁଁ ଜାଣେ କାଗଜ କଲମରେ ସମାଧାନ ଯଦି ହେଇ ଯାଇଥାନ୍ତା ତେବେ ଯେବେଠାରୁ ଯୌତୁକ ବିରୋଧୀ ଆଇନ୍ ପ୍ରଣୟନ କରାଗଲା ସେବେଠାରୁ ଏହା ଲୋପ୍ ପାଇ ଯାଇଥାନ୍ତା। ଏଇଠି ଗୋଟିଏ ଜିନିଷ ଦରକାର ମନୁଷ୍ୟତ୍ୱ ବା ମାନବିକତା। ୧୯୬୧ରେ ପ୍ରଣୟନ କରାଯାଇଥିବା ଯୌତୁକ ନିରୋଧ ଆଇନ ସଂପୂର୍ଣ୍ଣ ବିଫଳ ହେଇଯାଇଛି। ବୃଦ୍ଧି ପାଇଥିବା ବଧୂହତ୍ୟା ଏହା ପ୍ରମାଣ କରିଛି ଯେ ମନର ସଂସ୍କାର ନ ହେଲେ ଆଇନ୍ ପ୍ରଣୟନକରି ଯେକୌଣସି ଜିନିଷକୁ ନିଷେଧ କରାଯାଇ ପାରିବନି। ଯେଉଁଠି ନିଜକୁ ସଂଶୋଧନ କରିବାକୁ ମଣିଷ ଅକ୍ଷମ ସେଠି ଆଇନ କଣ କରିପାରେ ?

ବିବାହିତ ଦୁଇଟି ମନର ଯୁଗଯୁଗର ଅଛିଣ୍ଡା ବନ୍ଧନ। ଏ ବନ୍ଧନକୁ ମନର ଡୋରିରେ ହିଁ ବନ୍ଧାଯାଏ, ଟଙ୍କା କି ଫ୍ରିଜ୍, ଟି. ଭି., ସ୍କୁଟରରେ ନୁହେଁ। ସତ କହିବାକୁ ଗଲେ ବିବାହ ପାଇଁ ଦୁଇଟି ଫୁଲମାଳ ହିଁ ଯଥେଷ୍ଟ। ଆଲୁଅର ସାଜସଜା, ଶାଢ଼ୀ ଗହଣାର ଚାକଚକ୍ୟ, ଭୋଜିଭାତର ଧୂମ୍‌ଧାମ ଭିତରେ ଦୁଇଟି ମନକୁ ମିଳାଇ ହେବ ନାହିଁ। ଦାମ୍ପତ୍ୟ ସୁଖକୁ କଣ କେବେ ଯୌତୁକର ତଉଲରେ ଓଜନ କରାଯାଇପାରେ ? ଯେଉଁମାନେ କରନ୍ତି ସତରେ କଣ ମନର ଶାନ୍ତି ପାଆନ୍ତି ? ସବୁଠୁ ପରିତାପର ବିଷୟ ହେଲା ଉପଢ଼ୌକନ ଦେବାର ସୁନ୍ଦର ପରମ୍ପରାଟିକୁ ବିକୃତ କରିଦିଆଯାଇଛି।

ଯାହାଫଳରେ ଝିଅଜନ୍ମ କନ୍ୟାପିତାମାତାଙ୍କ ପାଇଁ ଆଶୀର୍ବାଦ ନ ହୋଇ ଏକ ଅଭିଶାପ ପାଲଟିଛି। ଏପଟେ ଆଇନର ପ୍ରୟୋଗ, ସଂଶୋଧନ ଚାଲିଛି। ଆଇନ ରକ୍ଷକମାନେହିଁ ପର୍ଦ୍ଦାଅନ୍ତରାଳରେ ଆଇନର ଭକ୍ଷକ ସାଜୁଛନ୍ତି। ଆଇନ ତା ବାଟରେ ଚାଲିଛି, ଯୌତୁକ ନେଇ ବରଣ ବାଟରେ ଚାଲିଛି। ଭାରତ ଭଳି ଦେଶରେ ଆଜି ପ୍ରତି ଶହେଜଣରେ ଦଶଜଣଙ୍କୁ ଯୌତୁକ ଲାଗି ହତ୍ୟା କରାଯାଉଛି। ଅର୍ଦ୍ଧରୁ ବେଶି ପରିମାଣର ଝିଅ ଏଥିଲାଗି ନିର୍ଯ୍ୟାତନା ସହୁଛନ୍ତି ଆଉ କୋଡ଼ିଏ ଭାଗଙ୍କର ଛାଡ଼ପତ୍ର କିୟା ଅଲଗା ରହିବାର ଆବଶ୍ୟକତା ପଡୁଛି। ବିଦ୍ୟୁତ ସକ୍ ଦେଇ, ବିଷଦେଇ, ମାଡ଼ମାରି, ପେଟ୍ରୋଲଢ଼ାଳି, ଶ୍ୱାସରୁଦ୍ଧକରି, ପେଟରେ ଠିଆହେଇ ଅଥବା କୂଅରେ ଠେଲି ହତ୍ୟାକରିବାର ବୀଭତ୍ସ ଫଟୋ, ଖବର ସାରା ଭାରତର ସୟାଦପତ୍ର ଗୁଡ଼ିକର ମୁଖ୍ୟ ପୃଷ୍ଠା ମଣ୍ଡନ କରିଛି। ଏହାଉପରେ ଅନେକ ତର୍କସଭା ହେଇଛି। ବହୁ ନେତ୍ରୀ ଭାଷଣ ମାରିଛନ୍ତି। ଅଥଚ ଆଶ୍ଚର୍ଯ୍ୟର କଥା ଏହି ନେତ୍ରୀମାନେ ହିଁ ପରୋକ୍ଷରେ ଆତ୍ମୀୟ ସ୍ୱଜନଙ୍କ ବାହାଘରେ ଯୌତୁକ ଦେବା ନେବାର ଦୃଷ୍ଟାନ୍ତ ରଖି ଯାଇଛନ୍ତି। ଯୌତୁକର କଳାବଜାରରେ ନିରୀହା ଝିଅଟି ବଳି ସାଜିବାରେ ଲାଗିଛି ଯେ ଲାଗିଛି। ଏ ବଳିର ଯଜ୍ଞରୁ ଗରିବ ଧନୀ, ସୁନ୍ଦରୀ ଅସୁନ୍ଦରୀ, ଶିକ୍ଷିତା ଅଶିକ୍ଷିତା, ମଫସଲୀ ଆଧୁନିକା, ଚାକିରିଆ ବା କେବଳ ଗୃହିଣୀ କେହି ବାଦ୍ ପଡୁ ନାହାନ୍ତି। ସବୁ ଭାଷଣ, ପ୍ରତିଜ୍ଞା, ଆଦର୍ଶ, ଲେଖା, ଆନ୍ଦୋଳନ ପୋଥି ବାଇଗଣ ପାଲଟି ଯାଇଛି। ଯୌତୁକ ନ ନେଇ ବାହା ହେବାକୁ ଭାବୁଥିବା ଝିଅଟି ଉଚ୍ଚଶିକ୍ଷିତ, ଉଚ୍ଚପଦବୀରେ ଅଧିଷ୍ଠିତ ବର ପାଇଲେ ଚୁପ୍‌କି ବେଦୀରେ ବସି ଯାଉଛି। ଛାତ୍ର ଥିଲାବେଳେ ଯୌତୁକ ନ ନେବା ପାଇଁ ଶପଥ କରି ଭାଷଣ ଦେଇଥିବା ଯୁବକଟି ବଡ଼ ଚାକିରୀ ପାଇଲାପରେ ବାହାହେଲାବେଳେ ଯୌତୁକ ଲୋଭ ସୟାଳି ପାରୁନାହିଁ।

ବର୍ତ୍ତମାନର ସମୟ ପ୍ରତ୍ୟେକ ନାରୀପାଇଁ ସଂକଟପୂର୍ଣ୍ଣ, ପରୀକ୍ଷାର ସମୟ। ଜଣେ ଝିଅପାଇଁ ଆଜି ବାହାହେବା ଏକ ସୁନ୍ଦର ସ୍ୱପ୍ନ ହୋଇ ରହି ନାହିଁ। ଆତ୍ମୀୟ ବା ବାପାମା ମାନେ ଝିଅକୁ ବାହାଦେଲା ପରେ ପ୍ରତିମୁହୂର୍ତ୍ତରେ ସେମାନେ ଝିଅର ମୃତ୍ୟୁ ଖବର ପାଇବାର ଆଶଙ୍କାକୁ ଏଡ଼ି ଦେଇ ପାରୁନାହାନ୍ତି। ଏ ଯୁଗରେ ଆମେ ଶିକ୍ଷିତ ହେଇଛୁ ସତ କିନ୍ତୁ ଉଚ୍ଚଶିକ୍ଷା ବୋଧହୁଏ ଆମକୁ ଅର୍ଥଲିପ୍ସୁ ଓ ଛୋଟମନା କରି ଦେଇଛି। ଶ୍ୱଶୁର ଘର ଟଙ୍କାରେ ବଡ଼ଲୋକ ବୋଲାଇବା, ଘୋଡ଼ା ଚଢ଼ିବାର ଲୋଭକୁ ମାଗଣାରେ ଆମେ ସୟରଣ କରି ପାରୁ ନାହୁଁ। ମୋଟା ଅଙ୍କରେ ଯୌତୁକ ପାଇଲେ ଝିଅର ଚେହେରା, ଗୁଣ, ଶିକ୍ଷା, ଚରିତ୍ର ସବୁକିଛି ଗୌଣ ହେଇ ଯାଉଛି। ଯେଉଁ ଝିଅ ଯେତେ ପରିମାଣରେ ବେଶି ଯୌତୁକ ଆଣିପାରୁଛି ଶାଶୁଘରେ ତାର ସମ୍ମାନ, ଆଦର, ଗୁରୁତ୍ୱ ସେତେ ଅଧିକ ବୃଦ୍ଧି ପାଉଛି। ଆଜିର ବସ୍ତୁତାନ୍ତ୍ରିକ ଦୁନିଆରେ ଧନୀକନ୍ୟା ପିତା ମାତାମାନେ ଯେଉଁ ପ୍ରକାରର ଜ୍ୱାଇଁ କିଣିବାକୁ ଚାହୁଁଛନ୍ତି ପାଉଛନ୍ତି। ମଝିମଝିକିଆ କିୟା ନିମ୍ନମଧ୍ୟବିତ୍ତ ଘରର ଝିଅମାନେ ବେଶି ପରିମାଣରେ ପେଷି ହେଇ ଯାଉଛନ୍ତି ଏ କ୍ଷେତ୍ରରେ। ମୋଟା ଅଙ୍କରେ ଯୌତୁକ ଦେଇ ପାରିବାର କ୍ଷମତା ଥିବା ଅଭିଭାବକ ମାନଙ୍କ ମତ ହେଲା ଝିଅକୁ ଯୌତୁକ ଦେବା ଅର୍ଥ ଆର୍ଥିକ ଦିଗରୁ ଶାଶୁଘରେ ଝିଅକୁ ଭଲ ଭାବରେ ଅବସ୍ଥାପିତା କରିବା। ତେଣୁ ପାତ୍ରର ଶିକ୍ଷା, ଚାକିରିର ମାନ-ଉପରେ ଯୌତୁକର ପରିମାଣ ନିର୍ଧାର୍ଯ୍ୟ କରା ଯାଉଛି। ଯେମିତି ପିଅନଟେ ପାଇଁ ସାଇକେଲ, କିରାନିଟିଏ ଲାଗି ସ୍କୁଟର, ଅଫିସର ପାଇଁ ମଟର ସାଇକେଲ, ତତୁଲ୍ୟ ଉର୍ଦ୍ଧ୍ୱଲାଗି ଚାରିଚକିଆ ଯାନ ଇତ୍ୟାଦି ଇତ୍ୟାଦି। ପୁଣି ଜଣାପଡ଼ିଛି ପ୍ରାୟ ଶତକଡ଼ା ୯୦ ଭାଗ ଝିଅ ଆଜି ଯୌତୁକ ସହିତ ଶାଶୁଘରକୁ ଯିବା ପାଇଁ ଇଚ୍ଛାକରନ୍ତି।

ମାତ୍ର ଦଶଭାଗ ଏହା ବିରୋଧରେ ସ୍ୱର ଉତ୍ତୋଳନ କରିଥାନ୍ତି।

ସ୍ତ୍ରୀକୁ ହତ୍ୟା କରିବାର ଅର୍ଥ ହେଲା ପୁଣିଥରେ ବିବାହ କରି ମୋଟା ଯୌତୁକ ଆଣିବା। ଯେଉଁ କ୍ଷେତ୍ରରେ ଏହି ଜଘନ୍ୟ ଘଟଣା ଘଟୁଛି ତା ଅନ୍ତରାଳରେ ଏହି ପୁନର୍ବିବାହରହିଁ କୁତ୍ସିତ ଉଦ୍ଦେଶ୍ୟ ରହିଛି। ତେଣୁ ପ୍ରତିବର୍ଷ ଶହଶହ ବଧୂହତ୍ୟା ଭାରତ ଭଳି ଦେଶରେ ଚାଲିଛି. ଯେଉଁ ଦେଶକି ଅହିଂସା ଆନ୍ଦୋଳନ ମାଧ୍ୟମରେ ନିଜର ସ୍ୱାଧୀନତା ହାସଲ କରି ବ୍ରିଟିଶ ଜାତିକୁ ବହିଷ୍କାର କରି ସାରା ବିଶ୍ୱରେ ଦିନେ ବିସ୍ମୟର କାରଣ ପାଲଟିଥିଲା।

ବଧୂକୁ ପୋଡ଼ିମାରିଦେବା ପରେ ସ୍ୱାମୀ ଶ୍ୱଶୁରଘର ଲୋକେ ଷ୍ଟୋଭ ଫାଟିଯିବା, ଗ୍ୟାସ୍ ସିଲିଣ୍ଡର ଲିକ୍ କରିବା କିମ୍ବା ନାଇଲନ୍ ଶାଢ଼ୀରେ ନିଆଁ ଧରିଯିବାର କୈଫିୟତ ଦେବା ସମ୍ବାଦପତ୍ରରେ ପ୍ରକାଶ ପାଇ ଥାଏ। ବିଷ କିମ୍ବା ଶ୍ୱାସରୁଦ୍ଧ ପ୍ରଭୃତି ଦ୍ୱାରା ମାରି ସାରିଲା ପରେ ଝିଅଟି ଆତ୍ମହତ୍ୟା କରିଥିବାର ପରିବେଶ ସୃଷ୍ଟିକରାଯାଏ। ଏସବୁ ପଢ଼ିଲାପରେ ବା ଦେଖିଲାପରେ ଆଶ୍ଚର୍ଯ୍ୟ ଲାଗେ ଝିଅମାନେ ପ୍ରତିବାଦ କରୁନାହାଁନ୍ତି କାହିଁକି? ନିରବରେ କେଉଁ କାରଣରୁ ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରୁଛନ୍ତି? ବିଶେଷକରି ଶିକ୍ଷିତା ଝିଅମାନେ ଏଭଳି ନୃଶଂସ ଘଟଣା ଗୁଡ଼ିକୁ କେମିତି ସହ୍ୟ କରୁଛନ୍ତି? ପ୍ରତିବାଦ କରୁ ନାହାନ୍ତି କେଉଁ କାରଣରୁ ? ନାରୀଜାଗରଣ ପାଇଁ ତ ଆଜି ମାଧ୍ୟମର ଅଭାବ ନାହିଁ?

ଏହାର ବି କିଛି ଉତ୍ତର ମିଳିଯାଏ। ଯଦି ଝିଅଟି ଚାକିରି କରି ନାହିଁ ତେବେ ପ୍ରତିବାଦ କରିବାର ସାହସ କରି ପାରୁନାହିଁ। ଦ୍ୱିତୀୟରେ ବାପଘରର ଆର୍ଥିକ ସ୍ୱଚ୍ଛଳତା ନଥିଲେ ଓ ବିବାହିତା ଝିଅଟିର, ଭଉଣୀଟିର ସାରାଜୀବନ ଭରଣ ପୋଷଣର ଦାୟିତ୍ୱ ସେମାନେ ନେବାକୁ ପ୍ରସ୍ତୁତ ନ ଥିଲେ ଝିଅଟି ନିର୍ଯ୍ୟାତିତା ହେଲେ ମଧ୍ୟ ଚାଲି ଆସିବାକୁ ସାହସ କରୁ ନାହିଁ। ବରଂ ଏଭଳି ଭାବରେ ମରିଯିବାଟାକୁ ପସନ୍ଦ କରୁଛି। ଶିକ୍ଷିତା ହେଲେ ହେଁ ଛାଡ଼ପତ୍ର ଦେବା କି ପଳାଇ ଆସିବା ବି ଏତେ ସହଜ ନୁହେଁ ଯେତେ ସହଜ ଆମେ ଚିନ୍ତାକରି ପାରୁଛୁ। ସ୍ୱାମୀପ୍ରତି ସ୍ନେହ, ଅନୁରାଗ ବା ସେ ଘର ପ୍ରତି ଯେଉଁ attachment ତାକୁ ତୁଟାଇଦେବା ବି କଣ ସମ୍ଭବ ସହଜରେ? ହୁଏତ ସେଠୁ ଭରଣ ପୋଷଣ ପାଇଁ ସେ କେସ୍ କରିପାରେ ହେଲେ ଭରଣ ପୋଷଣ ଓ ଖୋରାକ ପୋଷାକର ଫଇସଲା କଣ ନାରୀ ପାଇଁ ସର୍ବଶ୍ରେଷ୍ଠ ସିଦ୍ଧାନ୍ତ ବା ଶେଷ କାମନା? ସ୍ୱାମୀ ଥାଉ ଥାଉ ପତ୍ନୀର ମର୍ଯ୍ୟାଦା ନ ପାଇବା କେତେବଡ଼ ଅପମାନ? ଏଭଳି ନାରୀଟିକୁ ବି ସହଜରେ, ସୁସ୍ଥରେ କଣ ଆମ ସମାଜ କେବେ ବଞ୍ଚିବାକୁ ଦିଏ? ନାରୀଜାଗରଣର ମାଧ୍ୟମ ଓ କେନ୍ଦ୍ରମାନ ଥିଲେ ତା ପାଖରେ ନାରୀମାନେ ପହଁଞ୍ଚିପାରୁ ନାହାନ୍ତି କାହିଁକିନା ପହଁଞ୍ଚିବାର ରାସ୍ତା ସେମାନଙ୍କୁ ଜଣା ନାହିଁ ବା ଏଭଳି କେନ୍ଦ୍ର ସଂପର୍କରେ କେହି ଜ୍ଞାନ ଦେଇ ନାହାନ୍ତି ଅଥବା ଏଭଳି ମାଧ୍ୟମ ଉପରେ ସେମାନଙ୍କର ଭରସା ଦୃଢ଼ୀଭୂତ ହେଉନାହିଁ।

ଅନ୍ୟପଟେ ଶିକ୍ଷିତା ଚାକିରିଆ ଝିଅମାନଙ୍କ ଲାଗି ଏହା ଯେତେ ସମସ୍ୟା ନୁହେଁ ସମସ୍ୟା ହେଲା ଅପାଠୋଇ, ବେକାର, ଆର୍ଥିକ ଦୁର୍ବଳ ଝିଅମାନଙ୍କ ଲାଗି। ଅନେକ ଜାଗାରେ ଦେଖା ଯାଉଛି ଅଭିଭାବକମାନେ ମଧ୍ୟ ଝିଅ ବୁଢ଼ୀ ହୋଇଯିବ, ବରପାତ୍ର ଥରେ ହାତରୁ ଖସିଗଲେ ଆଉ ମିଳିବନି ଭାବି ଜମି ବାଡ଼ି ବିକି ଯୌତୁକ ଦେବାକୁ ପ୍ରସ୍ତୁତ ହେଉଯାଉଛନ୍ତି। ଭବିଷ୍ୟତରେ ଏହାର ପରିଣାମ କଣ ହେବ ଥରଟିଏ ବି ଚିନ୍ତା କରୁ ନାହାନ୍ତି। ଏବେ ଅନେକ ବାପାମା ଏହି ଯୌତୁକ ଦାବୀ ଓ ହତ୍ୟା ଘଟଣା ଯୋଗୁଁ "ପ୍ରେମ ବିବାହ" ଉପରେ ଗୁରୁତ୍ୱ ଆରୋପ

କରୁଛନ୍ତି। ଅନ୍ତତଃ ପକ୍ଷେ ଏ ବିବାହ ଯୋଗୁଁ ଉପଯୁକ୍ତ ପାତ୍ର ଖୋଜିବାର ଦାୟିତ୍ୱ ଯିବ। ତାଛଡ଼ା ଯୌତୁକ ଭଳି ପ୍ରସଙ୍ଗ ଏତେ ରହିବ ନାହିଁ। ଯାହାହେଲେ ବି ସ୍ୱାମୀ ଝିଅର ପକ୍ଷ ନେବ। ହେଲେ ସବୁଝିଅ ପକ୍ଷରେ ପ୍ରେମକରି ବାହାହେବା ବି ସମ୍ଭବ ନୁହେଁ। ବାହାହେଇଗଲାପରେ ଏ ବିବାହ ଯେ ସଫଳ ହେବ ତାର ବି କୌଣସି ଗ୍ୟାରେଣ୍ଟି ନାହିଁ। ତେବେ ନିର୍ଦ୍ଦିଷ୍ଟ ଜାତି ବା ସମ୍ପ୍ରଦାୟ ଭିତରେ ପୁଅଝିଅର ବାହାଘର ପ୍ରସ୍ତାବ ରହିଥିବା ଯାଏଁ ଯୌତୁକ ବଢ଼ିବ। ଯଦି ଜାତି ଉଠାଇ ଦିଆଯାଏ ତେବେ ଯେ କୌଣସି ସମ୍ପ୍ରଦାୟରୁ ଉଚ୍ଚଶିକ୍ଷିତ, ଚାକିରିଆ ପାତ୍ର ଝିଅକୁ ମିଳିଯିବ। ଗୋଟିଏ ନିର୍ଦ୍ଦିଷ୍ଟ ଜାତି ଭିତରେ ପୁଅର ସଂଖ୍ୟା ଅଳ୍ପ ହେଇ ଝିଅ ସଂଖ୍ୟା ବଢ଼ିଗଲେ ଏଭଳି ସମସ୍ୟାତ ଦେଖାଯିବ। ତେଣୁ ଜାତିର ମୂଳୋତ୍ପାଟନ ସମସ୍ତଙ୍କର ଉଦ୍ଦେଶ୍ୟ ହେବା ଦରକାର। ପୁଣି ବିବାହ ବେଳେ କିଛି ଯୌତୁକ ଦେଇ ଓ ବିବାହପରେ ବାକି ଯୌତୁକ ଦେବାର ଯେଉଁ ସର୍ତ୍ତ ତାହା ଅଧିକାଂଶ କ୍ଷେତ୍ରରେ ପ୍ରାଣହାନିର କାରଣ ହେଉଥାଏ। ବିବାହ ପରେ ବାପଘରର ଲୋକେ ନିଜର ଆର୍ଥିକ ଦୁରବସ୍ଥା ଯୋଗୁଁ ହେଉ କିମ୍ବା ଦେଇ ନାରୀ ହେଲା ପାରିର ନ୍ୟାୟରେ ହେଉ ଆଉ ଧରାଛୁଆଁ ଦିଅନ୍ତି ନାହିଁ। ଯାହା ଫଳରେ ଝିଅଟି ମୃତ୍ୟୁର ସମ୍ମୁଖୀନ କିମ୍ବା ନିର୍ଯ୍ୟାତନାର ଶିକାର ପାଲଟି ଯାଏ। ଯୌତୁକର ସର୍ତ୍ତ ରଖି ବାପାମା କେମିତି ଝିଅକୁ ବିବାହ ଦେଉଛନ୍ତି ଓ ସବୁ ଜାଣିବି ଝିଅଟି କେମିତି ସମ୍ମତି ଦେଉଛି ଏହାର ପଛରେ ଥିବା ଅସହାୟତାକୁ ବି ଅନୁଧ୍ୟାନ କରିବା କଥା।

ଏଥି ପାଇଁ ନାରୀ ସମାଜ ସଚେତନ ହେବା, ପ୍ରତିକ୍ରିୟାଶୀଳ ହେବା ଓ ଶିକ୍ଷିତା, ଚାକିରିଆ ହେଲାପରେ ବିବାହ କରିବାର ନିଷ୍ପତ୍ତି ନେବାର ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା ରହିଛି। କାରଣ ଏଭଳି ପରିସ୍ଥିତିରେ ସେମାନେ ସାମ୍ନା କରିବାର ସାହସ ପାଇ ପାରିବେ। ପୁଅ ବାହାଘର ଅର୍ଥାଗମର ଏକ ସୁନ୍ଦର ସୁଯୋଗ ବୋଲି ଏବେ ଲୋକଙ୍କର ବେଶି ବେଶି ବିଶ୍ୱାସ ହେଉଛି। ଏ ସୁଯୋଗକୁ ଲେଖା ମାଧ୍ୟମରେ, ଅନୁରୋଧ ମାଧ୍ୟମରେ ଦୂରୀଭୂତ କରାଯାଇ ପାରିବ ନାହିଁ। ଏହା ସମୟ ସାପେକ୍ଷ। ତାଛଡ଼ା ଯୌତୁକ ବିରୋଧୀ ଆନ୍ଦୋଳନରେ ଉଚ୍ଚଶିକ୍ଷିତା, ସମ୍ଭ୍ରାନ୍ତ, ଧନୀ ଘରର ଝିଅମାନେ ଅଧିକ ପରିମାଣରେ ସାମିଲ ହେବା ଦରକାର। କିନ୍ତୁ ଏମାନଙ୍କ ପାଇଁ ଯୌତୁକ ବ୍ୟକ୍ତିଗତ ସମସ୍ୟା ହେଇ ରହି ନ ଥିବାରୁ ସେମାନେ ଆଗ୍ରହ ପ୍ରକାଶ କରୁନାହାନ୍ତି। ଯାହା ବାପା ଦେଇ ପାରିବେନି, ସେହିଭଳି ଘରର ଝିଅମାନେ କଣ କେବଳ ଏହା ବିରୋଧରେ ଆନ୍ଦୋଳନ କରୁଥିବେ? ଯିଏ ଯାଚୁଛି ବିନା ପରିଶ୍ରମରେ ସେ ଘରେ ପୁଅମାନେ ପାଇବାର ଆଶାରଖି ବାହା ନ ହେବେ କାହିଁକି?

ପ୍ରତ୍ୟେକ ଯଦି ଭାବନ୍ତେ ବୋହୂଟି ଆଉ କାହାର ଝିଅ ଆଉ ସେମାନେ ଯେଉଁ ବ୍ୟବହାର କରୁଛନ୍ତି ସେ ବ୍ୟବହାର ଯଦି ତାଙ୍କ ଝିଅ ସହିତ କରାଯାଏ ତାହାଲେ ହୃଦଙ୍ଗମ ହୁଅନ୍ତା। ପୁଣି ମନେରଖିବା ଆବଶ୍ୟକ କାଲିର ବୋହୂ ଆଜିର ଶାଶୁ। ସବୁ ବୋହୂମାନେ ଶାଶୁ ହେବେ ଆଉ ସବୁ ଶାଶୁମାନେ ଯେ ବୋହୂପଣ କରିଥିଲେ ଏହା ଏକ ନିଚ୍ଛକ ସତ୍ୟ। ଶାଶୁ ବୋହୂର ସମ୍ପର୍କ ତିକ୍ତ ହେବାର କାରଣ ହେଲା ଜଣେ ବୁଝି ପାରୁନି ଆଉଜଣେ ଆତ୍ମକଷ୍ଟ କରିପାରୁନି। ନିର୍ଯ୍ୟାତନାର ସୂତ୍ର ଏମିତି ଆରମ୍ଭ ହେଉଛି।

ଏଥିପାଇଁ ଯୁବକଗୋଷ୍ଠୀଙ୍କର ସହଯୋଗ, ଆଦର୍ଶ ମନଭାବର ବି ଅତ୍ୟନ୍ତ ଆବଶ୍ୟକତା ରହିଛି। ସେମାନେ ଇଚ୍ଛା କଲେ ସଂସ୍କାର ଆଣିପାରିବେ। ଏମାନେ ବିବାହ କରନ୍ତି ତାଙ୍କ ବାପା କିମ୍ବା ଅଭିଭାବକ ନୁହନ୍ତି। ନିଜର ଶିକ୍ଷା, ବିବେକ, ନୈତିକତା ଦୃଷ୍ଟିରୁ ଯଦି ଯୌତୁକ ନ

ନେବାର ଶପଥ କରନ୍ତେ ତେବେ ହୁଏତ ଏଭଳି ଜଘନ୍ୟ ଘଟଣାର ପୁନରାବୃତ୍ତି କେବେ ଘଟନ୍ତା ନାହିଁ। କିନ୍ତୁ ବର୍ତ୍ତମାନ ଯୁବସମାଜ ବାଟବଣା, ଅନ୍ଧ ପରମ୍ପରା, ଲୋଭର ଶିକାର। ଇଲେକ୍‌ଟ୍ରୋନିକ୍ସ ଜିନିଷର ଯେତେ ବହୁଳ ଉତ୍ପାଦନ ହେଉଛି ଯୌତୁକର ଚାହିଦା ସେତେ ସେତେ ବଢ଼ି ଚାଲିଛି। ଏହା ଯୁବସମାଜ ଲାଗି ଏକ ଆକର୍ଷଣରେ ପରିଣତ ହେଉଛି। ଆମ ଭିତରେ ମୂଲ୍ୟବୋଧ ନାହିଁ, ବିବେକ ଅସ୍ତ, ପୁଣି ଶୃଙ୍ଖଳା, ସାମାଜିକତା ନାହିଁ। ବିବେକ ନଥିବା ବ୍ୟକ୍ତି ବିକାର ଗ୍ରସ୍ତ ନୁହେଁକି? ଯୁବଶକ୍ତି ଯଦି ଲାଳସାର ଶିକାର ତେବେ କାହାକୁ କୁହାଯିବ? ପ୍ରତ୍ୟେକ ପୁଅ, ବାପାମା, ଭାଇଭଉଣୀ ଏ ସଂପର୍କରେ ବ୍ୟକ୍ତିଗତ ଭାବେ ଚିନ୍ତାକରିବା ଦରକାର। ଆମର ବାହାଘର, ବରକନ୍ୟା ନିର୍ବାଚନ, ଦେବାନେବା, ଭଲ ପାଇବା, ଶ୍ରଦ୍ଧାସମ୍ମାନ ଏତେ ବ୍ୟବସାୟିକ ରୀତିରେ ଚାଲିଛି ଯେ ଭଲ ବ୍ୟବସାୟକୁ ବନ୍ଦ କରି କିଏ କାହିଁକି କ୍ଷତିରେ ଚାଲିବ? କହିବା ବାହୁଲ୍ୟ ଯେ ଆଜିର ଯୌତୁକ ବିରୋଧୀ ଆନ୍ଦୋଳନ ଏକ ମୌଖିକ ସ୍ଲୋଗାନ ଛଡ଼ା ଆଉ କିଛି ନୁହେଁ। ମନ ଭିତରେ ସ୍ୱାର୍ଥ, ଅର୍ଥଲାଳସା ଥିବା ଯାଏଁ ଏହା ବୃଦ୍ଧି ପାଉଥିବ ସିନା କମିବ ନାହିଁ। ସାଧାରଣ ସ୍କୁଲମାଷ୍ଟର କି କିରାନି ବାପଟିର ଯଦି ତିନିଚାରିଟି ଝିଅ ଥିବେ ତେବେ ସେ କେମିତି ଏ ଯୌତୁକ ବଜାରରେ ଝିଅ ବାହା ଦେବେ? ଝିଅମାନେ ବୁଢ଼ୀ ହେବେ ନା ବାପାଙ୍କ ଅବସ୍ଥା ଦେଖି ଆତ୍ମହତ୍ୟା କରିବେ। ଏଭଳି ଦୃଷ୍ଟାନ୍ତ ବି ରହିଛି। ସେମାନେ ଯଦି ଚାକିରି କରି ନ ଥାନ୍ତି, କଣ ଅବସ୍ଥା ହେବ ସେମାନଙ୍କର ? ତାଛଡ଼ା ସେଉଁ ଝିଅମାନେ ଯୌତୁକ ନେଇ ବାହା ହେବେନି ବୋଲି ପ୍ରତିଜ୍ଞା କରନ୍ତି ଓ ବାହା ନ ହୁଅନ୍ତି, ସେମାନଙ୍କର ନିରାପତ୍ତାପାଇଁ ସମାଜ କି ବ୍ୟବସ୍ଥା କରିଛି? ଏମାନଙ୍କର ସାରା ଜୀବନ ଭରଣ ପୋଷଣ ପାଇଁ କର୍ମ ସଂସ୍ଥା, ବାସସ୍ଥାନ ଯୋଗାଇଦେବା, ବାର୍ଦ୍ଧକ୍ୟ ଅବସ୍ଥାରେ ସହାୟ ହେବା ପାଇଁ ଆମ ସମାଜ କିଛି ସ୍ୱତନ୍ତ୍ର ବ୍ୟବସ୍ଥା କରିଛି କି? ଏଭଳି କିଛି ସୁଯୋଗ, ଭରସା ଥିଲେ ହୁଏତ ଝିଅଟି ବାପାମାଙ୍କର ବୋଝ ନ ହୋଇ ଯୌତୁକ ବିରୋଧରେ ଯାଇ ସାରା ଜୀବନ ଅବିବାହିତା ରହିପାରନ୍ତା। ତାଛଡ଼ା ବିନା ଯୌତୁକରେ ବିବାହ କରିବା ପାଇଁ ରାଜିଥିବା ଯୁବକମାନଙ୍କୁ କର୍ମ ଯୋଗାଣ କି କିଛି ସ୍ୱତନ୍ତ୍ର ସୁବିଧା ସୁଯୋଗ ଦେବା କଥା ବି ସରକାର ବିଶେଷ ଭାବରେ ଚିନ୍ତା କରିବା ଦରକାର।

ଯୌତୁକ ସମ୍ପର୍କରେ ମତାମତ ପାଇଁ ମୁଁ ଏକ ସର୍ଭେ କରିଥିଲି। ପ୍ରାୟ ପ୍ରତ୍ୟେକଙ୍କ ମତା ମତ ହେଲା ଜାତି ପ୍ରଥା ଉଠାଇ ଦେବା। ପୁଣି ପୁଅ ଝିଅ ଦୁହେଁ ନିଜନିଜର ଜୀବନ ସାଥି ଠିକ କରିବା ଦରକାର। ସେମାନଙ୍କୁ ସ୍ୱାଧୀନତା, ମିଳାମିଶାର ସୁଯୋଗ ଦେଲେ ଏହି ପ୍ରେମ ବିବାହ କିଛିଟା ଯୌତୁକର ସମାଧାନ କରିପାରନ୍ତା। ଏହା କିଛି ପରିମାଣରେ ସତ୍ୟ ହୋଇପାରେ। ହେଲେ ସମସ୍ତଙ୍କ ପକ୍ଷରେ ସମ୍ଭବ କି ? ତାଛଡ଼ା ପ୍ରେମ କରି ଯେ ବାହାହେବେ କେଉଁ ଗ୍ୟାରେଣ୍ଟି ଅଛି। ମିଳାମିଶାଲାଗି ସ୍ୱାଧୀନତା ଦିଆଗଲାପରେ ତାହା ଯଦି ଅନ୍ୟ କିଛି ଅଘଟଣାର କାରଣ ହୁଏ? ଶେଷରେ ପୁଅଟି ଯଦି ବାହା ହେବାକୁ ମନା କରିଦିଏ? ମୋ କହିବା କଥା ହେଲା ଅନେକ ପୁଅ ଅଛନ୍ତି ଭଲପାଇବା ନାଁରେ ଝିଅଟିର ସରଳତାର ସୁଯୋଗ ନେଇ ତାକୁ ଲୁଣ୍ଠନ କରନ୍ତି ଓ ଶେଷରେ ବାପାଙ୍କର ଅତି ବାଧ୍ୟ ପୁଅ ସାଜି କୈଫିୟତ ଦିଅନ୍ତି, ବାପା ଏହି ପ୍ରସ୍ତାବରେ ରାଜି ନୁହନ୍ତି। ତେଣୁ ବାଧ୍ୟହୋଇ ବାପାଙ୍କ ମନ ମାନିଥିବା ଝିଅକୁ ବାହା ହୋଇ ଗୁଡ଼ାଏ ଯୌତୁକ ନେଇ ସଂସାର କରିବାକୁ ପଡ଼ିବ ବୋଲି ସଫେଇ ଦିଅନ୍ତି। ଏ ଯୁଗରେ ପ୍ରେମ ବି ଗୋଟାଏ ବ୍ୟବସାୟିକ ଶବ୍ଦ ହୋଇ ଯାଇଛି। ଆମର ବାହାଘର,

ବରକନ୍ୟାନିର୍ବାଚନ, ଦେବାନେବା, ଭଲପାଇବା ସେହି ବ୍ୟବସାୟିକ ରୀତିରେ ହିଁ ଚାଲିଛି। ତେଣୁ କେଉଁ ପୁଅକୁ ବିଶ୍ୱାସ କରି ବାପା ମା ମିଳାମିଶା ପାଇଁ ଝିଅକୁ ସ୍ୱାଧୀନତା ଦେବେ? ମହରଗରୁ ଯାଇ କାନ୍ତାରରେ ପଡ଼ିବେ ନାହିଁ ତ?

ଏମ୍ଭକୁ ଦୃଷ୍ଟିରୁ ଯୌତୁକର ସମାଧାନ ହେଇପାରିବ କି ନାହିଁ ତାହାମଧ୍ୟ ଏକ ଜଟିଳ ପ୍ରଶ୍ନ। ଖଣ୍ଡୁରି ଗଛତ ମୂଳରୁ ପାହାଚ, ପାହାଚ। ଦୋଷଦେଇ ହେବ କାହାକୁ? ଯୌତୁକ ଦେବା ନେବା ଆଇନତଃ ଦଣ୍ଡନୀୟ। ତେବେ ଦଣ୍ଡକୁ ଭୟ ରହିଲେ ତ? ଆଇନ୍ ପ୍ରକୃତ ଦୋଷୀକୁ ଦଣ୍ଡ ଦେଇ ପାରିଲେ ତ? "ସବୁ ଦେଉଥିବି, ସବୁ ନେଉଥିବି, ପଚାରିଲା ବେଳକୁ ଆଖି ବୁଜିଦେବି", ଏପନ୍ଥା ଆଜି ସମସ୍ତେ ଧରିଛନ୍ତି। ଯାହାଫଳରେ ଦିଆନିଆ, ମଗାମଗି ସହ ହତ୍ୟା, ଆତ୍ମହତ୍ୟା ଲାଗିରହିଥିବ। ତା ସହିତ ଆମେ ସମସ୍ତେ ଦର୍ଶକ ହୋଇଯିବୁ କିମ୍ବା ଅଜାଣତରେ ଯୂପକାଠିରେ ନିଜ ବେକ ଗଳାଇ ଦେବୁ। ଏଭଳି ନାଟକରୁ ତ୍ରାହି ପାଇବା ଲାଗି ଝିଅମାନେ ପ୍ରଥମେ ନିଜ ଗୋଡ଼ରେ ଠିଆ ହେବା ଦରକାର। ଶିକ୍ଷା ଓ ଚାକିରି ପରେ ଯାଇ ଭବିଷ୍ୟତରେ ବିବାହ କଥା ଚିନ୍ତାକରିବା। ନିଜ ବୋହୂକୁ ନିଜ ଝିଅର ଆସନରେ ରଖି ଶାଶୂ ଶ୍ୱଶୁର ଏଦିଗଟି ଉପରେ ବିବେକପୂର୍ଣ୍ଣ ମାନବିକତାର ଆଶ୍ରୟ ନେବା ହେବ ସବୁଠାରୁ ବଡ଼ ସମାଧାନର ପନ୍ଥା। ଘରେ ଘରେ ଯୌତୁକ ବିରୋଧି ଆନ୍ଦୋଳନ ତେଜି ନ ଉଠିଲାଯାଏଁ ଆଇନ୍ ପ୍ରଣୟନ ଓ ସଂଶୋଧନ କେବଳ କାଗଜ କଲମର କଥା ହେଇ ରହିଥିବ, ଆଉ ଯୌତୁକ ବଳିରେ ନାରୀ ମୁଣ୍ଡ ଟେକାଇ ଚାଲିଥିବ।



# ଆତିଥ୍ୟ

ଲୀନା ସହିତ ମୋର ଅନେକ ବର୍ଷ ପରେ ଦେଖା ହେଲା । କଲେଜ ପଢ଼ିଲା ବେଳେ ଆମେ ବେଶ୍ ସାଙ୍ଗ ଥିଲୁ । ଆଇ.ଏ. ପଢ଼ିଲାବେଳେ ସେ ବାହା ହେଇଗଲା ଜଣେ ବଡ଼ ଅଫିସରଙ୍କୁ । ତେଣୁ ତା ସହିତ ତାପରେ ଯେ ଆଉ ଦେଖା ହେବ ଭାବି ନଥିଲି । ଏ ଭିତରେ କେତେଗୁଡ଼ା ବର୍ଷ ପାରିହେଇ ଯାଇଥିଲା । ହଠାତ୍ ବଜାରରେ ତା ସହ ଆକସ୍ମିକ ଦିନେ ଦେଖା ହେଇଗଲା । ଦୋ ଦୋ ଚିହ୍ନା ହେଉ ହେଉ ପରସ୍ପରକୁ କୁଣ୍ଢେଇ ପକାଇଲୁ । ଗପର ପେଡି ଫିଟିଗଲା ଯେମିତି । ଲୀନା ତାକଥା ପ୍ରଗଲ୍‌ଭା ହେଇ ଗପିବାକୁ ଆରମ୍ଭ କରି ଦେଲା, ତା ସହିତ ବାଧ କଲା ପାଖରେ ଥିବା ତା କ୍ୱାଟରକୁ ଯିବା ପାଇଁ । ସେ ଏଇ ଛ ମାସ ହେଲା ଏଠାକୁ ଆସିଛି । କେହି ସାଙ୍ଗ ମିଳି ନାହାନ୍ତି । ଚିହ୍ନା ପରିଚୟ ନାହିଁ । ଯେତେ ମନାକଲି ଛାଡ଼ିଲା ନାହିଁ । ଶେଷରେ ବାଧ ହେଇ ତା ଘରକୁ ଗଲି । କଥା ପ୍ରସଙ୍ଗରେ ଜାଣିଲି ସେ ଦୁଇଟି ସନ୍ତାନର ଜନନୀ ଆଉ ସୁଖି ପାରିବାରିକ ଜୀବନ ତାର ।

ଘରେ ପହଁଚି ଲୀନା ଯେମିତି ଟିକେ ବଦଳି ଗଲା । ସେ କେମିତି ଘରକୁ ଟିପ୍‌ଟାପ୍ ରଖିଛି ଓ ଚକ୍‌ଚାକ୍ ଘର ନ ହେଲେ ସେ ଅଣନିଃଶ୍ୱାସୀ ହେଇଯାଏ ଇତ୍ୟାଦି ଇତ୍ୟାଦି । ସେ କହି ଚାଲିଥିଲା କାନ୍ଥରେ ଟଙ୍ଗା ହେଇଥିବା ପେନ୍‌ଟିଙ୍ଗ୍‌ଟା ସେ ଲକ୍ଷ୍ନୌରେ ଥିଲାବେଳେ କିଣିଛି, ଧୂପଦାନୀଟା ତାର ହାଇଦ୍ରାବାଦରୁ । କାଶ୍ମୀରରେ ଥିଲାବେଳେ ଏ ଗାଲିଚାଟା । ସେମାନେ ଦିଲ୍ଲୀରେ ଥିଲା ବେଳେ ହିଁ ବହୁତ ସୌଖିନ ଜିନିଷ କିଣିଥିଲା । ଓଡ଼ିଶାରେ ତ ସେ ସବୁ କିଛି ନାହିଁ । ଯାହା ଅଛି ପସନ୍ଦ ହେଉ ନାହିଁ ।

ତାପରେ ଆଲମିରାରୁ ତାର ଶାଢ଼ୀ ଓ ଗହଣା ସବୁ ବାହାର କରି ଦେଖାଇଲା । ତେବେ ଅଳ୍ପ ଗହଣା ରଖିଛି ଓ ଚୋର ଭୟ ଯୋଗୁଁ ଗହଣାତକ ବ୍ୟାଙ୍କରେ ପଡ଼ିଛି ବୋଲି ସେ ପରୋକ୍ଷରେ ସୂଚାଇଦେଲା । ବାକି ଯାହାଅଛି ହାଇଦ୍ରାବାଦର ମୁକ୍ତା ସେଟ୍ ଓ ହାଲକା ଗହଣା । ପୁନଶ୍ଚ ତାର ଏ ଶାଢ଼ୀ, ଗହଣା ସେ କେଉଁଠି, କେତେ ଦାମ୍‌ରେ କିଣିଛି ସେ କଥା ମଧ୍ୟ କହିବାକୁ ଭୁଲିଲା ନାହିଁ । ଶେଷରେ ତା ସ୍ୱାମୀର ପଦବୀ, ସମାଜରେ ତାଙ୍କର ଷ୍ଟାଟସ ସମ୍ପର୍କରେ ମଧ୍ୟ ଗପିବାକୁ ଭୁଲିଲା ନାହିଁ । ଅଥଚ ଏ ସବୁ ଭିତରେ ମୁଁ ଅଣନିଃଶ୍ୱାସୀ ହେଇ ପଡ଼ିଥିଲି । ମୋର ମନେ ହେଲା ଏତେବର୍ଷ ପରେ ଭେଟିଥିବା କଲେଜ ଜୀବନର ବାନ୍ଧବୀ ଲୀନା ଆନ୍ତରିକ ବନ୍ଧୁତା ଖାତିରରେ ମୋତେ ତା ଘରକୁ ଡାକି ନାହିଁ । ମୋତେ ତାର ବୈଭବ, ସୁଖ, ପ୍ରାଚୁର୍ଯ୍ୟ ଦେଖାଇବା ପାଇଁ ହିଁ ଡାକି ଆଣିଛି । ସେଠି ଆଉ ରହିବାକୁ ଇଛା ହେଲା ନାହିଁ । ମୁଁ ତରତର ହେଲି ଫେରିବାକୁ । ଚା ପିଇ ନ ଗଲେ ନ ହେବ କହି ଲୀନା ଚା କରି ଗଲାବେଳେ ମନାକଲି । ଡେରି ହେଇଯାଉଛି । ଆଉଦିନେ । ସେ କହିଲା, ଟିକେ ଅପେକ୍ଷାକର, ମୋ ମିଷ୍ଟର ଆସିଲେ ତୋତେ ଆମ ଗାଡ଼ିରେ ଛାଡି ଦେଇ ଆସିବେ । ଇଙ୍ଗୀତରେ ସେ ଯେମିତି କହିଲା, ଆମର ଗାଡ଼ି ଅଛି ଆଉ ଅନେକ କିଛି ଅଛି ଯାହା ତୁ ଜାଣି ନାହୁଁ ।

ମନେମନେ ହସିଲି। ତାର ଆତିଥ୍ୟକୁ ଧନ୍ୟବାଦ ଦେଇ କହିଲି ନା, ଚାଲିବାର ଅଭ୍ୟାସ ଅଛି। ମୋର ଅନେକ କାମ ପଡ଼ିଛି କହି ରାସ୍ତାରେ ଯାଉଥିବା ରିକ୍ସାଟିଏ ଡାକି ଉଠିଗଲି। ଅତୀତର ଛାନାକୁ ଆସିଲାବେଳେ ସ୍ମୃତିର ପୃଷ୍ଠାରୁ ଖୋଜି ହେଉଥିଲି। କିନ୍ତୁ ଆଧୁନିକତାର ଷ୍ଟାଟସର ଦୁନିଆରେ ସେ କେଉଁ ଦିନୁ ହଜିଯାଇଥିଲା।

ଆଇ. ସି. ଡି. ଏସ୍‌ର ସୁପରଭାଇଜର ଚାକିରିରେ ଜୟେନ୍ କଲାପରେ ମୋତେ କେତୋଟି ଗାଁ ସର୍ଭେ କରିବାର ଦାୟିତ୍ୱ ଦିଆ ଯାଇଥିଲା। ଏକ ନିପଟ ମଫସଲ ଗାଁରେ ମୋର ଭେଟ ହେଲା ମଞ୍ଜୁ ସହିତ। ମୁଁ ହଠାତ୍ ତାକୁ ଚିହ୍ନି ପାରିଲି ନାହିଁ। ସେ କିନ୍ତୁ କହିଲା ମୋ ସହିତ ଏମ୍.ଇ.ସ୍କୁଲରେ ପଢୁଥିଲା ବୋଲି। ଗାଁ ସ୍କୁଲ ଡେଇଁ ହାଇସ୍କୁଲ ଯିବାର ଭାଗ୍ୟ ହେଲା ନାହିଁ। ବାହାଘର ହେଇ ଗଲା ତାର ଏଇ ମଫସଲରେ। ମୁଁ ମୋର କେଉଁ ହଜିଲା ଦିନର ବାନ୍ଧବୀକୁ ପାଇ ସେହି ଅଜଣା ଜାଗାରେ ଖୁସି ହେଇ ଗଲି। ଜାଣିଲି ସ୍ୱାମୀ ତାର ଏଠିକା ଗାଁର ୟୁ.ପି. ସ୍କୁଲର ମାଷ୍ଟର। ଶୀଘ୍ର ବାହାଘର, ଶୀଘ୍ର ପିଲାର ମା' ହେଇ ସେ ବୁଢ଼ୀ ହେଇଯାଇଥିଲା ଯେମିତି। କେହି ଦେଖିଲେ ବିଶ୍ୱାସ କରିବ ନାହିଁ ଯେ ଏ ମୋ ସାଙ୍ଗରେ ପଢୁଥିଲା ବୋଲି। ଅଳ୍ପ ବୟସରୁ ବାହାକରାଇ କୋମଳମତୀ ଝିଅର ଦେହ ଓ ମନରେ ଦାୟିତ୍ୱର ବୋଝ ଦେଇ ବାପାମା ଦାୟିତ୍ୱମୁକ୍ତ ହେଇ ଯାଇଛନ୍ତି। ଅଥଚ ମଞ୍ଜୁର ଅକାଳ ବାର୍ଦ୍ଧକ୍ୟ ଆସିଯାଇଛି। ଗୋଟିଏ ଦିଗରେ ଅଭାବ ଓ ଅନ୍ୟଦିଗରେ ସଂଗ୍ରାମ।

ମଞ୍ଜୁ ଲାଜ ଆଉ ସଙ୍କୋଚରେ ନିମନ୍ତ୍ରଣ କଲା। ଗରିବ ଘର, ଡାକିବାକୁ କୁଣ୍ଠା କରୁଛି। ତେବେ ତମେ ଯଦି ଯାଅନ୍ତ ତ ବଡ଼ ସୌଭାଗ୍ୟ ହୁଅନ୍ତା। ଏମିତି କଣ କହୁଛୁ ମଞ୍ଜୁ? ଏତେ ମାନ୍ୟକରି କଥା କହିବା କେବେଠୁ ଶିଖିଲୁଣି?

ମୁଁ ଗଲି। ଛୋଟ କୁଆଣିଆ ଚାଳଘରଟେ। ଘର କହିଲେ ଦୁଇଟି କୋଠରି। ଏକ ତକ୍ତ ପୋଷ ପଡ଼ିଛି। ଅଲଗୁଣୀରେ କେତୋଟି ମଇଳା ଲୁଗା ଥୁଆ ହୋଇଛି। ଛିଣ୍ଡା କନ୍ଥା କେତୋଟି ଭଙ୍ଗାହୋଇ ରହିଛି। କାନ୍ଥରେ ଜଗନ୍ନାଥଙ୍କ ଫଟୋ। ସବୁଠି କେମିତି ଏକ ଦାରିଦ୍ର୍ୟର ସ୍ପର୍ଶ। ତା ପିଲାମାନେ ଆସି ପ୍ରଣାମ କଲେ। ମଞ୍ଜୁର ସ୍ୱାମୀ ନମ୍ରତାର ସହିତ ନମସ୍କାର କରି କହିଲେ ଗରିବ ଘର ଆଜ୍ଞା। କଣ ଦେଖୁଛନ୍ତି। ଭାଇଭଉଣୀ ସମସ୍ତଙ୍କୁ ମଣିଷ କରିବାକୁ ପଡ଼ିଲା। ନିଜ ପାଇଁ ଭଲ ଘର ଖଣ୍ଡେ କରିପାରି ନାହିଁ। ମୁଁ କିନ୍ତୁ ଏକ ଅନ୍ତରଙ୍ଗତାର ବାସ୍ନାରେ ସେତେବେଳେ ବିଭୋର ହୋଇ ଯାଇଥିଲି। ମଞ୍ଜୁ ଘରର ଦାରିଦ୍ର୍ୟ ଭିତରେ ଥିଲା ଏକ ବହୁ ପରିଚିତ ଆପଣାର ବାସ୍ନା। ମଞ୍ଜୁ ତରବର ହେଉଥିଲା କଣ ଖାଇବାକୁ ଦେବ ବୋଲି। ବୋଧହୁଏ ଚା କରିବା ପାଇଁ ତା ଘରେ କ୍ଷୀର ନଥିଲା। ସେ ତାର ସ୍ୱାମୀକୁ ଇଙ୍ଗୀତରେ ସୂଚନା ଦେଉଥିଲାବେଳେ କହିଲି, ଏତେ ସଙ୍କୋଚ କାହିଁକି? ତୋର ମୁଁ ପିଲାଦିନର ସାଙ୍ଗ। ଆଣ୍ଟୁ ନାଲି ଚା ସାଙ୍ଗ ହେଇ ପିଇବା। ସେ ଆହୁରି ଟିକେ ସଙ୍କୁଚିତ ହେଇଗଲାବେଳେ ମୁଁ ତାର ରୋଷେଇ ଘରକୁ ପଶିଗଲି। ଏକବାରେ ଅନ୍ଧାରୁଆ ଘରଟା। ଭଲ କି ଠିଆ ହେଇ ହେବ ନାହିଁ। ସେ କହିଲା, ଏଠି କାଠ ସବୁ ସମୟରେ ମିଳେନି। ପତ୍ର ଜାଳି ରାନ୍ଧିବାକୁ ପଡ଼େ। ତମେ ସେ ଘରେ ବସ। ଧୂଆଁ ହେବ।

ଅନେକ ଦିନ ପରେ ନାଲି ଚା ପିଇଲି। ଘରେ ଯେତେବେଳେ କ୍ଷୀର କି ଅମୂଲ ନ ଥାଏ ବାପା ଏମିତି ଅଦା ପକାଇ ନାଲି ଚା ବରାଦ କରନ୍ତି। ତାଙ୍କ ପାଇଁ କଲା ବେଳେ ମୁଁ ବି ଦି ଢୋକ ପିଇ ଦେଉଥିଲି। ଅନେକ ବର୍ଷ ପରେ ଏଇ ଅଜଣା ଗାଁରେ ନିଜ ବାଲ୍ୟ

ସଙ୍ଗିନୀ ସହ ନାଲି ଚା ପିଉଥିଲାବେଳେ ମୁଁ ଯେମିତି ମୋର ପିଲାଦିନକୁ ଛୁଉଁଥିଲି। ମୋର ଚାକିରିଆ ବାରବୁଲା ଜୀବନରେ ଏମାନେ ଏତେ ଆତ୍ମିକ ମନେ ହେଉଥିଲେ ଯେ ସେ ଆନନ୍ଦ ମୁଁ ପ୍ରକାଶ କରିପାରୁ ନଥିଲି।

ମୋତେ ମଞ୍ଜୁ ସହିତ ତା ଘରର ସମସ୍ତେ ଆସିଥିଲେ ବସ ଷ୍ଟପେଜକୁ ଛାଡ଼ିବାକୁ। ତା ପିଲାମାନେ ପୂଣିଥରେ ପ୍ରଣାମ କରୁଥିଲେ। ମୁଁ ସେମାନଙ୍କର ଆତିଥ୍ୟରେ ମୁଗ୍ଧ ହୋଇଯାଉଥିଲି। ମଞ୍ଜୁ କହୁଥିଲା, ତମେ ଚାକିରି କରି ନିଜ ଗୋଡ଼ରେ ଠିଆ ହେଉଛ ଖୁବ୍ ଭଲ କରିଛ। ବାହାଘର ଠାରୁ ଚାକିରିହିଁ ବେଶି ନିରାପଦ ଝିଅମାନଙ୍କ ଲାଗି। ପାଠ ପଢ଼ିଥିଲେ ମୁଁ ବି ଆଜି ନିଜ ଗୋଡ଼ରେ ଠିଆ ହୋଇଥାନ୍ତି। ଏମିତି ହନ୍ତସନ୍ତ ଜୀବନ ବିତାଉ ନ ଥାନ୍ତି। ଶୀଘ୍ର ବାହାହେଇ ଭୁଲ କରିଛି। କିଏ ଜାଣିଥିଲା ପାଠ ଏଡ଼େ ଦରକାର ଚିଜଟେ ବୋଲି। ତା ସ୍ୱାମୀ ମଞ୍ଜୁ କଥା ଶୁଣି ହସୁଥିଲେ ଆଉ କହୁଥିଲେ ନେଡ଼ିଗୁଡ଼ କହୁଣୀକୁ ଗଲାପରେ ଇଏ ଅନୁତାପ କରୁଛି। ସବୁ ବୁଝିଲତ ତେବେ ନିଜ ପିଲାଙ୍କର ପାଠ ପଢ଼ା ପ୍ରତି ଧ୍ୟାନ ଦିଅ।

ମୁଁ ଯେତେବେଳେ ବସ୍ ଝରକା ଦେଇ ବାହାରକୁ ଅନାଇ ଥିଲି, ମୋ ସାମ୍ନାରେ ଦୁଇଟି ମୁହଁ ଥିଲା, ଲୀନା ଓ ମଞ୍ଜୁର। ଦୁହେଁ ମୋର ବାନ୍ଧବୀ, ସେମାନଙ୍କ ସହିତ କିଛି ଅନ୍ତରଙ୍ଗ ଦିନ କଟାଇଛି। ପ୍ରାଚୁର୍ଯ୍ୟ ଜଣକୁ ଅହଙ୍କାରୀ କରି ଦେଇଛି, ଦାରିଦ୍ର୍ୟ ଜଣକୁ ମହାନତା ଦେଇଛି। ଆଧୁନିକତା ଜଣକୁ ଉଗ୍ର କରିଛି, ସହନଶୀଳତା ଜଣକୁ ନମ୍ର କରିଛି। ହିସାବୀ ଦୁନିଆରେ ଜଣେ ଷ୍ଟାଟସ୍‌ର ମାପିଚୁପି ଦେଖାଣିଆ ଟକ୍ ଚାକ୍ ଜୀବନକୁ ସ୍ୱର୍ଗ ମନେ କରିଛି, ଆଉ ଜଣେ କିଛି ନ ଥାଇ ବି ବୈକୁଣ୍ଠସମାନ ଘରଟିଏ ତିଆରି କରିଛି। ନାହିଁ ଦେଖାଇ ହେବା। ଏତେଦିନ ପରେ ଭେଟିଥିବା ସାଙ୍ଗଟିକୁ ସେ କେବଳ ହୃଦୟ ଭର୍ତ୍ତି ଶ୍ରଦ୍ଧାରେ ସ୍ୱାଗତ କରିଛି, ଯେମିତି ଖୁଦକଣା ମୁଠାଏ ଦେଇ ସୁଦାମା ଶ୍ରୀକୃଷ୍ଣଙ୍କୁ ଜୟ କରିଥିଲା।

ଆଜିକାଲି ସାଧାରଣ ଆତିଥ୍ୟ, ଅନ୍ତରଙ୍ଗତା ଟିକକ କେମିତି ବିରଳ ହେଇ ଯାଉଛି ଆମ ଭିତରୁ। ପ୍ରାଚୁର୍ଯ୍ୟ, ଉଚ୍ଚଶିକ୍ଷା, ଷ୍ଟାଇଲ ଆମ ଭିତରେ ଅହଙ୍କାରର ପାହାଡ଼ ତିଆରି କରି ଦେଉଛି। ବିଶେଷ କରି ସ୍ୱାମୀର ଷ୍ଟାଟସ୍, ପଦବୀ ସ୍ତ୍ରୀ ପାଇଁ ଗୌରବର ବିଷୟ ହୋଇପାରେ ଗର୍ବର ନୁହେଁ। ଆଜି ମଞ୍ଜୁର ଆର୍ଥିକ ଦୁରବସ୍ଥା ସତ୍ତ୍ୱେ ମୁଁ ତା ପାଖରୁ ଯେଉଁ ସହୃଦୟତା ପାଇଲି ତାକୁ କଣ କେବେ ଭୁଲି ପାରିବି ? ମଞ୍ଜୁ ଯଦି ଆଜି ଲୀନାର ଆସନରେ ଥାନ୍ତା ତେବେ କଣ ସେ ବି ଏମିତି ବଦଳି ଯାଇଥାନ୍ତା ? ଯଦି ଏଭଳି ଭାବରେ ଲୀନା ଭଳି ଝିଅମାନଙ୍କର ସଂଖ୍ୟା ବୃଦ୍ଧିପାଏ କଣହେବ ମଞ୍ଜୁମାନଙ୍କର ଅବସ୍ଥା ? ସାଧାରଣ ଆତିଥ୍ୟ ଟିକକ କଣ ଲୋପ୍ ପାଇଯିବ ? ଆମେ କଣ କେବଳ ନିଜ ବଡ଼ପଣ କଥା ଏମିତି କହି ଚାଲିବୁ ? ଲୀନା, ମଞ୍ଜୁ, ମୁଁ ଓ ଆମଭଳି ନାରୀମାନେ ସମସ୍ତେ ନିଜର ସୁଖଦୁଃଖର ଜୀବନ ଭିତରେ ବନ୍ଦୀ। କାହାରିକୁ କିଛି ଦେଇ ପାରୁନୁ। ଯଦି ଏମିତି କେବେ ବନ୍ଧୁବାନ୍ଧବ, ସାଙ୍ଗସାଥି ସହିତ ଦେଖା ହୋଇ ଗଲା, ଦୁଇପଦ ହସି କଥା କହିଦେଲେ କ୍ଷତି କଣ ? କଥା କହିବାକୁ ତ ଆଉ ପଇସା ପଡ଼େ ନାହିଁ। ପଦେ ମିଠା କଥା ପାଖରେ ସଂସାରର ସବୁ ପ୍ରାଚୁର୍ଯ୍ୟ ତୁଚ୍ଛ ମନେ ହୁଏ। ଭଉଣୀମାନେ ! ଏଇ ଦୁଇପଦ ମିଠାକଥା କଣ ଆମେ ଧନ ଲୋଭରେ ସବୁଦିନ ପାଇଁ ହଜାଇ ଦେବା ? କଣ ଆମର ସମସ୍ୟା ପଦେ ହସି କହିବାରେ ? ସୁଖଦୁଃଖ ହେବାରେ ? ନିଜେ କଣ ତାହା ଅନ୍ୟ ଆଗରେ ଦେଖାଇବାର କଣ ଅଛି। ସୁନା ହୋଇଥିଲେ ସୁନାରି ତାର ମୂଲ୍ୟ ଆପେ ପରଖି ନେବ ସମୟ ଦେଖି।

# ବିଧବା ବିବାହ ଏକ ବିବଦମାନ ପ୍ରଶ୍ନବାଚୀ ?

ବିବାହ ପରେ ସ୍ୱାମୀ ମରିଗଲେ ସେହି ନାରୀକୁ 'ବିଧବା' କୁହାଯାଏ (ଯଦିଓ ସ୍ତ୍ରୀ ମରିଗଲେ ସ୍ୱାମୀକୁ ଏଭଳି ଶବ୍ଦରେ ସମ୍ବୋଧିତ କରାଯାଏ ନାହିଁ)। ବାଲ୍ୟ ବିଧବା ଯେ ବାଲ୍ୟ ବିବାହ ପ୍ରଥାରୁ ସୃଷ୍ଟ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ। ପିଲାକନ୍ୟା ବିବାହ କରିବା ଯୋଗୁଁ ବିଧବାଙ୍କ ସଂଖ୍ୟା ବଢ଼ୁଥିଲା। ଜଣାଯାଏ ରାମକୃଷ୍ଣ ପରମହଂସ ମଧ୍ୟ ସେ ସମୟର ଚଳଣି ଅନୁସାରେ ଛ ବର୍ଷର ଝିଅକୁ ବିବାହ କରିଥିଲେ। ରାମାୟଣ, ମହାଭାରତ, ପୁରାଣରେ ଏଭଳି ଅନେକ ଉଦାହରଣ ମିଳିବ।

ଅତୀତକୁ ଦୃଷ୍ଟିଦେଲେ ଜଣା ପଡ଼େ ବାଲ୍ୟ ବିବାହ ସମାଜରେ ଏକ ବହୁପ୍ରଚଳିତ ପ୍ରଥା ଥିଲା। ବିବାହ ଜଣ ଜାଣିବା ଆଗରୁ ଝିଅପୁଅଙ୍କର ବିବାହ ସଂପନ୍ନ ହେଉଥିଲା। ଥାଳିରେ ବସି ବାହା କରାଇ ଦିଆଯାଉଥିଲା କେତେକ କ୍ଷେତ୍ରରେ। ଅନେକ କ୍ଷେତ୍ରରେ ବାଲ୍ୟାବସ୍ଥାରୁ ବିବାହିତ ପୁଅଟିର ମୃତ୍ୟୁ ହୋଇ ଯାଉଥିଲା। ସ୍ୱାମୀ କଣ ଜାଣିବା ଆଗରୁ ଝିଅଟି ବିଧବା ହେଉଥିଲା। ସାରାଜୀବନ ତାକୁ ବୈଧବ୍ୟ ଯନ୍ତ୍ରଣାରେ ଦଗ୍ଧୀଭୂତ ହେବାକୁ ପଡୁଥିଲା। ସତୀଦାହ ଭଳି ଜଘନ୍ୟ ପ୍ରଥାକୁ ବନ୍ଦ କଲାପରେ ଅନେକ ବାଲ୍ୟବିଧବାମାନଙ୍କର କରୁଣ କାହାଣୀ ଶୁଣାଯାଏ। କେତେକ ମଧ୍ୟ ଜମିଦାରମାନଙ୍କର କାମନାର ଶିକାର ହେଉଥିଲେ। ଏମାନେ ବାଧ୍ୟ ହୋଇ ପୋଇଲୀ, ଦାସୀର ଭୂମିକା ନେଉଥିଲେ। ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀରେ ବାଲ୍ୟବିବାହ ପ୍ରଥା ଅତି ତୀବ୍ର ଥିଲା। ସେହି ତୁଳନାରେ ବିଧବାମାନଙ୍କର ସଂଖ୍ୟା ବୃଦ୍ଧିପାଉଥିଲା ଓ ସେମାନଙ୍କ ପାଇଁ ସାମାଜିକ କଟକଣା ଅତି କଠୋର ଥିଲା। ଦ୍ୱିତୀୟ ଥର ବିବାହ କରିବା ଏକ ସ୍ୱପ୍ନ ଥିଲା। ଏ ସଂପର୍କରେ ଚିନ୍ତାକରିବାଟା ବି ପାପ ଥିଲା। ସେମାନଙ୍କୁ ବିଭିନ୍ନ ବ୍ରତ, ଓଷା, ଉପାସନା ମାନିବାକୁ ବାଧ୍ୟ କରାଯାଉଥିଲା। ଅଧିକାଂଶ କ୍ଷେତ୍ରରେ ବାପାମା' ଅର୍ଥଲୋଭରେ ନିଜର ଅଳ୍ପବୟସ୍କା କନ୍ୟାକୁ ବୃଦ୍ଧମାନଙ୍କ ହାତକୁ ଟେକି ଦେଉଥିଲେ। କନ୍ୟାର ସ୍ୱପ୍ନ, ଆଶା, ଭବିଷ୍ୟତ ସବୁ କିଛିକୁ ମାଟି କରି ଦେଉଥିଲେ। ଝିଅର ସ୍ୱାଧୀନତା ବୋଲି କିଛି ନଥିଲା। ବିଧବାମାନେ ଗୃହର ଚାରିକାନ୍ଥ ଭିତରେ ଆବଦ୍ଧ ହୋଇ ସାରାଜୀବନ ରୁଦ୍ଧଶ୍ୱାସ ହୋଇ ମୃତ୍ୟୁ ବରଣ କରୁଥିଲେ। ପୁନଶ୍ଚ ସେ ସମୟରେ ନାରୀ ଶିକ୍ଷା ପାଇଲେ ଗୃହ, ପରିବାର ଉପରେ ବିପଦ ପଡ଼େ ବୋଲି ଧାରଣା ଥିଲା। ବିଧବାମାନଙ୍କୁ ଶିକ୍ଷାଦେବା ବା ସେମାନେ ଶିକ୍ଷାନେବା ତ କୁମ୍ଭୀପାକ ନର୍କସହ ତୁଳନୀୟ ଥିଲା।

ଧୀରେ ଧୀରେ ଯୁଗ ପରିବର୍ତ୍ତନ ହେଲା। ସଭ୍ୟତା ପ୍ରବେଶ କଲା। ଅନ୍ଧବିଶ୍ୱାସ, କୁସଂସ୍କାର ସବୁକିଛିକୁ ମଣିଷ ଅଗ୍ରାହ୍ୟ କରିବାକୁ ଚେଷ୍ଟାକଲା। ବାଲ୍ୟବିବାହ ନିଷେଧ ପାଇଁ ଆଇନ ପ୍ରଣୟନ କରାଗଲା। ପୁଅଝିଅଙ୍କର ବିବାହ ପାଇଁ ଏକ ନିର୍ଦ୍ଦିଷ୍ଟ ବୟସ ସ୍ଥିର କରାଗଲା। ପୁଅମାନଙ୍କ ସହିତ ଝିଅମାନେ ଶିକ୍ଷା ପାଇବାର ସୁଯୋଗ ପାଇଲେ। ବ୍ରାହ୍ମଣଘରର ଝିଅମାନେ ରକ୍ଷଣଶୀଳତାକୁ ଭାଙ୍ଗି ବାହାରକୁ ଆସିଲେ। ସେମାନେ ନିଜର ଅଧିକାର ସାବ୍ୟସ୍ତ କରି ଶିଖିଲେ। ଚାକିରି

କଲେ। ନିଜ ଗୋଡ଼ରେ ନିଜେ ଠିଆ ହେବାକୁ ଚେଷ୍ଟାକଲେ। ହେଲେ ଆଜିଯାଏଁ ବିଧବା ବିବାହ ପାଇଁ ସମାଜ ପ୍ରସ୍ତୁତ ହେଲାଣିକି? ନିଜେ ଝିଅଟି ବି ଦ୍ୱିତୀୟ ବିବାହ ପାଇଁ ସାଧାରଣତଃ ନିଜ ମନକୁ ସଜାଡ଼ି ପାରିଛିକି? ପୁଅମାନେ ମଧ୍ୟ ଆଗ୍ରହ ଦେଖାଇ ବିଧବାମାନଙ୍କୁ ସ୍ତ୍ରୀର ମର୍ଯ୍ୟଦା ଦେବା ବା ବାପାମା ମାନେ ଏଭଳି ବୋହୂକୁ ସ୍ୱୀକୃତି ଦେବା ନିମନ୍ତେ ମାନସିକ ପ୍ରସ୍ତୁତ ହେଲେଣିକି? ସେହି ନାରୀଟି ଯେତେବର୍ଷରେ ବିଧବା ହେଉନା କାହିଁକି ଯାଏ ଆସେ ନାହିଁ। ତାର ପୁନର୍ବିବାହ କଥା ଆମ ସମାଜପତିମାନେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରନ୍ତି ନାହିଁ। କିନ୍ତୁ ସ୍ତ୍ରୀ ମରିବାର ପରଦିନ ଝିଅ ଠିକ ହେଇଯାଏ ପୁରୁଷଟି ପାଇଁ। ସେଥିରେ କାହାରି ଆପତ୍ତି ଉଠେ ନାହିଁ। ଯେତେ ପିଲାର ବାପ ହେଉ ବା ଯେତେ ବୟସ ହେଉ ସେଥିରେ କାହାରି ଯାଆ ଆସ ନାହିଁ। କାହିଁକିନା ପୁରୁଷର ଆଧିପତ୍ୟ ଆବହମାନ କାଳରୁ ରହି ଆସିଛି। ତେବେ ପରିବର୍ତ୍ତନ ସ୍ରୋତରେ ବିଧବାର ପୁନର୍ବିବାହ କଥା ଚିନ୍ତା କରାଯାଇଛି। ଯେଉଁମାନେ ଇଚ୍ଛୁକ, ବିଶେଷକରି ବାଲ୍ୟାବସ୍ଥାରୁ ବିବାହ ପ୍ରଚଳିତ ଥିବାରୁ ଯେଉଁମାନେ ଅଳ୍ପ ବୟସରୁ ବିଧବା ହେଇ ଯାଉଥିଲେ ସେମାନଙ୍କର ପୁନର୍ବିବାହ କଥା ମହାତ୍ମାଗାନ୍ଧୀ, ରାଜା ରାମମୋହନ ରାୟ, ବିଖ୍ୟାତ ଔପନ୍ୟାସିକ ଶରତଚନ୍ଦ୍ର ପ୍ରଭୃତି ଚିନ୍ତା କରିଥିଲେ। ସେତେବେଳେ ଏଭଳି ଏକ ମତାମତ ଉପରେ ପ୍ରବଳ ଜନପ୍ରତିକ୍ରିୟା ପ୍ରକାଶ ପାଇଥିଲା। ଏହା ଆମର ରୂଢ଼ିବାଦୀ ପରମ୍ପରା ମୂଳରେ କୁଠାରାଘାତ ସ୍ୱରୂପ ବୋଲି ଅନେକ ବିରୋଧ କରିଥିଲେ। ରାଜା ରାମମୋହନ ରାୟ ସତୀପ୍ରଥା ଭଳି ଏକ ଘୃଣ୍ୟପ୍ରଥା ପାଇଁ ସାରା ଭାରତରେ ଆଲୋଡ଼ନ ସୃଷ୍ଟି କରିଥିଲେ। ଏଭଳି ଜଘନ୍ୟ, ନିଷ୍ଠୁର ବିଧି ଯେ ମଣିଷ ଦ୍ୱାରା ପ୍ରଣୀତ ଏ ବିଶ୍ୱାସ ଆଣିଦେବାରେ ସେ ସଫଳ ହେଇଥିଲେ। ପୁଣି ଏଭଳି ବିଧବାମାନଙ୍କର ପୁନର୍ବିବାହ ସଂପର୍କରେ ଚିନ୍ତା କରିଥିଲେ।

ଏ ପରିପ୍ରେକ୍ଷୀରେ ବିଧବା ନାରୀ ଏବଂ ନିର୍ଯ୍ୟାତିତା ନାରୀମାନଙ୍କ ପାଇଁ ମହାତ୍ମାଗାନ୍ଧୀ ଯେଉଁ କେତୋଟି ସୁଚିନ୍ତିତ ମତାମତ ଦେଇଥିଲେ ଏଠାରେ ତାହାକୁ ସ୍ମରଣ କରାଯାଇପାରେ। ସେ କହିଥିଲେ ପୁରୁଷର ସ୍ତ୍ରୀ ଯଦି ମୃତ୍ୟୁ ବରଣ କଲାପରେ ସେ ପୁଣିଥରେ ବିବାହ ହେବାକୁ ଚାହେଁ ତେବେ ବିଧବା ବାହା ନ ହେବ କାହିଁକି? ବିଧବାର ବିବାହ ଆଇନ ସଙ୍ଗତ ହେବା ଦରକାର। ଯେତେକ ସାନସାନ ଚାକିରି ସେ ସବୁ ବିଧବାମାନଙ୍କୁ ବା ନିର୍ଯ୍ୟାତିତା ନାରୀମାନଙ୍କୁ ମିଳିବା ଦରକାର। ତଦ୍ୱାରା ସେମାନଙ୍କର ଅର୍ଥନୈତିକ ଉନ୍ନତି ଘଟିବ। ଗୋଟିଏ ସ୍ତ୍ରୀ ଲୋକ ବିଧବା ହୋଇଗଲା ପରେ ସେ ଯଦି ବିବାହ କରିବାକୁ ଚାହେଁ ଓ ପାତ୍ର ମିଳନ୍ତି ତେବେ ବାପାମା'ଙ୍କର କର୍ତ୍ତବ୍ୟ ହେଲା ଝିଅକୁ ବାହାଦେବା। ଯଦି ତାର ଅଭିଭାବକମାନେ ଏହା ନ କରନ୍ତି, ତେବେ ଆଇନତଃ ସେମାନେ ଦଣ୍ଡ ପାଇବେ। ତାଛଡା ଅବହେଳିତା, ନିର୍ଯ୍ୟାତିତା ନାରୀମାନଙ୍କୁ ବିବାହ କରିବାକୁ ଇଚ୍ଛୁକ ପାତ୍ରମାନଙ୍କୁ ସରକାର ଚାକିରି ଏବଂ ଉପଯୁକ୍ତ ଥଇଥାନର ବ୍ୟବସ୍ଥା ପ୍ରଥମେ ଯୋଗାଇ ଦେବା ଉଚିତ।

କିନ୍ତୁ ଗାନ୍ଧୀଜୀଙ୍କର ଆଦର୍ଶ ବା ମତାମତ କିଛି ବି ଏଯାଏଁ ସଂପୂର୍ଣ୍ଣ ଗ୍ରହଣୀୟ ହେଇ ପାରିନାହିଁ। ରାଜା ରାମମୋହନ ରାୟ, ମାଲୱାରୀ, ଲଡ଼ ଉଇଲିୟମ ବେଣ୍ଟିକ ସମସ୍ତେ ଏହା ଉପରେ ଚିନ୍ତାକରିଥିଲେ।

ବଙ୍ଗଳାର ପ୍ରଖ୍ୟାତ ଔପନ୍ୟାସିକ ଶରତଚନ୍ଦ୍ର ମଧ୍ୟ ବିଧବାମାନଙ୍କର ପୁନର୍ବିବାହକୁ ନେଇ ବହୁ ଉପନ୍ୟାସ ଲେଖିଥିଲେ। ତାଙ୍କର ଉପନ୍ୟାସ ଗୁଡ଼ିକରେ ବିଧବା, ନିର୍ଯ୍ୟାତିତା, ବେଶ୍ୟା, ଅସହାୟା ନାରୀମାନେହିଁ ମୁଖ୍ୟ ଚରିତ୍ର ହେଇଛନ୍ତି। ଏସବୁ ସେ କଳ୍ପନାରୁ ଲେଖି ନାହାନ୍ତି।

ବଙ୍ଗାଳିମାନଙ୍କର ଜୀବନ ଓ ତତ୍‌କାଳୀନ ସମାଜକୁ ହିଁ ସେ ଅବିକଳ ଭାବରେ ରୂପାୟିତ କରିଛନ୍ତି। ସେ ସମୟରେ ଅତି ଅଳ୍ପ ବୟସର ଝିଅମାନଙ୍କୁ ପ୍ରଭାବଶାଳୀ ଜମିଦାର, ପ୍ରତିପତ୍ତି ସଂପନ୍ନ ପୁରୁଷମାନେ ବିବାହକରି କେମିତି ଅଳ୍ପଦିନରେ ବିଧବା କରି ଚାଲିଯାଉଥିଲେ ଓ ସାରାଜୀବନ ସେମାନେ ବଙ୍ଗାଳି ପରିବାରରେ କେମିତି ତୁଛ, ଅବହେଳିତ ଜୀବନ କଟାଉଥିଲେ ଏକଥା ତାଙ୍କୁ ବ୍ୟଥିତ କରିଥିଲା। ଏମିତିକି ଅନେକ ଆଦୌ ଶାଶୁଘରକୁ ନଯାଇ ବି ବିଧବା ହୋଇ ଯାଉଥିଲେ ଏବଂ ସାରାଜୀବନ ଥାନଲୁଗା ପିନ୍ଧି, ନିରାମିଷ ଖାଇ ଘରର ଚାକରାଣୀ ସାଜୁଥିଲେ। ଏସବୁ ଲେଖକ ଶରତଚନ୍ଦ୍ରଙ୍କ ମନରେ ଖୁବ୍ ଆଘାତ କରିଥିଲା। ଏମାନେ ପୁରୁଷଛାଇ ପଡ଼ିଲେ ଅପବିତ୍ର ହୋଇଯିବେ ବୋଲି ଗୃହବନ୍ଦୀ ରଖିଲାଭଳି ବନ୍ଦ କରାଯାଉଥିଲା। ସେମାନଙ୍କର ସ୍ୱପ୍ନଦେଖା ସମୟରେହିଁ ଜୀବନ ନିଷ୍ଠୁର, ଧୂସର ପାଲଟି ଯାଉଥିଲା। ସ୍ୱାମୀ କଣ ସେମାନେ ଜାଣିବା ଆଗରୁ ବିଧବା ହେଉଥିଲେ। ଶରତଚନ୍ଦ୍ରଙ୍କର ବିଖ୍ୟାତ ଉପନ୍ୟାସ 'ଚରିତ୍ରହୀନ' ଯେତେବେଳେ ପ୍ରକାଶ ପାଇଲା ଏଥି ପାଇଁ ନୈଷ୍ଠିକ ବଙ୍ଗାଳିମାନେ ତାଙ୍କ ଉପରେ ଏକପ୍ରକାର ଆକ୍ରମଣ ଆରମ୍ଭ କରିଦେଇଥିଲେ। କେତେକ ନିଆଁପାଣି ବାରଣ କରିବାକୁ ବାହାରିଥିଲେ। ଜାତିପ୍ରଥାକୁ କୁସଂସ୍କାର କହିବା ଓ ବିଧବାକୁ ବିବାହ କରାଇବାର ସପକ୍ଷରେ ସେ ମତାମତ ଦେଇଥିବାରୁ ସମାଜପତିମାନେ ଆପତ୍ତି କରିଥିଲେ। ସେମାନଙ୍କ ମତ ଥିଲା ଯେଉଁ ପରିବାରରେ ବିଧବା ନାହିଁ ବା ବିଧବା ନ ରହିବେ ସେ ପରିବାରରେ ସଦାଚାର ରହିବ କେମିତି ?ଦେବସେବା ହେବ କେମିତି ? ତେଣୁ ଗୃହସ୍ଥାଶ୍ରମରେ ବିଧବାର ଆବଶ୍ୟକତା ରହିଛି। ଏହି ବିଧବା ନାରୀ ହେଲା ସ୍ୱୟଂ ଭଗବାନଙ୍କର ଅପୂର୍ବ ବରଦାନ। ଆହା! ଈଶ୍ୱରଙ୍କର ଏ ବିଧବା ନାରୀ କି ସୁନ୍ଦର, ଚମତ୍କାର, ପବିତ୍ର ସୃଷ୍ଟି ସତରେ! ଏଭଳି ନାରୀ ପୁରୁଷର ଛାୟା ସ୍ପର୍ଶରେ ହିଁ କଳଙ୍କିନୀ, ଅପବିତ୍ର ହୋଇଯାଏ। ବିଧବା ବିବାହ କଲେ ସାତପୁରୁଷ ପାଣି ପାଇବେନି, ନର୍କରେ ପଡ଼ିବେ। ଶରତଚନ୍ଦ୍ର ଏହିଭଳି ପୀଡ଼ିତା ନାରୀମାନଙ୍କର ଉଦ୍ଧାର ପାଇଁ କଲମ ଚାଳନା କରିଥିବାରୁ ତାଙ୍କୁ ସେ ସମୟର ନିର୍ଯ୍ୟାତିତା ନାରୀମାନେ ଭଗବାନଭଳି ପୂଜା କରୁଥିଲେ, ଭକ୍ତି ପାଉଥିଲେ। ତେଣୁ ତାଙ୍କର ଜୀବନୀ ଉପରେ ଗବେଷଣାତ୍ମକ ସନ୍ଦର୍ଭ ଲେଖିଥିବା ପ୍ରଖ୍ୟାତ ହିନ୍ଦୀ ସାହିତ୍ୟିକ ବିଷ୍ଣୁ ପ୍ରଭାକର ବହିର ନାଁ ଦେଇଛନ୍ତି "ଆୱାରାମସିହା" ଓ ମୁଖବନ୍ଧରେ ଯଥାର୍ଥରେ ତାଙ୍କୁ କହିଛନ୍ତି— "ମେଁ ୟହ ବତାନା ଚାହତା ଥା କୀ କୈସେ ଏକ୍ ଆୱାରା ଲଡ଼କା ଅନ୍ତ ମେଁ ପୀଡ଼ିତ ମାନବତୋ କା ମସିହା ବନ୍ ଗୟା। ଆୱାରା କେ ସାମ୍‌ନେ ଦିଶା ନହୀଁ ହୋତୀ। ଜିସ୍ ଦିନ୍ ଉସେ ଦିଶା ମିଲ୍ ଜାତୀ ହେ ଉସୀ ଦିନ୍ ୱହ ମସିହା ବନଯାତା ହେ''। ପୁନଶ୍ଚ ୧୮୨୯ ମସିହାରେ ସତୀପ୍ରଥା ରୋକିବା ପାଇଁ ଯେଉଁ "Child Marriage Act"ଆଇନ ପ୍ରଣୟନ ହୋଇଥିଲା ସେଥିରେ ଯୁବତୀବିଧବାଙ୍କ ପାଇଁ କେତୋଟି ନୂଆ ସମସ୍ୟା ଦେଖା ଦେବାରୁ ସେମାନଙ୍କୁ ପୁନର୍ବିବାହ କରାଇବାର ମତ ପ୍ରକାଶ ପାଇଥିଲା। ତେଣୁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ମାଧ୍ୟମରେ ୧୮୫୬ ରେ The Hindu Widow Remarriage Act ପାସ୍ ହୋଇଥିଲା। ପୁଣି ୧୮୭୨ରେ Special Marriage Act ପାସ୍ ହେଲା। ନିଜେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ହିନ୍ଦୁ ବିବାହ ଆଇନ ୧୮୫୬ ଅନୁସାରେ ଜଣେ ବିଧବାଙ୍କୁ ବିବାହ କରିଥିଲେ।

ଆମ ସମାଜରେ ଏଯାଏଁ ଏହା ଏକ ପ୍ରଥା ପାଲଟି ଯାଇନାହିଁ। ଯେଉଁ କେତେଜଣ ବିବାହ କରୁଛନ୍ତି ସେମାନେ ବିଭିନ୍ନ ପ୍ରକାର ସାମାଜିକ ପ୍ରଶ୍ନର, ନିର୍ଯ୍ୟାତନାର ଶିକାର ହେଉଛନ୍ତି। ଯାହାଫଳରେ ଇଚ୍ଛାକରୁଥିବା ନାରୀମାନେ ନୀରବ ରହୁଛନ୍ତି। ପ୍ରଖ୍ୟାତ ଔପନ୍ୟାସିକା ଆଶାପୂର୍ଣ୍ଣା

ଦେବୀଙ୍କ ଜ୍ଞାନପୀଠ ପୁରସ୍କାର ଉପନ୍ୟାସ "ପ୍ରଥମ ପ୍ରତିଶ୍ରୁତି"ରେ ଏଭଳି ଅନେକ ଚରିତ୍ର ରହିଛି। ଏ ଉପନ୍ୟାସରେ ସେ ବିଧବା ନାରୀର କରୁଣ କାହାଣୀ ଓ ନାରୀଶିକ୍ଷା ଉପରେ ବିଶେଷ ଅଲୋକପାତ କରିଛନ୍ତି। ତତ୍‌କାଳୀନ ସମାଜକୁ ସମାଲୋଚନା କରିଛନ୍ତି। ଏମିତିକି ସେ ସମୟରେ ଥାଳିରେ ବସାଇ ମଧ୍ୟ ପୁଅଝିଅକୁ ବିବାହ କରିଦିଆ ଯାଉଥିଲା। "ଅଗ୍ନିପରୀକ୍ଷା" ଉପନ୍ୟାସରେ ଆଶାପୂର୍ଣ୍ଣା ଦେବୀ ଏହାର ଜୀବନ୍ତ ଚିତ୍ର ଦେଇଛନ୍ତି।

ଆମ ଓଡ଼ିଆ ଭାଷାରେ ସ୍ୱର୍ଗତ ନନ୍ଦକିଶୋର ବଳ ତାଙ୍କର "କନକଲତା" ଉପନ୍ୟାସରେ ଏହି ସମସ୍ୟାଟିକୁ ଉଠାଇଥିଲେ ହେଁ କଲମରେ ବିଧବା ବିବାହ କରିବାକୁ ସାହସ କରିପାରି ନାହାନ୍ତି। ଯାହାଫଳରେ ବିବାହ କରିବାକୁ ରାଜିଥିବା ନାୟକ ପହଁଞ୍ଚିଲାବେଳକୁ ସେ ନାୟିକା (ବିଧବା) କୁ ମାରି ଦେଇଛନ୍ତି। ବଡ଼ ସାହିତ୍ୟିକ, ସମାଜସେବକ ଏ ସଂପର୍କରେ ଚିନ୍ତାକରିଛନ୍ତି ସତ କିନ୍ତୁ ଆଜିଯାଏଁ ଏହା ସଂପୂର୍ଣ୍ଣ ସମ୍ଭବ ହେଇ ପାରି ନାହିଁ। ଆମର ରକ୍ଷଣଶୀଳ ପରମ୍ପରାବାଦୀ ମନ ଯେ ଏହାର କାରଣ, ଏକଥା ଅସ୍ୱୀକାର କରି ପାରିବୁ ନାହିଁ। ପିଲାମାନେ ବଡ଼ହେବା ସତ୍ତ୍ୱେ ଉତ୍ତୀର୍ଣ୍ଣ ଯୌବନରେ ବାପାଟି ଯଦି ବିବାହ କରିପାରେ ତେବେ ପ୍ରଥମ ଯୌବନରେ ମା' ହେବାର ଗୌରବ ଲାଭ କରିବା ଆଗରୁ ଅଥବା ଛୋଟପିଲାଥିବା ବେଳେ ବିଧବା ହେଇ ଯାଇଥିବା ସ୍ତ୍ରୀ ଜଣକ କାହିଁକି ବାହା ହେଇ ପାରିବନି? ଅବଶ୍ୟ ପୁଅ କି ଝିଅକୁ ବାଧ୍ୟ କରା ଯାଇ ପାରିବନି। ସେମାନେ ନିଜ ଇଚ୍ଛାରେ ହିଁ ଏହି କୁସଂସ୍କାର ଭାଙ୍ଗିବା ନିମନ୍ତେ ଆଗେଇ ଆସିବା ଦରକାର। ଏଥି ପାଇଁ କିନ୍ତୁ ଲୋଡ଼ା ଏକ ସୁସ୍ଥ, ଆଦର୍ଶବାଦୀ, ବିଚାରଶୀଳ ମନ। ମାନସିକ ପ୍ରସ୍ତୁତି ନଥିଲେ ଏଭଳି ବିବାହ କେବେ ସମ୍ଭବ ହୋଇ ପାରିବନି। ସମ୍ଭବ ହେଲେହେଁ ସଫଳ ହେଇ ପାରିବନି। ତା ଛଡ଼ା ବିବାହ ବି ଏକ ପିଲା ଖେଳ ନୁହେଁ ଯେ ଭାଙ୍ଗିଦେଇ ଗଢ଼ି ହେବ।

ପ୍ରଶ୍ନ ହେଲା ପୁରୁଷର ଦ୍ୱିତୀୟ କି ତୃତୀୟ ବିବାହ ପାଇଁ ଯେତେବେଳେ ପୁଅଟିକୁ ସହଜରେ ପାତ୍ରୀ ମିଳିଯାଉଛି, ସେତେବେଳେ ଝିଅଟିର ଦ୍ୱିତୀୟ ବିବାହ ନିମନ୍ତେ ପାତ୍ରମାନେ ପଛେଇ ଯାଉଛନ୍ତି କାହିଁକି? କାହିଁକି ସେମାନେ କୁସଂସ୍କାର ବା କୁପରମ୍ପରାରୁ ମୁକ୍ତ ହୋଇ ପାରୁନାହାନ୍ତି?

କେବଳ ସାହିତ୍ୟ ମାଧ୍ୟମରେ ବା ଚଳଚ୍ଚିତ୍ରରେ ଏଭଳି ଏକ ଆଦର୍ଶ ତିଆରି କରିଦେବା ସହଜ। କିନ୍ତୁ ବାସ୍ତବ ରୂପଦେବା କେବେ ସହଜ ହେଇଛି କି? ଯେଉଁ ସାହିତ୍ୟିକମାନେ କଲମ ମୁନରେ, ଯେଉଁ ସମାଜ ସେବକ/ସେବିକାମାନେ ଭାଷଣ ମାଧ୍ୟମରେ ଏହା ସପକ୍ଷରେ ସ୍ଲୋଗାନ ଦେଇଛନ୍ତି ବା ଯେଉଁ ଅଭିନେତା ଅଭିନେତ୍ରୀମାନେ ଏହି ଘଟଣା ଉପରେ ଏତେ ବାସ୍ତବ, ଜୀବନ୍ତ ଅଭିନୟ କରି ଲକ୍ଷଲକ୍ଷ ଦର୍ଶକଙ୍କୁ ମୁଗ୍ଧକରି ଦେଇଛନ୍ତି ସେମାନେ ତାଙ୍କ ବ୍ୟକ୍ତିଗତ ଜୀବନରେ, ପରିବାରରେ ବା କୁଟୁମ୍ବ, ବନ୍ଧୁବାନ୍ଧବଙ୍କ ଭିତରେ ଏହାକୁ ପ୍ରୟୋଗ କରିବା, ପ୍ରଚଳନ କରିବାକୁ ଚେଷ୍ଟା କରିଛନ୍ତି କି? ମୋର କହିବା କଥାହେଲା ଯେ କିଛି କରିବା ଅପେକ୍ଷା ଆମେ ସମସ୍ତେ ବେଶି କହିବା ଓ ଆଦର୍ଶର ପ୍ରଚାର ଭିତରେ ସୀମାବଦ୍ଧ ହୋଇ ରହିଯାଉଛୁ। ଆମ ଭିତରେ ଯେତେଦିନ ପର୍ଯ୍ୟନ୍ତ ମାନବିକ ପ୍ରତିକ୍ରିୟା ବା ବିଚାରଶୀଳତା ଜନ୍ମ ନେଇ ନାହିଁ ସେତେ ଦିନ ପର୍ଯ୍ୟନ୍ତ ଆମେ ନିରୀହା ଝିଅମାନଙ୍କର ଜୀବନକୁ ଏଭଳି ଭାବରେ ଅଭିଶପ୍ତ, ନଷ୍ଟ କରି ଚାଲିଥିବୁ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ।



# ଓଡ଼ିଆ ଝିଅ

ଭଦ୍ରବ୍ୟକ୍ତି ଜଣକ ସଂପୂର୍ଣ୍ଣ ବିଦେଶୀ। ଅନ୍ୟ ଦେଶର ବାସିନ୍ଦା ହୋଇଥିବେ ହେଁ ତାଙ୍କର ଭାରତ ପ୍ରତି କାହିଁକି କେଜାଣି ସମ୍ମାନ, ଶ୍ରଦ୍ଧା ରହିଥିଲା। ବିଶେଷକରି ଜଗନ୍ନାଥ ଦେଶର ଚଳଣି ଓ ଓଡ଼ିଆ ଘରର ବେଶଭୂଷା ତାଙ୍କୁ ମୁଗ୍ଧ କରିଥିଲା।

ଆପଣ ଆଶ୍ଚର୍ଯ୍ୟ ହେଉଥିବେ ଯେ ଜଣେ ବିଦେଶୀ କିପରି ଓଡ଼ିଆ ଘର କଥା ଜାଣିଲେ ? ଅସଲ ହେଲା ଭଦ୍ରବ୍ୟକ୍ତିଙ୍କର ଜଣେ ଓଡ଼ିଆ ବନ୍ଧୁ ଥିଲେ। ଦୁହିଁଙ୍କ ଭିତରେ ସଂପର୍କ ଘନିଷ୍ଠ ଥିଲା। ଓଡ଼ିଆ ବନ୍ଧୁଜଣକ ବିଦେଶ ଗଲେ ତାଙ୍କ ଘରେ ରହୁଥିଲେ। ଏହି ସୂତ୍ରରୁ ବିଦେଶୀ ଜଣକ କିଛିଟା ଓଡ଼ିଆ ବି ଶିଖି ଯାଇଥିଲେ ଓ ଖଣ୍ଡିଆ ଓଡ଼ିଆ ଭାଷା କହୁଥିଲେ।

ପ୍ରତିଥର ଓଡ଼ିଶାରୁ ଗଲାବେଳେ ଓଡ଼ିଆବନ୍ଧୁ ଜଣକ ତାଙ୍କ ବିଦେଶୀ ବନ୍ଧୁ ପାଇଁ କିଛି ବହି ଉପହାର ଦେଉଥିଲେ। କେବେ କେବେ ଓଡ଼ିଆଙ୍କ ଗର୍ବ ପିପିଲି ଚାନ୍ଦୁଆ କି ଏମିତି ସମ୍ବଲପୁରୀ ବସ୍ତ୍ର କିଛି ଯାହା ଭିତରେ ଓଡ଼ିଆର କଳାକୃତି ରୂପାୟିତ ହେଇ ଉଠୁଥିଲା। ଯେଉଁ ସବୁ ବହି ଉପହାର ଦେଉଥିଲେ ସେହି ବହିଗୁଡ଼ିକ କେବଳ ଧର୍ମ ପୁସ୍ତକ ଭିତରେ ସୀମିତ ହୋଇ ରହିନଥିଲା। ଓଡ଼ିଆ ଘରର ପର୍ବ ପର୍ବାଣୀ, ପିଠାପଣା, ଝୋଟିଚିତା, ଓଷାବ୍ରତ, ରନ୍ଧାବଢ଼ା ସହିତ ଓଡ଼ିଆନାରୀର ସଂସ୍କୃତି ପ୍ରୀତି, ବୀରତ୍ୱ, ନୃତ୍ୟକଳା, ସଂଗୀତ ପ୍ରଭୃତି ମଧ୍ୟ ରହିଥିଲା। ଓଡ଼ିଆ ଗୃହିଣୀଙ୍କର ଆତିଥ୍ୟର ବି କିଛି ଉଲ୍ଲେଖ ଥିଲା। ଓଡ଼ିଶାର ସଂସ୍କୃତି ଓ ଜଗନ୍ନାଥଙ୍କ ପ୍ରେମରେ ବିଦେଶୀ ଜଣକ ପଡ଼ିଯାଇଥିଲେ। ଏସବୁ ପୁସ୍ତକ ଅଧ୍ୟୟନ କରି ଓଡ଼ିଶା ଓ ଭାରତ ସଂପର୍କରେ ତାଙ୍କର ଏକ ମୋଟାମୋଟି ଧାରଣା ହେଇ ଯାଇଥିଲା।

ଓଡ଼ିଆ ବନ୍ଧୁ ତାଙ୍କୁ ବାରମ୍ବାର ନିମନ୍ତ୍ରଣ କରିଥିଲେ ଥରେ ଓଡ଼ିଶାକୁ ଆସି ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ଦେଖି ଯିବାକୁ। ବିଦେଶୀ ବନ୍ଧୁଙ୍କ ପତ୍ନୀ ମଧ୍ୟ ଜଗନ୍ନାଥଙ୍କ ବିଷୟରେ ଶୁଣିଶୁଣି ନିଜର ଅଜାଣତରେ କାଳିଆର ଭକ୍ତ ପାଲଟି ଯାଇଥିଲେ।

ବିଦେଶୀ ଭଦ୍ରବ୍ୟକ୍ତି ଜଣକ ଓଡ଼ିଶା ଆସିଲେ। ଓଡ଼ିଶାରେ ଯେଉଁ କେଇଟି ଦିନ ସେ ରହିଲେ ତାଙ୍କୁ ଓଡ଼ିଶାର ସବୁକିଛି ଭଲ ଲାଗିଲା। ବିଶେଷକରି ଓଡ଼ିଆ ଝିଅ ବୋହୂଙ୍କର ଶାଢ଼ିପିନ୍ଧିବା, ଓଢ଼ଣାଦେବା, ଲାଜଲାଜ ହସ ସହିତ ସରଳ ଲାବଣ୍ୟ ତାଙ୍କୁ ମୁଗ୍ଧ କଲା। ତା ସହିତ ଓଡ଼ିଆ ଘରର ପିଠାପଣା ସେ ଜୀବନରେ ପ୍ରଥମ ଥର ଖାଇ ଖୁବ୍ ତୃପ୍ତ ହେଲେ। କେକ୍, ସୁପ୍,ଚିକେନ୍ ଖାଇବାରେ ଅଭ୍ୟସ୍ତ ବିଦେଶୀ ଜଣକ ଓଡ଼ିଆ ଘରର ପୂରଦିଆ ପିଠା ଖାଇ ସାରିଲା ପରେ ପ୍ରଶଂସାରେ ଶତମୁଖ ହୋଇଉଠିଲେ ଓ ବନ୍ଧୁଙ୍କ ଗୃହିଣୀଙ୍କୁ ଗୁଡ଼ାଏ ଧନ୍ୟବାଦ ଦେଲେ।

ଓଢ଼ଣା ଦେଇ ଝିଅ ବୋହୂମାନେ ପୋଖରିକୁ ପାଣି ଆଣି ଗଲାବେଳେ ତାଙ୍କ ଗୋଡ଼ରେ ପିନ୍ଧିଥିବା ପାଉଞ୍ଜି ସବୁ ଯେତେବେଳେ ରୁଣୁଝୁଣୁ ଶବ୍ଦ କରୁଥିଲା, ବିଦେଶୀ ଜଣକ ସେ ଶବ୍ଦର ମାଦକତାରେ ହଜି ଯାଉଥିଲେ। ସେମାନଙ୍କର ଗଜଗାମିନୀ ଭଳି ଚାଲି ଦେଖି ସେ ନିଜ ବନ୍ଧୁଙ୍କ ପ୍ରଦତ୍ତ ଉତ୍ତଙ୍କ ପୁସ୍ତକରୁ ପଢ଼ିଥିବା ଉପମାସବୁକୁ ମନେ ପକାଉ ଥିଲେ। ସବୁଠୁ ଭଲ ଲାଗିଲା

ତାଙ୍କୁ ଆତିଥେୟତା। ଓଡ଼ିଆ ନାରୀ ଯେ ଖୁବ୍ ଅତିଥିପରାୟଣ ଏହା ସେ ହୃଦ୍‌ବୋଧ କଲେ। ତାଛଡ଼ା ସନ୍ଧ୍ୟାବେଳେ ତୁଳସୀ ମୂଳରେ ଓଡ଼ିଆ କୂଳବଧୂ ସଞ୍ଜବତୀ ଜାଳିବା, ଛାଢ ପୁରାଣ ପଢ଼ିବା ପ୍ରଭୃତି ତାଙ୍କୁ ଆକୃଷ୍ଟ କରିଥିଲା। ସେମାନଙ୍କର ବ୍ୟବହାରରେ ନମ୍ରତା, କଥାରେ ମିଠାହିଁ ବିଦେଶୀ ଜଣଙ୍କୁ କିଣି ନେଇଥିଲା।

ଓଡ଼ିଶା ମାଟି ଛାଡ଼ିଲା ବେଳେ ପୁଣିଥରେ ସେ ପ୍ରତିଶ୍ରୁତି ଦେଇଥିଲେ ଆଉଥରେ ନିଶ୍ଚୟ ଓଡ଼ିଶା ଆସିବେ। ଶ୍ରୀଜଗନ୍ନାଥଙ୍କ ପାଟଡୋରି ଲାଗିଲେ କିଏ ନ ଆସି ରହି ପାରିବ ଯେ !

ସତକୁ ସତ ଅନେକ ବର୍ଷ ପରେ ତାଙ୍କୁ ଶ୍ରୀଜଗନ୍ନାଥଙ୍କ ପାଟଡୋରି ଲାଗିଲା। ସେତେବେଳକୁ ସେ ଖୁବ୍ ବୟସ୍କ ହୋଇ ଯାଇଥିଲେ। ତାଙ୍କର ଓଡ଼ିଆ ବନ୍ଧୁ ଜଣକ ଏ ଭିତରେ ଇହଲୀଳା ସମ୍ବରଣ କରିଥିଲେ। ତାଙ୍କ ପୁଅଝିଅ ସବୁ ଓଡ଼ିଶା ବାହାରେ ରହୁଥିବା ଯୋଗୁଁ ଭଦ୍ରବ୍ୟକ୍ତିଙ୍କୁ ପୁରୀର କୌଣସି ଏକ ହୋଟେଲରେ ରହିବାକୁ ପଡ଼ିଲା।

ଏ ଭିତରେ ଓଡ଼ିଶା ଯେ ଏତେ ବଦଳି ଯାଇଥିବ ତାଙ୍କର ଧାରଣା ନଥିଲା। ଲମ୍ବା ପକ୍‌କା ସଡ଼କଠାରୁ ଆଧୁନିକ କୋଠା, ରେଷ୍ଟୋରାଁ ପ୍ରଭୃତି ସହରକୁ ବଦଳାଇ ଦେଇଥିଲା। ଓଡ଼ିଶାର ପ୍ରଗତି ଦେଖି ସେ ଖୁସି ହେଉଥିଲେ। କିନ୍ତୁ ଓଡ଼ିଶାରେ ଜଣେ ହେଲେ ଖାଣ୍ଟି ଓଡ଼ିଆଙ୍କୁ ବିଦେଶୀଜଣକ ଦେଖିପାରୁ ନଥିଲେ। ଖାଦ୍ୟପାନୀୟ, ବେଶପୋଷାକ ସବୁ କିଛି ବଦଳି ଯାଇ ଥିଲା। ଓଡ଼ିଶୀ ନୃତ୍ୟ ବଦଳରେ ବ୍ରେକ୍‌ଡ୍ୟାନସ୍, ଭଜନ ସ୍ଥାନରେ ପପ୍ ଗୀତ ସବୁ ପ୍ରାଧାନ୍ୟ ବିସ୍ତାର କରିଥିଲା। ବିଶେଷକରି ଓଡ଼ିଆ ଝିଅମାନେ ହିଁ ଯେମିତି ଅଧିକ ବଦଳି ଯାଇଥିଲେ। ଆଗ ଅପେକ୍ଷା ସେମାନେ ସ୍ମାର୍ଟ, ଆଧୁନିକା ହେବାର ଦେଖି ଏ ଦେଶରେ ଝିଅମାନେ ଯେ ଆଗେଇଲେଣି ଭାବି ସେ ମୁଗ୍ଧ ହେଲେ। ତେବେ ଝିଅମାନେ ଓଡ଼ିଆ ସଂସ୍କୃତି, ମୌଳିକତା ତ୍ୟାଗ କରିବାର ଦେଖି ତାଙ୍କୁ ଏତେଟା ଭଲ ଲାଗିଲାନି। ଶାଢ଼ୀ ବଦଳରେ ସେ ଦେଖୁଥିଲେ ଅଧିକାଂଶ ସାଲଓ୍ୱାର କମିଜ୍, ମେକ୍‌ସି, ମିଡ୍‌ଡ଼ି, ପିନ୍ଧୁଛନ୍ତି। ଗୁଣ୍ଡୁଣୀହାତୀ ଭଳି ସେ ଚାଲି ବଦଳରେ ଉଗ୍ରତା ପ୍ରବେଶ କରିଛି। ନମ୍ର ବ୍ୟବହାର ନାହିଁ। ଗୁରୁଜନ ପ୍ରଭୃତିଙ୍କ ପ୍ରତି କେମିତି ଏକ ବେଖାତିର ଭାବ। ପ୍ରାକୃତିକ ଲାବଣ୍ୟ ବଦଳରେ ରୁଜ୍, ଲିପ୍‌ଷ୍ଟିକ ପ୍ରସାଧନର ଦୁନିଆ ସେମାନଙ୍କୁ ଗ୍ଲାମର ମଡେଲରେ ପରିଣତ କରିଛି। ଲମ୍ବବେଣୀ କି ଖୋସା ନାହିଁ। ବବ୍‌ବାଳ ସହ ସିନେମା ଅଭିନେତ୍ରୀଙ୍କ ଭଳି କେଶ ବିନ୍ୟାସ। ଏ ଭିତରେ ବହୁ ସଂଖ୍ୟାରେ ବିଉଟି ପାର୍ଲରର ଗଢ଼ି ଉଠିଛି। ଓଡ଼ିଆ ନାରୀମାନେ ଯେ ପ୍ରସାଧନ ଓ ରୂପ ଚର୍ଯ୍ୟା ଲାଗି ସଚେତନ ହେଲେଣି ଏହା ଭଲକଥା ନିଶ୍ଚୟ। ତେବେ ପାଶ୍ଚାତ୍ୟ ଢ଼ାଞ୍ଚାରେ ଜୀବନଶୈଳୀ ବଦଳି ଯିବାଟାକୁ ନିଜେ ପାଶ୍ଚାତ୍ୟର ଲୋକହେଇ ସେ ଆନ୍ତରିକ ଗ୍ରହଣ କରିପାରୁନଥିଲେ। ସେମାନେ ଯଦି ପାଶ୍ଚାତ୍ୟ ଢ଼ାଞ୍ଚାରେ ନିଜକୁ ପକାଇବେ ବା ପାଶ୍ଚାତ୍ୟ ସଂସ୍କୃତିକୁ ଅନୁକରଣ କରିବେ ତେବେ ବିଶ୍ୱ ଦରବାରରେ ଓଡ଼ିଆ ନାରୀ ବା ଭାରତୀୟ ନାରୀ ତାର କେଉଁ ରୂପରେ ପରିଚିତା ହେବ? ନିଜର କେଉଁ ସଂସ୍କୃତି ନେଇ ସେ ଗର୍ବ ପ୍ରକାଶ କରିବ? ଇଂରେଜମାନେ ପୃଥିବୀର ଯେ କୌଣସି କୋଣରେ ରହିଲେ ହେଁ ନିଜ ଧର୍ମ, ନିଜ ସଂସ୍କୃତିକୁ କେବେ ଜଳାଞ୍ଜଳି ଦିଅନ୍ତି ନାହିଁ। ଏହା ତାଙ୍କ ପାଇଁ ଗର୍ବ, ଗୌରବ। ଏହା ବିଶ୍ୱର ପ୍ରତି ମଣିଷ ଲାଗି ଆଦର୍ଶ ହେବା ଦରକାର ବୋଲି ଉକ୍ତ ମହାଶୟ ଅନୁଭବ କଲେ।

ଓଡ଼ିଆବନ୍ଧୁଙ୍କ ଘରେ ରହିଥିଲା ବେଳେ ଯେଉଁ କେତେଜଣ ଓଡ଼ିଆ ପରିବାରଙ୍କ ସହିତ ତାଙ୍କର ପରିଚୟ ଓ ଘନିଷ୍ଠତା ହୋଇ ଯାଇଥିଲା ସେମାନଙ୍କ ଘରକୁ ସେ ବୁଲିବାକୁ ଗଲେ।

ସେମାନଙ୍କ ଘରକୁ ଏତେବର୍ଷ ପରେ ଯାଇ ଅନୁଭବ କଲେ ଓଡ଼ିଆଙ୍କ ଆତିଥେୟତାରେ ମଧ୍ୟ ବହୁତ ପରିବର୍ତ୍ତନ ଘଟିଛି। ପିଠାପଣାରେ କେହି ଅତିଥିଙ୍କୁ ଆପ୍ୟାୟିତତି କରୁ ନାହାନ୍ତି। କେକ୍, ବିସ୍କୁଟ, ମିକ୍ସଚରେ, ଚା, କଫି ବା ଥଣ୍ଡାପାନୀୟ, ସୁପ୍, ଚିକେନ୍, କକ୍‌ଟେଲ ପ୍ରଭୃତି ହେଉଛି ବର୍ତ୍ତମାନ ଅତିଥିଙ୍କୁ ଆପ୍ୟାୟିତ କରିବାର ଉତ୍ତମ ଖାଦ୍ୟ। ଘରେ ଘରେ ଡାଇନିଂଟେବୁଲ। ରୋଷେଇ ଘରେ ଆସନ ପକାଇ ଖାଇବାର ଅଭ୍ୟାସ ମଧ୍ୟ ପୁରୁଣା ହେଇ ଯାଇଛି। ହାତେ ଓଢ଼ଣା ଦେଇ ବୋହୂମାନେ ପାଣିଆଣି ଯାଉ ନାହାନ୍ତି କି ତାଙ୍କ ପାଉଞ୍ଜି ରୁଣୁଝୁଣୁ ଶବ୍ଦ କରୁ ନାହିଁ। ପାଉଞ୍ଜି ଶବ୍ଦ କରିବା କି ପିନ୍ଧିବା ବି ପୁରୁଣାକାଳିଆ ହେଇ ଯାଇଛି। ପ୍ରସାଧନ ବା ସାଜସଜ୍ଜା ସବୁ କିଛି ବଦଳି ଯାଇଛି। କେହି ଝିଅ ବୋହୂ ଛାନ୍ଦ, ପୁରାଣ, ଧର୍ମ ପୁସ୍ତକ ଏତେଟା ଧରୁନାହାନ୍ତି। ତା ବଦଳରେ ପ୍ରସାଧନର ପତ୍ରିକା, ବିଶେଷକରି ଚଳଚ୍ଚିତ୍ର ପତ୍ରିକା ସ୍ଥାନ ପାଇଛି। ପୁରାଣ କହିଲେ କଣ ହେଇପାରେ ଏକଥା ବି ଆଧୁନିକା ଝିଅମାନେ ପଚାରୁଛନ୍ତି? ଓଡ଼ିଆ ସଂସ୍କୃତି ଯେ ବଦଳି ଯାଉଛି ଓ ତା ସହିତ ଓଡ଼ିଆ ଝିଅ ବା ଭାରତୀୟ ନାରୀ ଆସ୍ତେ ଆସ୍ତେ ପାଶ୍ଚାତ୍ୟଗାମୀ ହେଉଛି ଏ କଥାଟା ବିଦେଶୀ ଜଣଙ୍କୁ ଗ୍ରହଣୀୟ ମନେ ହେଲାନି। ଅନ୍ୟପଟେ ସେ ଖୁସି ହେଲେ ଯେ ଏ ଦେଶର ଝିଅ ବେଶ ଉଚ୍ଚଶିକ୍ଷିତା ହେଲେଣି। ସେମାନେ ଶିକ୍ଷିତା ହୋଇ କର୍ମକ୍ଷେତ୍ରରେ ପୁରୁଷଙ୍କ କାନ୍ଧ ସହିତ କାନ୍ଧ ମିଳାଇ କାମ କରିପାରୁଥିବା ଦେଖି ବେଶ୍ ଆମୋଦିତ ହେଲେ। ଯାହାହେଉ ରୋଷେଇଶାଳରୁ ବାହାରି ଆସି ସେମାନେ ବାହାର ଦୁନିଆ ଦେଖିଲେଣି, କେତେ କେତେ ସମସ୍ୟାର ସମାଧାନ କଲେଣି, ଆତ୍ମନିର୍ଭରଶୀଳା ହେବା ସଙ୍ଗେସଙ୍ଗେ ବଞ୍ଚିବା ନିମନ୍ତେ ସଂଗ୍ରାମ କରି ଶିଖିଲେଣି। ଦେଶର ପ୍ରଗତି, ହାନିଲାଭ, ରାଜନୀତି, ଅର୍ଥନୀତି ବୁଝିଲେଣି। ସାହିତ୍ୟ, ସଂଗୀତ, ନୃତ୍ୟ, କ୍ରୀଡ଼ା, ଅଭିନୟ ପ୍ରଭୃତିରେ ଅଂଶ ଗ୍ରହଣ କରି ବିଶ୍ୱଦରବାରରେ ପହଁଞ୍ଚିଲେଣି, ଏ ତ ସୌଭାଗ୍ୟର କଥା।

ହେଲେ ସେହି ଗୋଟିଏ କଥାହିଁ ତାଙ୍କୁ ଦୁଃଖ ଦେଲା। ଓଡ଼ିଆ ତାର ମୌଳିକତାକୁ ଜଳାଞ୍ଜଳି ଦେବାରେ ଅବଶୋଷ କି କୁଣ୍ଠାବୋଧ କରୁନାହିଁ। ଓଡ଼ିଆ ଝିଅ ଭିତରେ ନିଜକୁ ବିଦେଶୀ କରି ଗଢ଼ିବାର ମନୋବୃତ୍ତି ସେ ଦେଖିଲେ ସିନା କିନ୍ତୁ ନିଜକୁ ଜଣେ ଓଡ଼ିଆ ଭାବରେ ପରିଚୟ ଦେବା ପାଇଁ ଆଗ୍ରହୀ ଥିବା ଝିଅ ପୁଅ କାହାରିକୁ ସେ ଦେଖିପାରିଲେ ନାହିଁ। ବିଦେଶୀ ପୋଷାକ, ବିଦେଶୀ ଚାଲି ଚଳଣୀ, ବିଦେଶୀ ଖାଦ୍ୟ, ପାନୀୟ ଭିତରେ ସେ ଓଡ଼ିଆ ଘରେ ଓଡ଼ିଆଣୀର ବାସ୍ନା ପାଇଲେନି। କେବଳ ଅନୁଭବ କଲେ ଓଡ଼ିଆର ମୌଳିକତା ବିକ୍ରି ହୋଇ ଯାଇଛି। ତା ଉପରେ ଠିଆ ହୋଇଛି ବିଦେଶୀ ଢାଞ୍ଚାରେ ଗଢ଼ିଉଠିଥିବା ଓଡ଼ିଆ ରକ୍ତର ଏକ କୃତ୍ରିମ ପ୍ରତିମା। ସେ ପ୍ରତିମା ଭିତରେ ହଜିଯାଇଛି ସବୁ ସରଳତା, ଆତିଥେୟତା, ମଧୁର ରୂପଲାବଣ୍ୟ। ଉଗ୍ର ଆଧୁନିକତା ଓ ଶିକ୍ଷାର ଅହଂକାର ଓଡ଼ିଆ ଝିଅର ରୂପରେଖ ବଦଳାଇ ଦେଇଛି।

ପୁରୀ ସମୁଦ୍ରବେଳାରେ ଠିଆ ହେଇ ମାଳମାଳ ପୁରୁଷନାରୀଙ୍କୁ ଚାହିଁ ବିଦେଶୀ ଜଣକ ଭାବିପାରୁନାହାନ୍ତି ସେ କେଉଁଠି ଠିଆ ହୋଇଛନ୍ତି। ଏଇଟା ସତରେ ଶ୍ରୀ ଜଗନ୍ନାଥଙ୍କ ଦେଶ? ଭଦ୍ରବ୍ୟକ୍ତି ଜଣକ ଭାବୁଛନ୍ତି, ପରିବର୍ତ୍ତନ ସବୁ ଯୁଗରେ ସ୍ୱାଗତଯୋଗ୍ୟ ନିଶ୍ଚୟ। କିନ୍ତୁ ଓଡ଼ିଆ ମାଟିର, ଓଡ଼ିଆ ଝିଅର ତ ଗୋଟାଏ ନିର୍ଦ୍ଦିଷ୍ଟ ମୂର୍ତ୍ତି ରହିଛି? ଯେଉଁ ମାଟିରେ ସେ ଜନ୍ମନେଇଛି, ଯାହାର ପାଣିପବନରେ ସେ ବଡ଼ ହୋଇଛି ତାକୁ ନେଇ ଗର୍ବ କରିବାର କଣ କିଛି ନାହିଁ ତା ପାଖରେ? ଜଣେ ବଙ୍ଗାଳି ଝିଅ ଯଦି ତାର ସାହିତ୍ୟ, ଭାଷା,ସଂସ୍କୃତିକୁ ନେଇ ଗର୍ବ କରିପାରେ, ଜଣେ ଓଡ଼ିଆ ଝିଅ ତାର ପୁରାଣ, ଭାଗବତ, ଧର୍ମ, ସଂସ୍କୃତି, ପରମ୍ପରାକୁ ନେଇ

ଗର୍ବ କରିବ ନାହିଁ କାହିଁକି ? ହେଲେ ଓଡ଼ିଆଝିଅ ଭିତରେ ଯେଉଁ ପରିବର୍ତ୍ତନ ତାହା କଣ ସମଗ୍ର ଭାରତୀୟ ନାରୀର ପରିବର୍ତ୍ତନ ?

ହଁ ଆଜ୍ଞା, ବିଦେଶୀ ଜଣକ କିଛି ଭୁଲ କଥା ଭାବୁ ନ ଥିଲେ। ଯେତେ ଶିକ୍ଷିତା, ଯେତେ ଆଧୁନିକା ହେଲେ ମଧ ହୃଦୟକୁ ବିଦେଶୀ କରି ଦିଅ ନାହିଁ। ମନେରଖିବା ଉଚିତ ଯେ' ଆମ ରକ୍ତରେ ଓଡ଼ିଆ ରକ୍ତ, ଭାରତୀୟ ରକ୍ତ ପ୍ରବାହିତ। ଓଡ଼ିଶାର ପାଣିପବନରେ ବଢ଼ିଥିବା ଓଡ଼ିଆମିର ଏକ ସ୍ୱତନ୍ତ୍ର ନିଜସ୍ୱ ବାସ୍ନା ରହିଛି। ନିଜକୁ ବଡ କରି ଦେଖାଇବା ପାଇଁ ନିଜ ମାକୁ ହିଁ ସମ୍ମାନ ଦେବା ପ୍ରଥମେ ଦରକାର। ସେଥିଲାଗି ଗଙ୍ଗାଧର ମେହେର ଯଥାର୍ଥରେ କହିଥିଲେ :—

''ଉଚ୍ଚ ହେବାପାଇଁ କର ଯେବେ ଆଶା,
ଉଚ୍ଚ କର ଆଗ ନିଜ ମାତୃଭାଷା।''

ତେଣୁ ମାକୁ ଚିହ୍ନିବାକୁ ହେଲେ ନିଜକୁ ବିଦେଶୀ ନୁହେଁ, ଦେଶୀ ହେବାକୁ ହିଁ ପଡ଼ିବ। ଓଡ଼ିଆ ନାରୀର ଭାବମୂର୍ତ୍ତିକୁ ରକ୍ଷା କରିବା ନିମନ୍ତେ ନିଜକୁ ପ୍ରଥମେ ଓଡ଼ିଆ ନାରୀରେ ହିଁ ପରିଣତ କରିବାକୁ ପଡ଼ିବ। ନଚେତ୍ ଓଡ଼ିଆ ନାରୀର ମୌଳିକ ରୂପଟି ବିକଳାଙ୍ଗ ହୋଇଯିବ ସିନା, ଆପଣ କେବେ ବି ବିଦେଶିନୀ ହୋଇ ପାରିବେ ନାହିଁ। କାଉ କେବେ କୋଇଲି ହୋଇଛିକି ?

✳

# ଲେଖିକା ପତ୍ନୀ ଓ ଓଡ଼ିଆ ଲେଖିକାଙ୍କ ଅବଦାନ

ପ୍ରତିଭା ବିଦ୍ୟୁତର । ସମସ୍ତଙ୍କୁ ଏ ଆଶୀର୍ବାଦ ମିଳେ ନାହିଁ । ସ୍ତ୍ରୀପୁରୁଷ ନିର୍ବିଶେଷରେ ପ୍ରତିଭାର ବିଚାର କରାଯିବା ଦରକାର ବୋଲି ଅନେକ ସମୟରେ ସମ୍ବାଦ ପତ୍ରର ପୃଷ୍ଠାରେ ଅଥବା ସଭା ସମିତିରେ ଭାଷଣ ମାଧ୍ୟମରେ ଶୁଣିବାକୁ ମିଳେ । କିନ୍ତୁ ପ୍ରକୃତରେ ଆମ ପୁରୁଷକେନ୍ଦ୍ରିକ ସମାଜରେ ନାରୀର ପ୍ରତିଭାକୁ ପୁରୁଷର ପ୍ରତିଭା ଭଳି ଏତେ ଗୁରୁତ୍ୱ ଦିଆ ଯାଏ ନାହିଁ ଠିକ୍ ଚାକିରିଆ ଝିଅ ଭଳି । ଅର୍ଥାତ୍ ସ୍ୱାମୀସ୍ତ୍ରୀ ଏକା ପାହିଆର ଚାକିରି କରୁଥିବେ । ଦୁଇଜଣ ଏକ ସଙ୍ଗରେ ଅଫିସ୍ ବାହାରିବେ ଓ ଫେରିବେ । କିନ୍ତୁ ଯିବା ଆଗରୁ ସ୍ତ୍ରୀକୁ ହିଁ ଘରର ବାସିପାଇଟି, ପିଲାମାନଙ୍କର ଯତ୍ନ, ରନ୍ଧାବଢ଼ା, ବନ୍ଧୁବାନ୍ଧବଙ୍କ ଚର୍ଚ୍ଚା କରିବାକୁ ପଡ଼ିବ । ଏକାସାଙ୍ଗରେ ଫେରିଲାବେଳେ ଦୁଇଜଣ ସାରା କ୍ଲାନ୍ତ ହୋଇଥାନ୍ତି । କିନ୍ତୁ ସ୍ତ୍ରୀକୁ ଚା କରିବାକୁ ପଡ଼େ, ଜଳଖିଆ ତିଆରି କରିବାକୁ, ଅତିଥି ଅଭ୍ୟାଗତଙ୍କ ଚର୍ଚ୍ଚା, ଶାଶୁଶ୍ୱଶୁର, ପିଲାମାନଙ୍କର କଥା ବୁଝିବାକୁ ପଡ଼େ । ଏଠି ସ୍ତ୍ରୀ ବି ଯେ କ୍ଲାନ୍ତ ଓ ତା'ର ବିଶ୍ରାମ ଲୋଡ଼ା କେହି କଥାଟାକୁ ଗୁରୁତ୍ୱ ଦିଅନ୍ତି ନାହିଁ ।

ଲେଖିକାଟିଏର ମଧ୍ୟ ଠିକ ସେହି କଥା । ଲେଖକ ପାଇଁ ଯେଉଁ ପରିବେଶ, ସୁଯୋଗ, ସୁବିଧା ଦିଆଯାଏ, ଲେଖିକା ପାଇଁ ତାହା ନ ଥାଏ । ଏପରିକି ଲେଖିକା ଯେ ସାଧାରଣ ଗୃହିଣୀଠାରୁ ସ୍ୱତନ୍ତ୍ର ଏ କଥାଟିକୁ ଏଡ଼େଇ ଦିଆଯାଏ । ତା ଛଡ଼ା ତା'ର ସ୍ୱାଧୀନତା ମଧ୍ୟ ନ ଥାଏ । ଅବିବାହିତା ଥିଲାବେଳେ ସାହିତ୍ୟ, ସଭାସମିତିକୁ ଯିବା ପାଇଁ ଘର ଲୋକଙ୍କ ଠାରୁ ଅନୁମତି ଦରକାର ହୋଇଥାଏ । ତାଛଡା ଏ ସବୁ ସ୍ଥାନକୁ ଯିବା ପାଇଁ ସେ ସାଙ୍ଗରେ ନେବାକୁ ମଧ୍ୟ କାହାରି ସାହାଯ୍ୟ ଲୋଡ଼ି ଥାଏ । ବିବାହ କଲାପରେ ଏହା ଆହୁରି ବେଢ଼ିରେ ପରିଣତ ହୋଇଥାଏ । ଶାଶୁଶ୍ୱଶୁର, ସ୍ୱାମୀ ପ୍ରଭୃତିଙ୍କର ଇଚ୍ଛା ଅନିଚ୍ଛା ଉପରେ ତା'ର ସାହିତ୍ୟଚର୍ଚ୍ଚା ନିର୍ଭର କରେ । ସର୍ବୋପରି ଦରକାର ହୁଏ ପତିଦେବଙ୍କର ପ୍ରେରଣା ଓ ଆଗ୍ରହ । ନଚେତ ଏ ପ୍ରତିଭାଟିକକ ମରୁଭୂମିରେ ହଜି ଯାଏ । ସ୍ୱାମୀ ଯଦି ଆଗ୍ରହ ଦେଖାନ୍ତି, ପ୍ରତିଭାର ମୂଲ୍ୟ ବୁଝନ୍ତି ଏବଂ ସମୟ ସୁବିଧା କରି ବିଭିନ୍ନ ଜାଗାକୁ ନେଇ ଯାଆନ୍ତି, ଉତ୍ସାହ ଯୋଗାନ୍ତି ତାହାଲେ ଲେଖିକାଙ୍କର ପରମ ଭାଗ୍ୟ ବୋଲି କୁହାଯିବ । ଏଭଳି ଭାଗ୍ୟ ଖୁବ୍ କମ୍ ଜଣଙ୍କ କପାଳରେ ମିଳେ । ନଚେତ୍ ପ୍ରତିଭା ଜୀବନର ପର୍ଦ୍ଦା ପଛରେ ରହିଯାଏ । ଧୀରେ ଧୀରେ ଆଗ୍ରହ କମିଯାଏ । ସଂସାରର ଜଞ୍ଜାଳ ସମ୍ଭାଳୁ ସମ୍ଭାଳୁ ପ୍ରତିଭା ମଉଳି ଯାଏ ।

ତାଛଡ଼ା ସାଧାରଣ ଘରଣୀଠାରୁ ଲେଖିକା ପତ୍ନୀ ଯେ ଅଲଗା ଓ ତାଙ୍କୁ କେବଳ ଖାଇବାକୁ, ପିନ୍ଧିବାକୁ ଏବଂ ମା' ହେବାର ସୁଯୋଗ ଦେବା ଛଡା ଯେ ଆହୁରି କିଛି ସୁଯୋଗ, ସୁବିଧା ଦରକାର ଏକଥା ଅନେକ ସ୍ୱାମୀ କି ଅଭିଭାବକ ବୁଝି ପାରନ୍ତି ନାହିଁ । ସେଥିପାଇଁ କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ଲେଖା ଲେଖୁଥିଲା ବେଳେ ତାକୁ ଅଧାରେ ରଖି ଦେଇ ଚା କରିବାକୁ ପଡେ, ସ୍ୱାମୀଙ୍କର ଫର୍ମାସି ଶୁଣିବାକୁ ପଡ଼େ, ପିଲା କାନ୍ଦିଲେ ସମ୍ଭାଳିବାକୁ ପଡ଼େ । ଏସବୁରୁ ପ୍ରମାଣିତ ହୋଇଯାଏ ଲେଖାଲେଖି ଚା କି ପିଲାସମ୍ଭାଳିବା ଭଳି ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । କିନ୍ତୁ ବୀଣାରୁ

ତାର ଛିଡ଼ିଗଲା ଭଳି ଠିକ ସେହି ସମୟରେ ଲେଖାଟିର ସଂଯୋଗ ଛିଡ଼ିଯାଏ। ଅଧାଲେଖାଟି ସଂପୂର୍ଣ୍ଣ ହୋଇ ପାରେନା, ଯଦିବା ହୁଏ ତାର ଯୋଡିଲାଭଳି ବେସୁର ହୋଇ ଯାଏ। ସେହି ମୁହୂର୍ତ୍ତର କଳ୍ପନା, ଉତ୍ତେଜନା, ଅନୁଭୂତି ଆଉ ପରମୁହୂର୍ତ୍ତରେ ଧରା ଦିଏନାହିଁ। କେବଳ ଜବରଦସ୍ତ ଶେଷ କରିବା ହିଁ ସାର ହୁଏ।

ତେଣୁ ଝିଅ ଜୀବନରେ ଲେଖାଲେଖି କରୁଥିବା ଅନେକ ପ୍ରତିଭାବାନ ଲେଖିକା ବଧୂ ପାଲଟି ଗଲାପରେ ବାଧ୍ୟ ହୋଇ ଲେଖା ଛାଡ଼ି ଦିଅନ୍ତି। କେତେକଙ୍କ ପାଇଁ ଏହା ସାଧନା ନ ହେଇ ସଉକରେ ପରିଣତ ହୁଏ। ଯେଉଁମାନେ ଏସବୁ ସତ୍ତ୍ୱେ ପ୍ରତିଭା ବିକାଶର ସୁଯୋଗ ପାଇଛନ୍ତି, ତା ପଛରେ ନିଶ୍ଚିତ ଭାବରେ ରହିଛି ସେମାନଙ୍କର ପ୍ରେରଣା, ଉତ୍ସାହ ଆଉ ଘର ଲୋକଙ୍କର ଆନ୍ତରିକ ସମର୍ଥନ, କିନ୍ତୁ ଯେଉଁଠି ସନ୍ଦେହ, ସଂକୀର୍ଣ୍ଣତା ପ୍ରବେଶ କରିଯାଏ ସେଠି ଅଶାନ୍ତିକୁ ଟାଣି ଆଣିବା ପାଇଁ ଲେଖିକାଟି ହୁଏତ ଇଚ୍ଛା କରନ୍ତି ନାହିଁ। ବାସ୍, ସେ ଚୁପ୍ ଚାପ୍ ଏକ ବାଧ୍ୟ ପତ୍ନୀ ସାଜି ସ୍ୱାମୀଙ୍କର ଘର ସଂସାରକୁ ସମ୍ଭାଳି ନେବା ପାଇଁ ଜୀବନର ପଣ କରି ଦିଅନ୍ତି। ପ୍ରତିଭା ରୋଷେଇ ଶାଳରେ, ଘରର ସାଜସଜ୍ଜା, ପିଲାମାନଙ୍କର ଯତ୍ନ, ସୁଏଟର ବୁଣା ଭିତରେ ଶେଷ ହୋଇ ଯାଏ।

ଏଇ ଭିତରେ ସମସ୍ୟା ଶେଷହୋଇଯାଏ ନାହିଁ। କେତେକ ସ୍ୱାମୀ ଅଛନ୍ତି, ଯେଉଁମାନେ କି ଲେଖିକା ସ୍ତ୍ରୀ ସହିତ ମିଶୁଥିବା ସମ୍ପାଦକ, ଶୁଭେଚ୍ଛୁମାନଙ୍କୁ ଅନେକ ସମୟରେ ସନ୍ଦେହ ଚକ୍ଷୁରେ ଦେଖି ଥାନ୍ତି। ଏହାକୁ ନେଇ ହିଁ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ଭୁଲ ବୁଝାମଣାର ଆରମ୍ଭ ହୁଏ। ଯାହା ଫଳରେ କି ସମୟ ବଞ୍ଚାଇ ଲେଖାଲେଖି କରୁଥିବା ସ୍ତ୍ରୀ ଏହି ଲେଖାଲେଖିକୁ ଛି କରିଦିଏ। ଏଇଥି ପାଇଁ ଲେଖକମାନଙ୍କ ତୁଳନାରେ ଲେଖିକାମାନଙ୍କ ସଂଖ୍ୟା ଏତେ କମ୍।

ପୁଣି ଅନେକଙ୍କ ଧାରଣା ଲେଖିକା ପତ୍ନୀକୁ ନେଇ ଆଡ୍‌ଜଷ୍ଟ କରିବା କଷ୍ଟକର ବ୍ୟାପାର। ସେମାନେ ଭାବପ୍ରବଣ ଓ ଟିକିନିଖି ଘଟଣାକୁ ଲେଖା ମାଧ୍ୟମରେ ପ୍ରକାଶ କରିଦିଅନ୍ତି। ତେଣୁ ସେମାନେ ପତ୍ନୀକୁ ଭୟ ମଧ୍ୟ କରନ୍ତି। ଆଉ କିଛି ଅଛନ୍ତି, ଯେଉଁମାନେ ପତ୍ନୀର ପ୍ରତିଭାକୁ ନେଇ ଗୌରବ ଅନୁଭବ କରନ୍ତି ଓ ନିଜର ଭାଗ୍ୟ ବୋଲି ମନେ କରନ୍ତି। ତେଣୁ ସେମାନେ ସ୍ତ୍ରୀର ପ୍ରେରଣାର ଉତ୍ସ ସାଜନ୍ତି, ବିଭିନ୍ନ ପତ୍ରପତ୍ରିକା, ବହି, ଆବଶ୍ୟକୀୟ ସୁବିଧା ସୁଯୋଗ ଖଞ୍ଜି ଦିଅନ୍ତି। ତେବେ ଏମାନଙ୍କର ସଂଖ୍ୟା ସୀମିତ। ପ୍ରତିଭାର ପୂଜାରୀ ହିଁ ପ୍ରତିଭାର ମୂଲ୍ୟ ବୁଝେ। ଏଭଳି ସ୍ୱାମୀଟିଏ ପାଇ ଲେଖିକା ପତ୍ନୀଟିର ଜୀବନ ସତେକି ସାର୍ଥକ ହେଇଯାଏ।

ସେ ଯାହାହେଉ ତେଲ ବିନା ଯେମିତି ସଳିତା ଜଳିପାରେ ନାହିଁ, ସେମିତି ପ୍ରେରଣା ବିନା କଳା ବି ବଞ୍ଚି ପାରେ ନାହିଁ। ପୁଣି ନାରୀମାନଙ୍କ କଥାତ ନିଆରା। ବାସ୍ତବିକ ଜୀବନର ବୋଝ ଉଠାଇ, ସବୁ ଝଡ଼ଝଞ୍ଜା ସତ୍ତ୍ୱେ ଯିଏ କଲମ ଉପରେ ଆସ୍ଥା ରଖିପାରିଲା, ସେ ହିଁ ଜୀବନରେ ସଫଳ ହୋଇ ପାରେ। ବିଳମ୍ବରେ ହେଲେ ହେଁ ସାଧନା ପୁରସ୍କୃତ ହୁଏ। ସଂସାର ମନେରଖେ ଆଉ କ୍ଷଣଭଙ୍ଗୁର ଜୀବନ ଧନ୍ୟ ହେଇଯାଏ।

## ଓଡ଼ିଆ ଲେଖିକାମାନଙ୍କର ଅବଦାନ ସଂପର୍କରେ

ଓଡ଼ିଆରେ ଲେଖିକା ମାନଙ୍କର ସଂଖ୍ୟା ଲେଖକଙ୍କ ତୁଳନାରେ ନିଶ୍ଚିତ ଭାବରେ ଖୁବ୍ କମ୍। ତେଣୁ ସେ ଦୃଷ୍ଟିରୁ ଲେଖିକାମାନଙ୍କର ଅବଦାନ ମଧ୍ୟ ସ୍ୱଳ୍ପ। ଏହାର କାରଣ ହେଇପାରେ ସେହି ସ୍ୱତନ୍ତ୍ରତା ବା ନାରୀମାନେ ଅଧିକାର ସଚେତନ ବହୁ ବିଳମ୍ବରେ ହେଇଛନ୍ତି ବା ପାଇଛନ୍ତି।

ଓଡ଼ିଶାର ଲେଖିକାମାନଙ୍କର ବର୍ତ୍ତମାନର ଅବଦାନ ସମୟ କହିବ। ତେବେ ମଧ ଯୁଗରେ ଏକ ଆଶ୍ଚର୍ଯ୍ୟ ପ୍ରତିଭା ଥିଲେ ବୃନ୍ଦାବତୀ ଦାସୀ। ତାଙ୍କର "ପୂର୍ଣ୍ଣତମ ଚନ୍ଦ୍ରୋଦୟ" କାବ୍ୟଟି ସମାଲୋଚକର ବେଶ୍ ଦୃଷ୍ଟି ଆକର୍ଷଣ କରିଥାଏ। ତାଙ୍କ ଭଳି ମାଧବୀ ଦାସୀ ମଧ ଅନ୍ୟ ଏକ ପ୍ରତିଭା। ତେବେ ପ୍ରାକ୍-ସ୍ୱାଧୀନତା କାଳରେ ସବୁଠୁ ପ୍ରତିଭାଶାଳିନୀ ଲେଖିକା ହେଲେ କୁନ୍ତଳାକୁମାରୀ ସାବତ (୧୯୦୦-୧୯୩୭)। ତାଙ୍କର ଅର୍ଚ୍ଚନା, ଉଚ୍ଛ୍ୱାସ ଆଦି କାବ୍ୟ, ପୁଣି ଭ୍ରାନ୍ତି, ପରଶମଣି, କାଳିବୋହୂ, ନଅତୁଣ୍ଡୀ ପ୍ରଭୃତି ଉପନ୍ୟାସ ତଥା ପ୍ରେମଚିନ୍ତାମଣି କବିତାଗୁଚ୍ଛ ଗୋଟିଏ ଗୋଟିଏ ଅପୂର୍ବ ଆଲେଖ୍ୟ। ସେମିତି ସୀତାଦେବୀ ଖାଡ଼ଙ୍ଗା(୧୯୦୫) ଙ୍କ "ମନ୍ଦିର ପ୍ରବେଶ" ନାଟକଟି ଥିଲା ମହାତ୍ମାଗାନ୍ଧୀଙ୍କର ଆନ୍ଦୋଳନକୁ କେନ୍ଦ୍ରକରି ଲିଖିତ ଏକ ବହୁ ପଠିତ ରଚନା। ନାରୀକବି ବିଦ୍ୟୁତପ୍ରଭା ଦେବୀ ରୋମାଣ୍ଟିକ କବିତା ରଚନା କରିବାରେ ଥିଲେ ସିଦ୍ଧହସ୍ତା। ଓଡ଼ିଆ ଗଳ୍ପ ସେ ସମୟରେ ଯେଉଁମାନେ ଲେଖୁଥିଲେ ସେମାନଙ୍କ ଭିତରେ ରେବା ରାୟ, ସରଳା ଦେବୀ ପ୍ରଭୃତିଙ୍କ ନାଁ ଉଲ୍ଲେଖନୀୟ। ସବୁଜ ଯୁଗରେ "ବାସନ୍ତୀ" ଉପନ୍ୟାସର ଅନ୍ୟତମ ଲେଖିକା ଥିଲେ ସରଳା ଦେବୀ।

କବିତା କ୍ଷେତ୍ରରେ ନିର୍ମଳା ଦେବୀଙ୍କୁ ସ୍ମରଣ କରାଯାଇପାରେ। ଏତଦ୍ ବ୍ୟତୀତ ସୁପ୍ରୀତି ଦେବୀ ଗନ୍ତାୟତ, ଆଶାରାଣୀ ଦେବୀ, ସୁଷମାଦେବୀ, ସରସ୍ୱତୀ ପାଣିଗ୍ରାହୀ, ଅପର୍ଣ୍ଣା ଦେବୀ, ସୁପ୍ରଭା ଦେବୀ ପ୍ରଭୃତି ସ୍ମରଣରେ ଆସନ୍ତି। ବସନ୍ତ କୁମାରୀ ପଟ୍ଟନାୟକଙ୍କ ଅମଡ଼ାବାଟ, କୁନ୍ତଳାକୁମାରୀ ଆଚାର୍ଯ୍ୟଙ୍କ "ଅଦିନମେଘ" ଉପନ୍ୟାସଦୁଇଟି ଚଳଚ୍ଚିତ୍ର ହୋଇ ଖୁବ୍ ନାଁ କରିଥିଲା।

ସ୍ୱାଧୀନତାପରେ ବହୁ ଲେଖିକା ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳନା କରିଛନ୍ତି। କବିତା କ୍ଷେତ୍ରରେ ବ୍ରହ୍ମୋତ୍ରୀ ମହାନ୍ତିଙ୍କ ଠାରୁ ଆରମ୍ଭକରି ପ୍ରତିଭା ଶତପଥୀ, ମମତା ଦାଶ, ପ୍ରବାସିନୀ ମହାକୁଡ଼, ଜ୍ୟୋତ୍ସ୍ନା ଦାସଙ୍କ ପର୍ଯ୍ୟନ୍ତ ବହୁ କବିଙ୍କର ଆବିର୍ଭାବ ଘଟିଛି। ଉପନ୍ୟାସ କ୍ଷେତ୍ରରେ ବିଜୟିନୀ ଦାସ, ଗାୟତ୍ରୀ ବସୁ ମଲ୍ଲିକଙ୍କ ଠାରୁ ଆରମ୍ଭ କରି ସୁକାମିନୀ ନନ୍ଦ ପର୍ଯ୍ୟନ୍ତ ବିସ୍ତୃତ ହୋଇଛି। ତେବେ ଔପନ୍ୟାସିକା ପ୍ରତିଭା ରାୟହିଁ ରହିଛନ୍ତି ଅପ୍ରତିଦ୍ୱନ୍ଦୀ। ଗଳ୍ପ କ୍ଷେତ୍ରରେ ବୀଣାପାଣି ମହାନ୍ତି ବହୁ ସଂଖ୍ୟାରେ ଗଳ୍ପ ଲେଖି ଓଡ଼ିଆ ଗଳ୍ପ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି। ବନଜ ଦେବୀ, ପ୍ରଫୁଲ୍ଲତା ମହାପାତ୍ର, ସୁଧାଂଶୁବାଳା ପଣ୍ଡା,ଶକୁନ୍ତଳା ଦେବୀ, ପୁଷ୍ପାଞ୍ଜଳି ନାୟକ, ଜ୍ୟୋତ୍ସ୍ନା ରାଉତରାୟ, ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ, ସରୋଜିନୀ ସାହୁ, ଜୟନ୍ତୀ ରଥ, କବିତା ବାରିକ ପର୍ଯ୍ୟନ୍ତ ବହୁ ଗାଳ୍ପିକା ନାଁ କରିଛନ୍ତି। କିନ୍ତୁ ନିର୍ଦ୍ଦିଷ୍ଟ ପର୍ଯ୍ୟାୟ ଭିତରେ ସମସ୍ତେ ସୀମିତ ହୋଇଯାଇଛନ୍ତି। ସମାଜକୁ ସଜାଡ଼ିବା, ଦିଗ୍‌ଦର୍ଶନ ଦେବା ଅପେକ୍ଷା ପ୍ରେମ, ନିଃସଙ୍ଗତା ବେଶିଭାଗରେ ଆମ ଲେଖା ଗୁଡ଼ିକରେ ସ୍ଥାନ ପାଉଛି ବର୍ତ୍ତମାନ। ଏ ସବୁ ସତ୍ତ୍ୱେ ଲେଖିକାମାନଙ୍କର ଅବଦାନ କଣ— ପ୍ରଶ୍ନ ପଚାରିଲେ ଅନେକ ନିରୁତ୍ତର ରହନ୍ତି। ଜଣେ ଦିଜଣଙ୍କର ନାଁ କହନ୍ତି ପାଠକମାନେ। ତାଛଡ଼ା ଅନ୍ୟ ପ୍ରଦେଶ ମାନଙ୍କରେ କେତେଜଣ ଆମ ଲେଖିକାମାନଙ୍କୁ ଜାଣନ୍ତି ? ଓଡ଼ିଆ ଲେଖିକାମାନଙ୍କ ଭିତରୁ କେତେଜଣ ଜ୍ଞାନପୀଠ, କେନ୍ଦ୍ର ଏକାଡେମୀ ପୁରସ୍କାର ପାଇଛନ୍ତି ? ଓଡ଼ିଶା ବାହାରେ ହେଉଥିବା ସାହିତ୍ୟ ସେମିନାର ମାନଙ୍କରେ କେତେଜଣ ଲେଖିକା ଯୋଗ ଦିଅନ୍ତି ? ଲେଖିକାମାନଙ୍କର ପ୍ରତିବର୍ଷ କେତୋଟି ବହି ପ୍ରକାଶ ପାଏ ? ସେମାନେ ଆଶାପୂର୍ଣ୍ଣା ଦେବୀ, ମୈତ୍ରେୟୀ ଦେବୀ, ମହାଶ୍ୱେତା ଦେବୀ, କମଳା ଦାସ, ମହାଦେବୀ ବର୍ମା, ଅମୃତା ପ୍ରୀତମ୍, ଅନିତା ଦେଶାଇଙ୍କ ଭଳି ପ୍ରଚାରିତ, ସମ୍ମାନିତ ହୋଇଛନ୍ତି କି ? ସେମାନଙ୍କର ଉପାଦେୟ ଲେଖାମାନ ଅନୁଦିତ ହୋଇ ପାରିଛି କି ?

ଯଦିଓ ପୁରସ୍କାର ବା ପ୍ରଚାରକୁ ସାହିତ୍ୟର ମାପକାଠି ଭାବରେ ଗ୍ରହଣ କରାଯାଇ ନଥାଏ ତଥାପି ପୁରସ୍କାର ଯେ ସାହିତ୍ୟିକର ଅବଦାନର ଏକ ସ୍ୱୀକୃତି ଓ ପ୍ରଚାର ଯେ ତାର ଦରକାର ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ। ଏ ଦୃଷ୍ଟିରୁ ଆମ ଭାଷାରେ ବହୁ ଉଚ୍ଚକୋଟିର ଲେଖା ଲେଖିକାମାନଙ୍କର ଥିଲେ ହେଁ ସେମାନେ ପ୍ରଚାର, ଅନୁବାଦ ସମସ୍ୟା ଯୋଗୁଁ ବାହାରେ ଏତେଟା ପରିଚିତା ହେଇପାରି ନାହାନ୍ତି। ତାଛଡ଼ା ସାହିତ୍ୟସଭା କି ଏମିତି ଗୁଲିଖଟିମାନଙ୍କରେ ଲେଖିକାଙ୍କ ସାହିତ୍ୟିକ ପ୍ରତିଭା ଅପେକ୍ଷା ବ୍ୟକ୍ତିଗତ ଜୀବନ ସଂପର୍କରେ ବେଶି ଆଲୋଚନା-ସମାଲୋଚନା ହେବାର ଲକ୍ଷ୍ୟ କରାଯାଏ।

ପୁଣି ଅନେକ ଲେଖୁଥିଲେ ମଧ ପ୍ରକାଶ କରିବାର ସ୍ୱାଧୀନତା ବା ପ୍ରକାଶିତ ହେବାର ସୌଭାଗ୍ୟରୁ ବଞ୍ଚିତା ହୋଇଥାନ୍ତି। ହିନ୍ଦୀ, ବଙ୍ଗଳା, ତାମିଲରେ ଲେଖୁଥିବା ଲେଖିକାମାନଙ୍କ ଭାଗ୍ୟରେ ଯେଉଁ ସୁଯୋଗ, ସୁବିଧା ରହିଛି ଓଡ଼ିଶାର ଲେଖିକାମାନଙ୍କର ତା ତୁଳନାରେ କିଛି ନାହିଁ ବୋଲି ଭାବିବାକୁ ପଡ଼ିବ।

ଅନେକଙ୍କ ମତ ହେଲା ଓଡ଼ିଶାରେ ଲେଖିକାମାନଙ୍କର ସଂଖ୍ୟା ଖୁବ୍ କମ। ସେଥିରୁ ଅଧିକାଂଶ କବିତା ଲେଖନ୍ତି, କେତେଜଣ ମାତ୍ର ଉପନ୍ୟାସ ଲେଖିଥାନ୍ତି। ସେମିତି ହାତଗଣତିରେ କେଇଜଣ ମାତ୍ର ଗଳ୍ପ ଲେଖନ୍ତି, ପ୍ରବନ୍ଧ ବି ଖୁବ୍ କମ୍। ପୁନଶ୍ଚ ନାଟକ ଲେଖୁଥିବା ନାରୀ ନାଟ୍ୟକାର ନାହାନ୍ତି କହିଲେ ଚଳେ। କହିବା ବାହୁଲ୍ୟ ଯେ ଓଡ଼ିଶାରେ ଖୁବ୍ କମ୍ ଝିଅ ସାହିତ୍ୟ ପ୍ରତି ଆଗ୍ରହୀ। ସିନେମା ଦେଖିବା, ବେଶପୋଷାକରେ ସଜ୍ଜିତ ହେବା, ଭଲ ସ୍ୱାମୀଟିଏ, ଭଲ ଘରଟିଏ ପାଇବା ଓ ଖୁସିରେ, ସୁଖରେ ରହିବା ପ୍ରାୟ ଅଧିକାଂଶ ଝିଅ ପସନ୍ଦ କରନ୍ତି। ଅବସର ସମୟରେ ସେମାନେ କାଁଭାଁ ପତ୍ରିକା ପଢ଼ନ୍ତି। ସେଥିରୁ ଇଂରାଜୀ, ହିନ୍ଦୀ ପତ୍ରୀକାର ସଂଖ୍ୟା ଅଧିକ। ଏହି ପତ୍ରିକା ଭିତରେ ଚଳଚିତ୍ର ପତ୍ରିକାହିଁ ମୁଖ୍ୟତଃ ଥିବ। ଆଉ ଯାହା ସାହିତ୍ୟ ପତ୍ରିକା ଅପେକ୍ଷା ମହିଳାମାନଙ୍କ ଲାଗି ଉଦ୍ଦିଷ୍ଟ ପତ୍ରିକା। ଅନେକ ସିଲେଇ, ବୁଣାବୁଣି ଓ ରନ୍ଧାବଢ଼ା ଜାଣିବା ପାଇଁ ହିଁ ପତ୍ରିକା କିଣନ୍ତି। ଯେଉଁମାନେ ସାହିତ୍ୟ କରନ୍ତି ଏ ରାଜ୍ୟରେ ସେହିମାନେ ହିଁ ସାହିତ୍ୟ ପତ୍ରିକା ପଢ଼ନ୍ତି। ବାକି ମାରିଆଣି ସମୟ ବିତାଇବା ପାଇଁ। ଖୁବ୍ କମ୍ ନିଷ୍ଠାପର ପାଠିକା ମିଳିବେ।

ଆମ ଲେଖିକା ମାନଙ୍କର ଅବଦାନକୁ ବହୁଳ ଭାବରେ ପ୍ରଚାରିତ କରିବା ଲାଗି ଆଗ୍ରହୀ ଅନୁବାଦକ ନାହାନ୍ତି। ନାରୀ ପ୍ରତିଭାଙ୍କ ଲେଖା, ବହି ଉପରେ ଏତେଟା ଆଲୋଚନା, ସମାଲୋଚନା ହୁଏନା, ପୁନଶ୍ଚ ପାରିବାରିକ ସମର୍ଥନ ଖୁବ୍ କମ୍ ମିଳେ। ପ୍ରେରଣା ନଥାଏ କି ପ୍ରଚାର ନଥାଏ। ଅନେକ ତ ବଣମଲ୍ଲୀ ଭଳି କଳିକାରୁ ଝଡ଼ିପଡ଼ନ୍ତି। ରକ୍ଷଣଶୀଳ ଓଡ଼ିଆ ସମାଜ ସଭାସମିତିରେ ଯୋଗ ଦେବା, ବାହାରକୁ ଛାଡ଼ିବା, ଅନ୍ୟ ଲେଖକମାନଙ୍କ ସହିତ ମିଶିବା ଓ ସେମାନଙ୍କର ଚିନ୍ତାଧାରା ସହିତ ପରିଚିତ ହେବା, ଆଦାନପ୍ରଦାନ କରିବା ନିମନ୍ତେ ଏତେଟା ଅନୁମତି ଦିଏନି। ସେଥି ପାଇଁ ଛାତ୍ରୀ ଅବସ୍ଥାରେ ଅନେକ ଝିଅ କବିତା, ଗଳ୍ପ ପ୍ରଭୃତି ଲେଖୁଥିଲେ ହେଁ ପରବର୍ତ୍ତୀଜୀବନରେ ଲେଖାଲେଖି ଛାଡ଼ି ଦିଅନ୍ତି। ଆଗ୍ରହ ନଥାଏ କି ଲେଖିବାରେ ସ୍ପୃହା ରହେ ନାହିଁ। ଗୃହିଣୀ ହେଲାପରେ ଅବିବାହିତା ଅବସ୍ଥାରେ ନାଁ କରିଥିବା ଝିଅଟି ପ୍ରାୟ ନିରବ ହେଇଯାଏ। ତେଲଲୁଣର ସଂସାର, ଯାବତୀୟ ଦାୟିତ୍ୱ, ସମସ୍ୟା ଭିତରେ ସେମାନେ ବୁଡ଼ି ଯାଇ ନିଜର ପ୍ରତିଭା ରୂପକ ଦୀପଟିକୁ ଲିଭାଇ ଦିଅନ୍ତି। ଏମିତିକି ପତ୍ରିକାଟେ ପଢ଼ିବାକୁ ବି ସେମାନେ ସମୟ ବାହାର କରି ପାରନ୍ତି ନାହିଁ। ତଥାପି ଯେଉଁ ଗୃହିଣୀମାନେ ଲେଖା ଜାରି ରଖିଛନ୍ତି ସେମାନେ ମୁଖ୍ୟତଃ ନିଜ

ସ୍ୱାମୀଙ୍କ ଠାରୁ ହିଁ ପ୍ରେରଣା ପାଇଥାନ୍ତି। ସ୍ୱାମୀଙ୍କର support ବା ଆନ୍ତରିକ ସମର୍ଥନ ବିନା ସେମାନେ ପ୍ରକୃତରେ ଏ ସାଧନାରେ ବ୍ରତୀ ହୋଇ ପାରି ନ ଥାନ୍ତେ। ନହେଲେ ଅନ୍ୟମାନଙ୍କ ଭଳି ଗୃହ ଜଞ୍ଜାଳ ସମ୍ଭାଳି ସମ୍ଭାଳି ସେମାନଙ୍କ ଜୀବନ ସରିଯାଇଥାନ୍ତା। ତାପରେ ଓଡ଼ିଶାରେ ହିଁ ଲେଖା ପାଇଁ ପ୍ରାୟ ପାରିଶ୍ରମିକ ମିଳେ ନାହିଁ। ନିଜ ସାଧନାର ସ୍ୱୀକୃତି ଖୁବ୍ କମ୍ ଜୀବନରେ ମିଳିଥାଏ।

ତାଛଡ଼ା ନାରୀପ୍ରତିଭାକୁ ଉତ୍ସାହିତ କରିବା ବା ଏଭଳି ପ୍ରତିଭାମୟୀମାନଙ୍କୁ ଲୋକଲୋଚନକୁ ଆଣିବା ପାଇଁ ଆମ ରାଜ୍ୟରେ ସେଭଳି କିଛି ସୁବିଧା, ସୁଯୋଗ ନାହିଁ। ହୁଏତ ଏଇଥି ପାଇଁ ଏମାନଙ୍କ ଅବଦାନ ସଂପର୍କରେ ଆମ ରାଜ୍ୟରେ କେହି ଚିନ୍ତା କରନ୍ତି ନାହିଁ କି ସେ ସମ୍ପର୍କରେ କୌଣସି ଆଗ୍ରହ ପ୍ରକାଶ କରନ୍ତି ନାହିଁ।

ଝିଅମାନେ ଅଧିକ ସଂଖ୍ୟାରେ ଲେଖାଲେଖି କରିବା, ପତ୍ରିକା ପଢ଼ିବା ପାଇଁ ସେମିତି କିଛି ପାରିବାରିକ ଆଗ୍ରହ ମଧ୍ୟ ପ୍ରକାଶ ପାଏ ନାହିଁ। ଝିଅ ଜୀବନ ପରଘରକୁ ବା ମାତୃତ୍ୱ ହିଁ ନାରୀର ପୂର୍ଣ୍ଣତା ଏମିତି ଯେଉଁ ବ୍ରେନ୍‌ୱାସ୍ ପିଲାଦିନରୁ ଅଧିକାଂଶ ବାପାମା' ଝିଅର କରିଥାନ୍ତି ସେମିତି ସେ ଲେଖିକାଟିଏ ହେଉ, ଭଲ ନର୍ତ୍ତକୀ, ଗାୟିକା, ଖେଳାଳୀ କି ଭଲ ଡାକ୍ତର, ପ୍ରଶାସନିକ ଅଫିସରଟେ ହେଉ ଏକଥା କେହି କହିନଥାନ୍ତି ପ୍ରାୟ। ତାଛଡ଼ା ଓଡ଼ିଶାରେ ଯେଉଁ କେତୋଟି ମହିଳା ପତ୍ରିକା ପ୍ରକାଶ ପାଉଛି ସେମାନଙ୍କ ସଂଖ୍ୟା ବଢ଼ାଇବା, ତାହାକୁ ବଞ୍ଚାଇବା ନିମନ୍ତେ ମଧ୍ୟ ରହିଛି ଉଦ୍ୟମର ଅଭାବ। ଓଡ଼ିଶାରେ ସାହିତ୍ୟକୁ ଜୀବିକା କରି ଝିଅ କି ପୁଅ ବଞ୍ଚିବା କେବେ ବି ସମ୍ଭବପର ନୁହେଁ। ସେଭଳି ସ୍ୱାଧୀନ ପରିବେଶ ବି ଆମର ନାହିଁ।

ତେଣୁ ଓଡ଼ିଶାର ଲେଖିକାମାନଙ୍କର ଆଗାମୀ ଓଡ଼ିଆ ସାହିତ୍ୟର ଇତିହାସ ପାଇଁ ଅବଦାନ କଣ ହେବ ତାହା ସଠିକ ଭାବରେ ବର୍ତ୍ତମାନ କିଛି କୁହାଯାଇ ନ ପାରେ। ହୁଏତ ସମୟ ହିଁ ତାର ଉତ୍ତର ଦେଇ ପାରିବ।

*

# ଅବାଞ୍ଛିତ ମାତୃତ୍ୱ

ନାରୀ ଲାଗି କୁହାଯାଏ ମାତୃତ୍ୱ ହେଉଛି ଶ୍ରେଷ୍ଠ ଗୌରବ। ମାତୃତ୍ୱ ହିଁ ନାରୀକୁ ପୂର୍ଣ୍ଣତା ଦିଏ, ତା ଜୀବନକୁ ସାର୍ଥକ କରେ। ତେଣୁ ନାରୀ ମାତା, ଜନନୀ, ଭାବରେ ନମସ୍ୟା। ନାରୀହିଁ ସୃଷ୍ଟି କରିପାରେ। ସର୍ଜନାର ଏହି ବିଶାଳ ପୃଥିବୀ ନାରୀର ଗର୍ଭରୁହିଁ ଜନ୍ମନିଏ ତାହା ବୃକ୍ଷ ହେଉ, ଜୀବଜନ୍ତୁ, ପଶୁପକ୍ଷୀ ହେଉ ବା ମଣିଷ ହେଉ। କିନ୍ତୁ ନାରୀର ମାତୃତ୍ୱ ଯଦି ଅବାଞ୍ଛିତ ହୋଇଯାଏ ସେତେବେଳେ? ସମାଜ କଳଙ୍କିନୀ କହେ, ନାକ ଟେକେ। ଏ ସମାଜର ବଡ଼ପଣ୍ଡାମାନେ ଯେଉଁମାନେ ରାତିରେ ଗୋଟାଏ ଓ ଦିନରେ ଗୋଟାଏ ଲୋଖାଁ ମୁଖା ଲଗାଇ ଅନ୍ଧାର ଆଲୁଅରେ ଆତଯାତ ହେଉଥାନ୍ତି ସେମାନେ କହନ୍ତି, ଏଭଳି ନାରୀର ସମାଜରେ ବଞ୍ଚିବାର ଅଧିକାର ନାହିଁ। ଏମାନଙ୍କର ସନ୍ତାନକୁ ସେମାନେ କହନ୍ତି "ଜାରଜ"। କିନ୍ତୁ ଯେଉଁମାନେ ଜାରଜ କହନ୍ତି ସେମାନଙ୍କ ଭିତରେ ହିଁ ସନ୍ତାନର ପିତା ଲୁଚି ବସିଥାଏ। ସେମାନଙ୍କର କ୍ଷଣିକ ଉତ୍ତେଜନା, ଜାନ୍ତବକ୍ଷୁଧା ନାରୀର ମୂଲ୍ୟବାନ ଜୀବନକୁ ଅର୍ଥହୀନ କରିଦିଏ, ସାରା ଜୀବନ କଳଙ୍କ ବୋହିଯାଏ ଆଉ ତାର ସନ୍ତାନ ଜୀବନ ସାରା ଜାରଜର ତିଳକ ପିନ୍ଧି ଏକ ପ୍ରହସନ, ପ୍ରଦର୍ଶନୀର ଜୋକର ପାଲଟିଯାଏ। ଆମର ରକ୍ଷଣଶୀଳ ସମାଜ କୁଆଁରୀଝିଅର ମାତୃତ୍ୱକୁ ସ୍ୱୀକୃତି ଦିଏ ନାହିଁ। (ଯଦିଓ ମହାଭାରତରେ କୁନ୍ତୀଙ୍କର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି)। ହେଲେ ସମାଜ କେବେ ପ୍ରଶ୍ନ କରେନା ଅବିବାହିତା ଝିଅଟି କେଉଁ ପରିସ୍ଥିତିରେ ପଡ଼ି ଏଭଳି ଶିକାର ହେଉଛି।

ଏସବୁ ହୁଏ କାହିଁକି? ଏଭଳି ଚାଲିଥିବ କେତେଦିନ? ଏ ପ୍ରଶ୍ନର ଉତ୍ତର ମୋ ପାଖରେ ନାହିଁ। ହୁଏତ ସେମାନେ କହିପାରିବେ ଯେଉଁମାନେ ଏଭଳି ନାଟକର ନାୟକ। ସେମାନେ ଏହାର ଉତ୍ତର ଦେଇପାରିବେ ଯେଉଁମାନଙ୍କ ହାତରେ ଆଇନକାନୁନର ଡ଼ୋର ରହିଛି ଓ ଯେଉଁମାନେ ପ୍ରତି ଯୁଗରେ ସମାଜକୁ ନିୟନ୍ତ୍ରଣ କରିଆସିଛନ୍ତି। ସେମାନଙ୍କୁ ମୋର ପ୍ରଶ୍ନ, ଦେଖିଛନ୍ତି ସେହି ନାରୀର ଅସହାୟତାକୁ ଯାହାର ମାତୃତ୍ୱ ସମାଜ ଦ୍ୱାରା ବାରମ୍ବାର ଲାଞ୍ଛିତ ହୁଏ? ଦେଖିଛନ୍ତି ତାର ସେହି ସଜଳ କାରୁଣ୍ୟକୁ ଯେତେବେଳେ ତାର ସନ୍ତାନ ବାପା କିଏ ବୋଲି ବାରମ୍ବାର ପ୍ରଶ୍ନ ପଚାରୁଥାଏ? ଦେଖିଛନ୍ତି ସେ ନାରୀର ଭଙ୍ଗା ସ୍ୱପ୍ନକୁ ? ଅନ୍ଧାରି ଭବିଷ୍ୟତକୁ?

ବର୍ତ୍ତମାନ ସମୟରେ ନାରୀର ନିରାପତ୍ତା ଏକ ବିରାଟ ପ୍ରଶ୍ନବାଚୀ। ମୋର ମନେ ପଡୁଛି ଦଶବର୍ଷ ତଳେ ଏଭଳି ଘଟଣା କେବେ ଶୁଣି ନ ଥିଲି। ଚୋର ଡକାଏତ ଗହଣା ଚୋରି କରି ନେବା ବା ରଜା ମହାରଜାମାନେ ସୁନ୍ଦରୀ ସ୍ତ୍ରୀ ଦେଖି ଉଠାଇନେବା ଘଟୁଥିଲା। କିନ୍ତୁ ସାଧାରଣ ଲୋକ ଯେ କୌଣସି ଯୁବକ, ବୁଢ଼ା, କିଶୋର, ଏଭଳି ଯେଉଁଠି ପାର ସେଇଠି ବିବାହିତା, ଅବିବାହିତା, ସାବାଳିକା, ନାବାଳିକା, ଯେ କୌଣସି ଶ୍ରେଣୀର ଝିଅବୋହୂକୁ ଉଠାଇନେବା କେବେ ଶୁଣା ଯାଉ ନଥିଲା। କେତେ ଦ୍ରୁତ ଭାବରେ ସମୟ ବଦଳି ଚାଲିଛି। ଅଥଚ ନାରୀ ସେହି ଗୋଟାଏ ଭୋଗବସ୍ତୁ ହୋଇ ରହିଯାଇଛି। ଆଜି କୌଣସି ଆଇନ, ରାଜନୀତିକ ଦଳ ନାରୀକୁ ପୂର୍ଣ୍ଣ ନିରାପତ୍ତା ଦେବାକୁ ଅକ୍ଷମ ହେଉଛି। ଆଇନ ଉପରୁ ଆସ୍ଥା ତୁଟିବାରେ ଲାଗିଛି

ଆସ୍ତେ ଆସ୍ତେ। ଦେଶ ସ୍ୱାଧୀନତା ପରେ ଏ କି ସଙ୍କଟର ସାମ୍ନା ଦେଇ ଗତିକରୁଛି ସୀତା ସାବିତ୍ରୀର ବଂଶଧର ନାରୀ। ସ୍ୱାଧୀନତା ଆଗରୁ ବିଦେଶୀମାନେ ଏ ଦେଶକୁ ଲୁଟି ନେଉଥିଲେ କିନ୍ତୁ ସ୍ୱାଧୀନତା ପରେ ନିଜଦେଶର ଲୋକ ନିଜ ଦେଶର, ନିଜ ଘରର ମା ଭଉଣୀଙ୍କୁ ଲୁଟି ନେଉଛନ୍ତି। ତାହାଲେ ଫିରିଙ୍ଗି ଶାସନ ତ ଭଲଥିଲା। ଅନ୍ତତଃ ଇଂରେଜମାନେ ଏଭଳି ତ ଅତ୍ୟାଚାର କରୁ ନଥିଲେ। ତାଛଡ଼ା ସେମାନେ ଯେ ବିଦେଶୀ ଥିଲେ। ସେଥିପାଇଁ ସାତଖୁଣ୍ ମାଫ୍। କିନ୍ତୁ ନିଜ ଦେଶର ଲୋକେ ନିଜକୁ ଲୁଣ୍ଠନ କରୁଛନ୍ତି ଶୁଣିଲେ ଆଜି ସେହି ଇଂରେଜ୍ ଜାତି ହସିବ ଆଉ କହିବ, ଏଇ ତାହାଲେ ସେହି ଆଦର୍ଶର ଭାରତବର୍ଷ। ଦିନେ ଯେଉଁ ଦେଶ ଅହିଂସାମାର୍ଗ ଆଦରି ଦେଶର ସ୍ୱାଧୀନତା ଆଣିବା ପାଇଁ ସଂଗ୍ରାମରେ ଝାସ ଦେଇଥିଲା ସେ ଦେଶର ଝିଅବୋହୂଙ୍କର ଫେର୍ ଏ ଅବସ୍ଥା? ବାଃରେ ଭାରତବର୍ଷ, ଗାନ୍ଧୀ, ନେହେରୁ, ଜୀଜାବାଇ, ପଦ୍ମିନୀ, ଗାର୍ଗୀ, ମୈତ୍ରୀ, ଲୋପାମୁଦ୍ରା, ଲକ୍ଷ୍ମୀବାଈ, ସତୀ ସାଧ୍ୱୀ, ଧର୍ମ, ପ୍ରେମ, ପୂଣ୍ୟର ଦେଶ? ଯେଉଁ ଦେଶରେ କୁଆଡ଼େ ଅସୁରକୁ ସଂହାର କରି ଧର୍ମ ସ୍ଥାପନ କରିବା ଲାଗି ଦିନେ ରାମଚନ୍ଦ୍ରଙ୍କର ଜନ୍ମ ହେଇଥିଲା, ଜନ୍ମ ମଧ ହୋଇଥିଲା କୃଷ୍ଣଙ୍କର, ପୁଣି ବୁଦ୍ଧ, ଶଙ୍କର, ମହାବୀର ଏମିତି କେତେକେତେ ମହାପୁରୁଷମାନଙ୍କର। ସେହି ମହାପୁରୁଷମାନଙ୍କର ଦେଶରେ, ସ୍ୱୟଂ ଜଗନ୍ନାଥ ଯେଉଁ ଦେଶରେ ବିରାଜମାନ ସେଠି ପୁଣି ନାରୀଙ୍କୁ ଭିଡ୍ ବଜାରରୁ ଉଠାଇ ନିଆ ଯାଉଛି। ଗୋଷ୍ଠୀବଦ୍ଧ ଭାବରେ ଧର୍ଷଣ କରାଯାଉଛି, ମାରି ଫିଙ୍ଗି ଦିଆ ଯାଉଛି ତ ପୁଣି କେଉଠି ଅବାଞ୍ଛିତ ମାତୃତ୍ୱ ନଦି ଦିଆଯାଉଛି। ଏହା ସମଗ୍ର ବିଶ୍ୱବାସୀଙ୍କ ପାଇଁ ଅନ୍ୟତମ ଅଷ୍ଟମ ଆଶ୍ଚର୍ଯ୍ୟ।

ପୁରୁଷର ଆଖି ପଡ଼ିବାଟା ନାରୀ ପାଇଁ ଉଚିତ ହେବ ନାହିଁ ଭାବି ଦିନେ ଯେଉଁ ସମାଜ ପର୍ଦ୍ଦାପ୍ରଥାର ପ୍ରଚଳନ କରିଥିଲା ଆଜି ସେହି ସମାଜରେ ନାରୀକୁ ବେପର୍ଦ୍ଦା କରାଯାଉଛି। ଅଥଚ ସମାଜର ଆଇନ ଗଢୁଥିବା, ଆଇନ ଜଗୁଥିବା ସମାଜପତିମାନେ ନିରବଦ୍ରଷ୍ଟା ପାଲଟିଯାଉଛନ୍ତି। ଯେମିତି କାହାରି କିଛି କରିବାର ନାହିଁ, କିଛି କହିବାର ନାହିଁ। ଏସବୁ ଏକ ସାଧାରଣ ଘଟଣା। ସମ୍ବାଦପତ୍ର ଘଟଣାଟି ପ୍ରକାଶ କରି ଦେଲାପରେ କର୍ତ୍ତବ୍ୟ ସରିଗଲା ଭାବି ନୀରବ, ଆଇନ କଟାଧଲା ବ୍ୟାପାରରେ ସତକୁ ମିଛ କରି ପ୍ରମାଣ ଦେଇ ବା ଦୋଷୀକୁ ନିର୍ଦ୍ଦୋଷରେ ଖଲାସ କରି ଦେଇ ନୀରବ, ବାପା ମା କି ଘରଲୋକେ ବଦ୍‌ନାମ ହେଇଯିବା ଭୟରେ ନୀରବ, କେହି ଅର୍ଥବଳ, ଲୋକବଳ ବା ବ୍ୟାକିଂ ନଥିବାରୁ ନୀରବ। ତେଣୁ ସବୁଠି କିଛିନା କିଛି ଅସହାୟତା। ଅଥଚ ବିଚାରୀ ଝିଅଟି ସମୟର ରଥଚକ୍ରତଳେ ପେଷି ହେଇଚାଲିଛି ଓ ମୃତ୍ୟୁକୁହିଁ ଶ୍ରେଷ୍ଠ ରାସ୍ତା ବୋଲି ଅଧିକାଂଶ ସ୍ଥାନରେ ବାଛିନେଉଛି। ଆଉ ଯେଉଁମାନେ ବଞ୍ଚିରହିଲେ ଓ ଏଭଳି ମାତୃତ୍ୱର ଅଧିକାରିଣୀ ହେଲେ ସେମାନେ? ଉଭୟ ମା ଓ ସନ୍ତାନର ଭବିଷ୍ୟତ କଥା କିଏ ଚିନ୍ତା କରେ? ବାପ ନାହିଁ ବୋଲି ନିରୀହ ପିଲାଟି ନାନା ଭାବରେ ସମାଜର ବିଷନଜରର ଶିକାର ହୁଏ, ଅନ୍ୟପକ୍ଷରେ ମାକୁ କେଉଁଠି ହେଲେ କାମଦାମ ମିଳେ ନାହିଁ। ଅଥବା ଯଦି ଚାକିରିଆ ହେଇଥାଏ ଜୀବନ ସାରା ଘରେ, କର୍ମକ୍ଷେତ୍ରରେ, ଖାଇପଡ଼ିଶା ରେ ସେ ଏକ ଅଦ୍ଭୁତ ଜୀବ, ଏକଘରକିଆ ହେଇ ରହିଯାଏ।

ଆମର ଏ ଯେଉଁ ସମାଜ ପୁଞ୍ଜିପତି ମାନଙ୍କର ଇଶାରାର ସମାଜ। ଧନୀକର ଇଚ୍ଛାରେ, କ୍ଷମତା ଲିପ୍‌ସୁର ଭାବନାରେ ଏହା ଗଢ଼ାହେଇଛି। ଯୁଗେ ଯୁଗେ ଏହା ଏହି ଉଚ୍ଚଲୋକମାନଙ୍କ ହାତରେ ଖେଳଣା ପାଲଟି ଯାଇଛି। ଆଜିବି ଏହାର ଭିତରର ମଜ୍ଜା ସେମିତି ରହିଛି। କିଛିବି ବଦଳିନି। ଦିନେ ରଜାମହାରାଜା, ଜମିଦାରମାନଙ୍କ ହାତରେ ଏହା ନାଚୁଥିଲା ଆଜି ମନ୍ତ୍ରୀ ଅଥବା

ଉଚ୍ଚପଦବୀଧାରୀ ବା ଶିଳ୍ପପତି ଓ ଏଭଳି କିଛି କ୍ଷମତାଲିପ୍ସୁ ଏବଂ ଏସବୁ ଗୋଷ୍ଠୀଙ୍କର ଭଡାଟିଆ ଗୁଣ୍ଡାମାନଙ୍କ ହାତରେ ନାଚୁଛି। ଇତିହାସର କେବଳ ପୁନରାବୃତ୍ତି ହେଇ ଚାଲିଛି। ତାହାଲେ ସତରେ କଣ ସ୍ୱାଧୀନତା ଆସିଛି? ଯେପର୍ଯ୍ୟନ୍ତ ନାରୀ ରାତି କି ଦିନରେ ଏକୁଟିଆ ଚଳପ୍ରଚଳ ହେଇ ନିଜକୁ ନିରାପଦ ମନେ ନକରିଛି ବା ତାର ପ୍ରୋଟେକ୍ସନ୍ ଆଦୌ ଦରକାର ହେବନାହିଁ ସେଦିନ ହିଁ ସ୍ୱାଧୀନତା ଆସିବ। କେବଳ ବ୍ରିଟିଶମାନଙ୍କୁ ଘଉଡ଼ାଇ ଦେଇ ତ୍ରିରଙ୍ଗା ଟାଙ୍ଗିଦେଲେ ମଣିଷ ସ୍ୱାଧୀନ ହେଇ ଯାଏ ନାହିଁ। ସ୍ୱାଧୀନତା ଏକ ଆପେକ୍ଷିକ ଶବ୍ଦ।

ପ୍ରଶ୍ନ ହେଲା ନାରୀ ଉପରେ ଅତ୍ୟାଚାରର ଘଟଣା ଯଦି ନ କମେ ଓ ଅବାଞ୍ଛିତ ମାତୃତ୍ୱର ଅଧିକାରିଣୀ ସେ ହୋଇ ଚାଲେ ତାହାଲେ ଧୀରେ ଧୀରେ ଦିନେ ଭାରତବର୍ଷରେ ଏକ ଜାରଜ ସଭ୍ୟତା ମୁଣ୍ଡ ଟେକିବ। ସେ ସଭ୍ୟତା ପ୍ରତିଶୋଧ ନେବ ତା ସୃଷ୍ଟିକର୍ତ୍ତା ଉପରେ। ଏଭଳି ଜାରଜ ସଭ୍ୟତାର ଫେର୍ ଭବିଷ୍ୟତ କଣ? ମନେରଖିବା ଦରକାର ଯେ ଏ ସଭ୍ୟତାର ବୃଦ୍ଧି ହିଁ ଭାରତର ସ୍ଖଳନର ପ୍ରତୀକ ଯାହା ଭାରତର ଐତିହ୍ୟ, ସଂସ୍କୃତି, ସୁନାମ ସବୁକିଛିକୁ ଗ୍ରାସ କରିଦେବ।

ମାତୃତ୍ୱ ନାରୀର ଗୌରବ ବୋଲି ଦିନେ ଯେଉଁ ସମାଜ ବିବେଚନା କରିଥିଲା ସେହି ସମାଜରେ ଅବାଞ୍ଛିତ ମାତୃତ୍ୱ ଆଜି କେବଳ କଳଙ୍କ ନୁହେଁ, ନାରୀ ପ୍ରତି ଚରମ ଅସମ୍ମାନର ନମୁନା। କେଉଁଠି ନାରୀ ନିରୂପାୟ ହେଇ ନିଜକୁ ସମର୍ପି ଦେଉଛି। ପ୍ରତ୍ୟେକ ନାରୀର ଏକ ସ୍ୱପ୍ନ ଥାଏ, ତାର ଘରଟିଏ ହେବ, ସ୍ୱାମୀ, ସନ୍ତାନ, ପରିପୂର୍ଣ୍ଣତା। କେହି କଣ ଇଚ୍ଛା କରିଥାଏ ଦେହ ବ୍ୟବସାୟ କରିବାକୁ? କେହି ନିରୂପାୟ ହେଇ ଏଭଳି ଗଳିରେ ପାଦଦିଏ, କାହାକୁ ଜୋରଜବରଦସ୍ତ ଉଠାଇ ଅଣାଯାଏ। ଅନ୍ଧଗଳିର ଅନ୍ଧକାରରେ ବିକ୍ରି କରାଯାଏ ଓ ଏଥିପାଇଁ ଦଲାଲମାନେ ବିଛେଇ ହେଇ ରହିଥାନ୍ତି। ଆଉ ଥରେ ସେ ଗଳିରେ ପାଦ ଦେଲାପରେ ମୁକ୍ତି ନାହିଁ। ପୁଣି ଅନେକ ମଫସଲ ଜାଗାରେ ଡାକବଙ୍ଗଳାରେ ସାହେବମାନଙ୍କର ରାତିକର ତୃପ୍ତି ନିମନ୍ତେ ଧରାହୋଇ ଆସନ୍ତି ନିରୀହା ଜଙ୍ଗଲି ଫୁଲମାନେ। କେତୋଟି ଟଙ୍କା ଫିଙ୍ଗି ଦେଇ ନାରୀଜୀବନର ଅମୂଲ୍ୟ ସମ୍ପଦ ଲୁଟି ନିଆଯାଏ। ସାହେବ ଫେରିଯାନ୍ତି ଆଉ କେତୋଟି ଟଙ୍କା ବିନିମୟରେ ଦେଇଯାନ୍ତି ସେହି ନାରୀଟିକୁ ମାତୃତ୍ୱର ଗୌରବ। ଭଦ୍ରମୁଖା ପିନ୍ଧି ଏହି ସାହେବମାନେ ସଭାସମିତିରେ ନାରୀ ସମସ୍ୟା, ମାତୃବତ୍, ବନ୍ଦନୀୟା କହି ଉକ୍ତିରେ ଗଦ୍‌ଗଦ୍ ହେଇ ଯାଆନ୍ତି ଓ ସମଗ୍ର ପୁରୁଷଜାତିକୁ ଚରିତ୍ରବାନ, ନୀତିବାନ ହେବାର ଉପଦେଶ ଦିଅନ୍ତି। ଆଶ୍ଚର୍ଯ୍ୟ ଲାଗେ ସ୍ୱାଧୀନତାର ଏତେବର୍ଷ ପରେ ବି ଦିଲ୍ଲୀର ରେଡ୍ ଲାଇଟ୍ ଅଞ୍ଚଳ, କଲିକତାର ସୋନାଗାଛି, ଭୁବନେଶ୍ୱରର ମାଳୀସାହି ଭଳି ସ୍ଥାନ ଆଜି ପର୍ଯ୍ୟନ୍ତ ତାର ପ୍ରସିଦ୍ଧି ଅକ୍ଷୁର୍ଣ୍ଣ ରଖିଛି। ସାରା ଭାରତରେ ଏଭଳି ବିଖ୍ୟାତ ଅଞ୍ଚଳ ଆଜି ଏତେ ବର୍ଷପରେ ବି ବିଦ୍ୟମାନ ରହିଛି।

ପ୍ରଥମରୁ କହିଛି, ନାରୀର ଅସହାୟତାର ସୁଯୋଗ ପୁରୁଷ ନେଇଛି ସବୁ ସମୟରେ। କଳେବଳେ କୌଶଳେ ସେ ତାର ଦାବୀ ଆଦାୟ କରି ନେଇଛି ଓ ପଚା ଆଳୁ ଫିଙ୍ଗିଦେଲା ଭଳି ଏମାନଙ୍କୁ ଫିଙ୍ଗି ଦେଇଛି ନର୍କକୁ। ନିଜ ଦେଶର ଭାଇଟି ନିଜ ଦେଶର ଭଉଣୀ ଉପରେ ଅତ୍ୟାଚାର କରୁଛି, ବଳାତ୍କାର କରୁଛି। କ୍ଷଣିକ ଉତ୍ତେଜନା ଲାଗି ଗୋଟିଏ ଅମୂଲ୍ୟ ଜୀବନର ସମଗ୍ର ଭବିଷ୍ୟତ ନଷ୍ଟ ହେଇ ଯାଉଛି। ଆଉ ଆଇନ୍? ତା କଥା ନ କହିବା ଭଲ। ଯାହା ହାତରେ ଟଙ୍କା ଅଛି, କ୍ଷମତା ଅଛି ସେ ସବୁକିଛି କରିପାରେ, ପାଇପାରେ। ଏଥିରେ ସନ୍ଦେହର

ଅବକାଶ ନାହିଁ । ଆଇନ୍‌ରେ କଳା ଧଳା ହେଉଯାଉଛି ଆଉ ଧଳା କଳା । ଟଙ୍କା ଦ୍ୱାରା କେଉଁକାମ ନ ହେଇ ପାରୁଛି ଦୁନିଆରେ ? ତେଣୁ ଏଥିଲାଗି କାହାକୁ ଦାୟୀ କରିବୁ ?

ଯେଉଁ ଦେଶରେ ନାରୀ ତା ନିଜ ଜାତିଭାଇ ମେଳରେ ନିଜକୁ ସୁରକ୍ଷିତ ମନେ କରେନା, ଯେଉଁ ଦେଶରେ ନାରୀର ସତୀତ୍ୱ ବିପନ୍ନ ହେଇପଡ଼େ ସେ ଦେଶର ମଣିଷଠାରୁ ବର୍ବରତା ଛଡ଼ା ଆଉ କଣ ଆଶାକରାଯାଇପାରେ ? କହିବାକୁ ଲଜ୍ୟା ଲାଗେ ଯେ ଦେହ-ଲୋଲୁପତା ଏବଂ ଯୌନ-ବ୍ୟାଧିଗ୍ରସ୍ତ ସାଂପ୍ରତିକ ବୁର୍ଜୁଆ ଚରିତ୍ରର ଅଧିକାରୀ ପୁରୁଷ ହିଁ ଆଜି ସ୍ୱୟଂ ଏ ଦେଶର ସୀତା ସାବିତ୍ରୀ ଭଳି ନାରୀ ଜୀବନକୁ ବିପର୍ଯ୍ୟସ୍ତ କରିଛି, ନର୍କର ଦୁଃସହ ଯନ୍ତ୍ରଣା କୁଣ୍ଡରେ ନିକ୍ଷେପ କରିଛି । ସେ ପୁରୁଷ ହେଇପାରେ ତା ସ୍ୱାମୀ, ତାର ସମ୍ପର୍କୀୟ, ପଡ଼ୋଶୀ, ଜାତିଭାଇ, ବନ୍ଧୁ, ଦେଶଭାଇ । ଏ ଦେଶର ନାରୀର ମନଦର୍ପଣରେ ଧୀରେ ଧୀରେ ପୁରୁଷର ସ୍ୱରୂପ କାମନାର ଅସୁରରୂପେ ପ୍ରତିବିମ୍ବିତ ହେବାରେ ଲାଗିଛି । ପୁରୁଷର ଶୋଷଣର ବୁର୍ଜୋୟା ମନୋଭାବଟି ଆସ୍ତେ ଆସ୍ତେ ନାରୀର ସମଗ୍ର ଜୀବନରେ ବିଷ ଭରିଦେବାକୁ ଆରମ୍ଭ କରିଛି । ବ୍ୟଭିଚାର ଆଜି ଏଭଳି ଏକ ସୀମାରେ ପହଞ୍ଚିଛି ଯାହାର ବିଚାର ସେହି ଈଶ୍ୱର ହିଁ କରିପାରନ୍ତି । ସେହିଁ ହୁଏତ ଏହି ସୁକୁମାରୀ କୋମଳ ହୃଦୟା ନାରୀକୁ ଶକ୍ତି ଦେଇ ପାରନ୍ତି ପରିସ୍ଥିତିର ସାମ୍ନା କରିବାକୁ । ଏଭଳି ଏକ ଜଘନ୍ୟ ଲୋଲୁପତାର ମୂଳୋତ୍ପାଟନ ପାଇଁ ଆମର ତଥାକଥିତ ସମାଜ ଆଇନ ଯେ ବ୍ୟର୍ଥ ହେଇଛି କହିଲେ ଅତିବାହୁଲ୍ୟ ହେବନାହିଁ । ସବୁଠାରୁ ଆଶ୍ଚର୍ଯ୍ୟ ଲାଗେ ସମାଜର ଯେଉଁ ବଡ଼ ପଣ୍ଡାମାନେ ନାରୀ ପାଇଁ ନୀତିଅନୀତିର, ପାପପୂଣ୍ୟର ରେଖା ଟାଣିଛନ୍ତି ସେମାନେ ଆଜି ଏ କ୍ଷେତ୍ରରେ କିଭଳି ନୀରବ ରହିଛନ୍ତି ? କିଭଳି ବରଦାସ୍ତ କରୁଛନ୍ତି ? ଏଭଳି ଅସହାୟା ନାରୀମାନଙ୍କର ଭବିଷ୍ୟତକୁ ସୁଧାରିବା ପାଇଁ, ଆଶ୍ରୟ ଦେବାପାଇଁ ସେମାନେ କି ବ୍ୟବସ୍ଥା କରୁଛନ୍ତି ? ଏ କ୍ଷେତ୍ରରେ ତାଙ୍କର ପାପପୂଣ୍ୟର ଶାସ୍ତ୍ର, ପୁରାଣ କି ନ୍ୟାୟ ଦେଉଛି ? ନାରୀ ସମ୍ଭୋଗ ଭିତରେ ବଞ୍ଚୁଥିବା ଘୃଣ୍ୟ ଏହି ପୁରୁଷମାନଙ୍କୁ ତାଙ୍କ ସମାଜ କେଉଁ ଶାସ୍ତି ଦେଇପାରେ ବୋଲି ଭାବୁଛନ୍ତି ? ନା କେବଳ ନୀତି ଅନୀତିର ସୀମାରେଖା ନାରୀପାଇଁ ଟାଣି ସେମାନେ ଦର୍ଶକ ବନି ଯାଇଛନ୍ତି ? ଏ କ୍ଷେତ୍ରରେ କଣ ସେମାନଙ୍କର ମାନବିକ ମୂଲ୍ୟବୋଧ, ଦୟା, କ୍ଷମା, ଅନୁକମ୍ପା, ଆଦର୍ଶ ସବୁକିଛି ଶେଷ ହୋଇଯାଇଛି ?

ଆଜିକାଲି ଗ୍ରାମାଞ୍ଚଳରୁ ଆରମ୍ଭକରି ସହରାଞ୍ଚଳ ପର୍ଯ୍ୟନ୍ତ ନାରୀକୁ ବିଭିନ୍ନ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ବିଭିନ୍ନ ସମିତି, ସଂଘ ଗଢ଼ିବାରେ ଲାଗିଛି । ଯେତେ ସବୁ ନାରୀକଲ୍ୟାଣ ଅନୁଷ୍ଠାନ ଗଢ଼ାହେଉଛି ଅନ୍ୟପଟରେ ସେତେ ପରିମାଣରେ ନାରୀ ଉପରେ ଅତ୍ୟାଚାର ବଢ଼ିଚାଲିଛି । କେତେବେଳେ ଝିଅ ଭାବରେ ଆଉ କେତେବେଳେ ବୋହୂ, ପତ୍ନୀ, ମା, ଶାଶୁ, ନଣନ୍ଦ, ଭାଉଜ ରୂପରେ ସେ ନିର୍ଯ୍ୟାତିତା ହେଉଛି । ସତେକି ଝିଅଟିଏ ଜନ୍ମ ହେଲା ପରେ ପରେ ଏ ପୃଥିବୀ ତା ପାଇଁ ବନ୍ଦୀଶାଳା ପାଲଟି ଯାଇଛି ଓ ଏ ବନ୍ଦୀଶାଳାରୁ ଜନ୍ମରୁ ମରଣ ଯାଏଁ ତାର ମୁକ୍ତି ନାହିଁ । ସ୍ୱାଧୀନ ଭାବରେ ବଞ୍ଚିରହିବାର, ନିଜ ଇଚ୍ଛାମତେ ଜୀବନ ଗଢ଼ିବାର ସବୁ ମାର୍ଗ ତା ପାଇଁ ବନ୍ଦ । ତଥାପି ଏହି ନିର୍ଯ୍ୟାତିତା ମା, ଭଉଣୀମାନଙ୍କୁ ପରିସ୍ଥିତିର ସାମ୍ନା କରିବାକୁ ପଡ଼ିବ । ପଛେଇଗଲେ, ଡରିଗଲେ ଚଳିବନି । ଅତ୍ୟାଚାରିତା ହେଇ ଅନ୍ଧାର କୋଣରେ ଲୁହଗଡ଼ାଇଲେ କି ଆତ୍ମହତ୍ୟା କଲେ ପରିସ୍ଥିତି ସୁଧୁରି ଯିବନି, ସମାଜ ବଦଳି ଯିବନି । ଏଥିଲାଗି ସାହସ ଦରକାର, ମିଳିତ ସଂଗ୍ରାମ ଦରକାର । ପ୍ରତ୍ୟେକ ନାରୀପୁରୁଷ ( ଯାହାଙ୍କ ଭିତରେ ଟିକିଏ ହେଲେ ମାନବିକତା ନାମକ ଚିଜଟି ଅଛି ) ଏମାନଙ୍କ ସହିତ ସହଯୋଗ କରିବା ପାଇଁ ଆଗେଇ ଆସିବା

ଦରକାର। ପତ୍ରପତ୍ରିକା, ସମ୍ବାଦପତ୍ରର ସମ୍ପାଦକ-ସମ୍ପାଦିକା, ସମାଜ ସେବକ ସେବିକା, ସାମ୍ବାଦିକ, ଚଳଚିତ୍ରର ଅଭିନେତା, ପ୍ରଯୋଜକ, ଲେଖକଲେଖିକା ସମାଜର ସବୁସ୍ତରର ମଣିଷମାନେ, ଚିନ୍ତାବିତ୍, ଶିକ୍ଷାବିତ୍, ମନ୍ତ୍ରୀ, ଶାସକଦଳ, ଅମଲାତନ୍ତ୍ର ସମସ୍ତେ ପ୍ରତିବାଦ କରିବା ଦରକାର। ତା ନହେଲେ ଆଗାମୀ ଭାରତବର୍ଷ ଏକ ଜାରଜ ସଭ୍ୟତାକୁ ସ୍ୱାଗତ କରିବା ଲାଗି ପ୍ରସ୍ତୁତ ହେବା ଅନିବାର୍ଯ୍ୟ ହୋଇପଡ଼ିବ। ଭାରତ ବର୍ଷର ପ୍ରତିଟି ପରିବାରର ମା ଭଉଣୀମାନେ ଏଭଳି ଅବାଞ୍ଛିତ ମାତୃତ୍ୱର ଅଧିକାରିଣୀ ହେବାର ଆଶଙ୍କା ବଳବତ୍ତର ଅବଶ୍ୟମ୍ଭାବୀ ହୋଇ ପଡ଼ିବ।

*

# ଦାମ୍ପତ୍ୟ ଜୀବନରେ ସୁଖର ଚାବିକାଠି

ଦାମ୍ପତ୍ୟ ଜୀବନ ଏକ ସ୍ୱର୍ଗୀୟ ସୁଖର ଅଥବା ନର୍କର ଜୀବନ। ନିଜ ଦୃଷ୍ଟିକୋଣ, ବିଚାରବୁଦ୍ଧି ଏହାକୁ ସ୍ୱର୍ଗ କରି ପାରେ ଅଥବା ନର୍କ। ସୁଖର ଚାବିକାଠି ଦାମ୍ପତ୍ୟ ଜୀବନରେ କଣ ବୋଲି ବେଳେ ବେଳେ ମନରେ ପ୍ରଶ୍ନ ଉଠେ। ଅନେକେ ତ୍ୟାଗ, ଉତ୍ତମ ବୁଝାମଣା, ଆଡ୍‌ଜଷ୍ଟମେଣ୍ଟକୁ ବା ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ପାରିବାରିକ ଜୀବନର ସଫଳତାର ମାପକାଠି ବୋଲି କହୁଥିଲେ ହେଁ ଏସବୁ ନିଜ ଦାମ୍ପତ୍ୟ ଜୀବନରେ ପ୍ରୟୋଗ କରି ପାରନ୍ତି ନାହିଁ।

ବେଳେ ବେଳେ ସ୍ୱାମୀସ୍ତ୍ରୀ ନିଜ ବ୍ୟକ୍ତିତ୍ୱକୁ ବଳିଦେଇ ପରସ୍ପରକୁ ସୁଖି କରିବାକୁ ଇଚ୍ଛା କରିଥାନ୍ତି। ଅନେକ ସମୟରେ ଏଥି ନିମନ୍ତେ କଳହ ହେବାର ମଧ୍ୟ ଦେଖାଯାଇଥାଏ। ପରସ୍ପର ପରସ୍ପରର ତ୍ୟାଗ କିମ୍ବା ବଳିଦାନକୁ ଠିକ୍ କରି ବୁଝି ନ ପାରିବା ହେତୁ ଏହା ଘଟେ। ଯେଉଁଠି ସ୍ୱାମୀସ୍ତ୍ରୀ ଉଭୟେ ଜିଦ୍‌ଖୋର ଓ ଅସହିଷ୍ଣୁ ହୋଇଯାନ୍ତି, ସେକ୍ଷେତ୍ରରେ ପରସ୍ପର ପରସ୍ପର ସହିତ କମ୍ପ୍ରୋମାଇଜ୍ କରିପାରନ୍ତି ନାହିଁ। ତେଣୁ ଅଶାନ୍ତି ଜନ୍ମ ନିଏ। ଏଥିରେ ଅବଶ୍ୟ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। କିନ୍ତୁ ଏହି ତ୍ରୁଟିକୁ ଏଡ଼ାଇ ହେବ ଯଦି ଦୁହେଁ ଖାପଖୁଆଇ ଚଳି ପାରୁଥିବେ ଏବଂ ସେମାନଙ୍କର ବୁଝାମଣା ଥିବ। ତାହାଲେ ବାପଘର, ଶାଶୁଘରର ସମସ୍ୟା କିଛି ଆସିଲେ ହେଁ ସାମ୍ନା କରିହେବ ଏବଂ ପତିପତ୍ନୀ ଉଭୟେ ସୁଖି ହୋଇ ପାରିବେ।

ବାସ୍ତବିକ ଅତୁଟସ୍ନେହ, ଧୈର୍ଯ୍ୟ, ତ୍ୟାଗ ଏବଂ ଜଣେ ଜଣକୁ ବୁଝିପାରିବାର ନିର୍ମଳ ମନୋଭାବ ହିଁ ପାରିବାରିକ ଜୀବନକୁ ସୁଖି କରେ। ପରସ୍ପରର ଅତୀତକୁ ଭୁଲିଯାଇ ବର୍ତ୍ତମାନକୁ ଗୁରୁତ୍ୱ ଦେବା, ପରସ୍ପରର ବିତି ଯାଇଥିବା ଜୀବନକୁ କ୍ଷମାକରିବା ଏବଂ ଆଦୌ କାହାକୁ କେହି ସନ୍ଦେହ ନ କରିବାହିଁ ସୁଖର ମାପକାଠି। ଏହା ଉଚ୍ଚ ମାନବିକତାର ଦ୍ୟୋତକ। ଉଦାର ମନୋଭାବ ନ ଥିଲେ ଏହା ସମ୍ଭବ ହେବ ନାହିଁ।

ଅଳ୍ପକେ ସନ୍ତୁଷ୍ଟ ହେବା ନାରୀମାନଙ୍କ ଠାରେ ଦେଖାଯାଏ ନାହିଁ। ଯେତେ-ଥିଲେବି ସେମାନେ ଆଉଟିକେ ଅଧିକା ଚାହାଁନ୍ତି। ଯେତେ ଚୁର୍ଣ୍ଣା ଅଛି ସେତିକିରେ ପିଠା ତିଆରି କରିବା ବା ଯେତେ ବଡ଼ ଚାଦର ସେତିକିହିଁ ବିଛାଇବା ପ୍ରାୟ ଦେଖାଯାଏ ନାହିଁ। ତେଣୁ ପାରିବାରିକ ଶାନ୍ତି ଭଙ୍ଗର ଏହା କାରଣ ହୁଏ। ସ୍ୱାମୀର ରୋଜଗାର ଅନୁସାରେ ଚଳିବା ଓ ନିଜର ଅଭାବ ପୂରଣ ଲାଗି ସ୍ୱାମୀଙ୍କୁ ଆକ୍ଷେପ କରିବା, ଲାଞ୍ଚ ନେବାକୁ ବାଧ୍ୟ କରିବା ପ୍ରଭୃତି ଗୃହର ଶାନ୍ତି ନଷ୍ଟକରେ।

ଜୀବନରେ କେହି ସବୁ ଦିଗରୁ ଭଲ ସ୍ୱାମୀଟିଏ ପାଏନି କି ସବୁ ସୁଗୁଣସମ୍ପନ୍ନା ସ୍ତ୍ରୀଟିଏ ମିଳେ ନାହିଁ। ସମସ୍ତଙ୍କ ଜୀବନରେ କିଛିନା କିଛି ବାକି ରହି ଯାଏ। ତଥାପି ଉତ୍ତମ ବୁଝାମଣା ଦ୍ୱାରାହିଁ ସୁଖି ପରିବାର ଗଢ଼ିଥାନ୍ତି ଓ ପରସ୍ପରର ସ୍ନେହ, ସହିଷ୍ଣୁତା ଯୋଗୁଁ ବୈକୁଣ୍ଠ ସମାନ ଘରଟିଏ ବସିଥାଏ। ଦୁଇଜଣଙ୍କ ମିଳିତ ଉଦ୍ୟମରେ ଯେପରି ଏକ ସୁନ୍ଦର ବଗିଚା ତିଆରି କରିବା ସମ୍ଭବ ହୁଏ ସେହିପରି ଭୁଲ ବୁଝାମଣାରେ ସେହି ଫୁଲଭରା ବଗିଚାଟି ଉଜୁଡ଼ି ଯିବାର

ବି ଅନେକ ସମ୍ଭାବନା ଥାଏ। ଘରଗୃହକ ବଗିଚାକୁ ସଜାଡ଼ିବା ପାଇଁ ସ୍ୱାମୀସ୍ତ୍ରୀ ହେଲେ ମାଳୀ ସଦୃଶ। ଯେଉଁଠି ସ୍ୱାମୀ ସ୍ତ୍ରୀ ଦୁହେଁ ପରସ୍ପରକୁ ଅଧିକ ବୁଝିବାର ଚେଷ୍ଟା ଜାରି ରଖନ୍ତି, ପରସ୍ପରକୁ ସହଯୋଗ କରନ୍ତି ସେଇଠି ହିଁ ସୁଖି ଦାମ୍ପତ୍ୟ ଜୀବନ ପ୍ରତିଷ୍ଠିତ ହେଇ ଥାଏ। ପରସ୍ପର ପ୍ରତି ଆନ୍ତରିକ, ଗଭୀର ଭଲପାଇବା ନଥିଲେ ଏହା କେବେ ସମ୍ଭବ ହେଇପାରେ ନାହିଁ।

ପ୍ରତ୍ୟେକ ନାରୀର ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ରହିଛି ପୁରୁଷ ଭଳି। ସେ କେବଳ ମା, ଭଉଣୀ, ସ୍ତ୍ରୀ ଆସନରେ ରହିବାକୁ ଚାହେଁନି। ନିଜର ଅନ୍ତର୍ନିହିତ ପ୍ରତିଭା ବା ବ୍ୟକ୍ତିତ୍ୱ ଅନୁସାରେ ସମ୍ମାନିତା ହେବାକୁ ମଧ୍ୟ ଇଚ୍ଛା କରେ। ତେଣୁ ପତ୍ନୀ ଆସନରେ ଥାଇ ସେ ନିଜର ସ୍ୱାତନ୍ତ୍ର୍ୟତା ଏବଂ ବିଶେଷତ୍ୱକୁ ରକ୍ଷା କରିବା ନିମନ୍ତେ ଚାହେଁ। ଯଦି ସ୍ୱାମୀ ତାଙ୍କର ସେହି ପ୍ରତିଭାକୁ ନଷ୍ଟ କରି ଦିଅନ୍ତି ବା ଆଦୌ କିଛି ଗୁରୁତ୍ୱ ନ ଦିଅନ୍ତି ତେବେ ସେ କ୍ଷେତ୍ରରେ କଳହ, ଅଶାନ୍ତି ଉପୁଜିବାର ଯଥେଷ୍ଟ ସମ୍ଭାବନା ରହିଛି। ସେହିଭଳି ସ୍ୱାମୀର ବ୍ୟକ୍ତିତ୍ୱକୁ ସ୍ତ୍ରୀ ମଧ୍ୟ ବୁଝିବା, ଆଦର କରିବା, ସମ୍ମାନ ଦେବା ଆବଶ୍ୟକ ହେଇଥାଏ। ତାଛଡ଼ା ନାରୀର ଭୂଷଣ ହେଲା ଲଜ୍ୟା, ତ୍ୟାଗ, ସେବା, ସହନଶୀଳତା ପ୍ରଭୃତି। ଏହାକୁ ଛାଡ଼ି ସେ ଯଦି କେବଳ ନିଜର ସ୍ୱାତନ୍ତ୍ର୍ୟକୁ ପ୍ରଦର୍ଶନ କରେ, ସ୍ୱମୀକୁ ନ ମାନେ ତାହାଲେ ଅଶାନ୍ତି କଳହ ଉପୁଜିବାର ସମ୍ଭାବନା ଅଛି। କେବଳ ସ୍ୱାମୀଠାରୁ ପାଇବାର ଆଶା ରଖି ଯଦି ଜଣେ ହୁକୁମ ଜାହିର କରେ, ଦୋଷତ୍ରୁଟିକୁ ବାଛି ବସେ ସେ କ୍ଷେତ୍ରରେ ସ୍ତ୍ରୀପ୍ରତି ସ୍ୱାମୀର ଶ୍ରଦ୍ଧା, ସମ୍ମାନ, ପ୍ରେମ ରହିବ କି ?

ସ୍ୱାମୀ ମଧ୍ୟ ବିବାହ ପରେ ସ୍ତ୍ରୀକୁ ଯଦି କେବଳ ସନ୍ତାନ ଜନ୍ମ କରିବାର ଯନ୍ତ୍ରଟି ଭାବରେ ବ୍ୟବହାର କରେ ଓ ଦିନରାତି ଚାକରାଣୀ ଭଳି ଖଟାଏ ତେବେ ସ୍ତ୍ରୀର ସ୍ୱାଧୀନତା ରହିବ ନାହିଁ କି ଶ୍ରଦ୍ଧା ମଧ୍ୟ ରହିବନାହିଁ। ବରଂ ତା ଭିତରେ ଅସନ୍ତୋଷ, ବିଦ୍ୱେଷ ଭାବ ଦିନକୁ ଦିନ ବଢ଼ିଚାଲିବ। ନିଜର ସବୁ ଅସ୍ତିତ୍ୱକୁ ହରାଇ, ସବୁ ସ୍ୱାଧୀନତାକୁ ସମ୍ପୂର୍ଣ୍ଣ ଭାବରେ ହଜାଇ କେଉଁ ସ୍ତ୍ରୀ କେବେ ସୁଖି ହେଇ ପାରିବକି ? ତା ନିକଟରେ ତ ଦୁନିଆର ସବୁ ଛୋଟ ବଡ଼ ସମସ୍ୟା, ଖାଇବା, ପିନ୍ଧିବା, ମଧ୍ୟ ନଗଣ୍ୟ ହୋଇଯାଏ ଏଥିଲାଗି। ଜୀବନରେ ଶାନ୍ତି ନ ମିଳିଲେ ସୁଖ ଆସେ ନାହିଁ। ସୁଖ ପାଇଁ ନିଜର ତ୍ୟାଗ ସହିତ ଅନ୍ୟର ସ୍ନେହ, ସହଯୋଗ ଲୋଡ଼ା।

ପୁନଶ୍ଚ ବିବାହ ପରେ ମାତୃତ୍ୱ ହେଲା . ଜଣେ ସ୍ତ୍ରୀଙ୍କ ନିମନ୍ତେ ସବୁଠାରୁ ଗୌରବର ବିଷୟ। ମା' ହେଲାପରେ ପିଲାର ଯତ୍ନ ନେବା , ଘରର ଅନ୍ୟାନ୍ୟଙ୍କ ଭଲମନ୍ଦ ବୁଝିବା ଭିତରେ ସମୟ ଚାଲିଯାଏ। ତାଛଡ଼ା ପାରିବାରିକ ଜୀବନରେ ଅନେକ ଛୋଟବଡ଼ ସମସ୍ୟା ଅଛି। ନିଜର ସ୍ୱପ୍ନ, ନିଜର ଭାବପ୍ରବଣତାକୁ ଗୁରୁତ୍ୱ ଦେଇ ହୁଏ ନାହିଁ। ପିଲାଛୁଆଙ୍କର ସଂସାର ସମ୍ଭାଳିବା ଭିତରେ ଦାୟିତ୍ୱ ବଢ଼ିଯାଏ। ତା ସହିତ ଅଛି ସ୍ୱାମୀଙ୍କୁ ସୁଖି କରିବା ଓ କେତେ ଗୁଡ଼ିଏ ନୀତି ନିୟମ ରକ୍ଷା କରିବା। ସେଥିରେ ନିଜର ରୁଚି, ଇଚ୍ଛା, ଆକାଂକ୍ଷାକୁ ଗୁରୁତ୍ୱ ଦିଆଯାଇ ପାରେନା। ଏଭଳି ଭାବେ ବର୍ଷସବୁ ଘୋଡ଼ା ପିଠିରେ ଚାଲିଯାଏ। ପିଲାମାନେ ବଡ଼ ହୋଇଯାନ୍ତି। ସମୟ ବୁଢ଼ାକରିଦିଏ। ସେହିଭଳି ନିଜର ଜୀବିକା, ପିଲାସ୍ତ୍ରୀଙ୍କୁ ଭଲରେ ରଖିବା ଭିତରେ ସ୍ୱାମୀଟିର ବି ସମୟ ସରିଯାଏ। ଏହା ଭାରତୀୟ ଦମ୍ପତ୍ତିଙ୍କର ସାଧାରଣ କାହାଣୀ। ପରସ୍ପରକୁ ସୁଖରେ ରଖିବା ପାଇଁ କେହି ଚେଷ୍ଟା କରେ ତ କେହି ନିଜକୁ ସଂଶୋଧନ କରିନିଏ। କେହି ଏହା ନ ପାରିଲେ ଅଶାନ୍ତିରେ ଘାଣ୍ଟି ହେଉଥାଏ। କେହି କେହି ଭୁଲଭଟକା ସଜାଡ଼ି ନିଅନ୍ତି ବା ସଜାଡ଼ିବା ପାଇଁ ପରାମର୍ଶ ଦିଅନ୍ତି।

ତେଣୁ ଦାମ୍ପତ୍ୟ ଜୀବନ ଆରମ୍ଭ କଲାବେଳେ ସ୍ୱାମୀ ସ୍ତ୍ରୀ ଉଭୟେ ଯୋଜନା କରିପାରନ୍ତେ। ପରସ୍ପରର ରୁଚି, ସ୍ୱଭାବ, ସମସ୍ୟା ଜାଣିବାକୁ ଚେଷ୍ଟାକରନ୍ତେ। ତାଛଡ଼ା ସୁଖ ନାଁରେ କେବଳ ତ୍ୟାଗ କରିବାର କିଛି ଯଥାର୍ଥତା ନାହିଁ। ଅନ୍ୟଥା ତ୍ୟାଗ କରୁ କରୁ ଜଣେ ଅସମୟରେ ଶେଷ ହୋଇ ଯିବ। ବୁଝିବା ଦରକାର ଯେ ପତ୍ନୀ ହିଁ ସ୍ୱାମୀର ପ୍ରେରଣା ସ୍ରୋତ ଓ ସୁଖମୟ ପରିବାରର କାରଣ। ପରସ୍ପର ଏହି କଥାଟି ହୃଦୟଙ୍ଗମ କରି ପାରିଲେ ସଂସାରୀ ଜୀବନ ଯାତ୍ରା କିଛିଟା ସୁଗମ ହୋଇଯାଏ। ସ୍ୱାମୀ ଯେପରି ସ୍ତ୍ରୀଙ୍କ ମାନସିକ ଅବସ୍ଥା ପ୍ରତି ସଚେତନ ହେବା ଦରକାର ସେମିତି ସ୍ତ୍ରୀ ମଧ୍ୟ ସ୍ୱାମୀଙ୍କର ପରିସ୍ଥିତି, ସମସ୍ୟା ପ୍ରଭୃତି ସହିତ ସହଯୋଗ କରିବା ଆବଶ୍ୟକ। ଅନେକ ସ୍ତ୍ରୀ ଅଛନ୍ତି ସବୁକିଛିକୁ ନୀରବରେ ସହ୍ୟ କରିଯାନ୍ତି ଓ ମନକୁ ଖୁବ୍ ବାଧିଲେ ଆତ୍ମହତ୍ୟା କରନ୍ତି। ତେଣୁ ସବୁ ଅନ୍ୟାୟ, ନିର୍ଯ୍ୟାତନାକୁ ସହ୍ୟ କରିଯାଉଥିବା ସ୍ତ୍ରୀଟିର ମାନସିକ ଅବସ୍ଥାକୁ ଭଲଭାବରେ ହୃଦୟଙ୍ଗମ କରିବା ସ୍ୱାମୀର କର୍ତ୍ତବ୍ୟ। ପ୍ରତ୍ୟେକ ସ୍ତ୍ରୀଙ୍କର ମନସ୍ତତ୍ତ୍ୱ ହେଲା ସ୍ୱାମୀ ଠାରୁ ସହଯୋଗ, ଗଭୀର ଭଲପାଇବା ପାଇବା। ସେଣ୍ଟିମେଣ୍ଟକୁ ବାଧିଲା ଭଳିଆ କିଛି ପରିସ୍ଥିତି ହେଲେ ଦୁର୍ଘଟଣା ଘଟିବା କିଛି ବିଚିତ୍ର ନୁହେଁ। ସ୍ତ୍ରୀ କି ସ୍ୱାମୀର ଅସହାୟ ସମୟରେ ପରସ୍ପର ଯଦି ପରସ୍ପରକୁ ସାହାରା ଦେଇ ନ ପାରିଲେ ତେବେ ଦାମ୍ପତ୍ୟ ଜୀବନରେ ମର୍ଯ୍ୟାଦା ନିଶ୍ଚିତ ଭାବରେ କ୍ଷୁର୍ଣ୍ଣ ହେବ। ପରସ୍ପରର ପରସ୍ପର ପ୍ରତି ଆତ୍ମବିଶ୍ୱାସ, ଦୃଷ୍ଟିକୋଣର ପରିପକ୍ୱତା ଓ ବୁଝାମଣାହିଁ ଏକ ଦାମ୍ପତ୍ୟଜୀବନକୁ ସୁଖମୟ କରେ ଓ ଶାନ୍ତି ଆଣିଦିଏ। ଶାନ୍ତି ହିଁ ସୁଖକୁ ନିମନ୍ତ୍ରଣ କରେ।

କହିବା ବାହୁଲ୍ୟ ଯେ ଘରଣୀହିଁ ଇଚ୍ଛାକଲେ ଗୋଟିଏ ଘରକୁ ସ୍ୱର୍ଗରେ କିମ୍ବା ନର୍କରେ ପରିଣତ କରି ପାରିବେ। ଗୋଟିଏ ଆଦର୍ଶଘର ପଛରେ ଗୃହିଣୀଙ୍କ ସବୁଠାରୁ ବେଶି ଅବଦାନ ରହିଥାଏ। ଗୃହିଣୀଙ୍କର ଶିକ୍ଷା, ରୁଚି, ଶାସନନୀତି, ଶୃଙ୍ଖଳା, କାର୍ଯ୍ୟ ନିପୁଣତା, ସହନଶୀଳତା, ଧୈର୍ଯ୍ୟ ପ୍ରଭୃତି ଘରର ସଦସ୍ୟମାନଙ୍କୁ ପ୍ରଭାବିତ କରିଥାଏ। ପିଲାମାନେ ଉପଯୁକ୍ତ ବାତାବରଣରେ ବଢ଼ି ପାରିଲେ ସେହି ଭଳିହିଁ ଗଢ଼ି ଉଠିବେ। ଭବିଷ୍ୟତରେ ଆଦର୍ଶ ବାପାମା' ହିସାବରେ ଏମାନେ ନାଁ କରିବେ ଓ ମା'ଙ୍କ ଭଳି ଆଦର୍ଶବାଦୀ ହୋଇ ପାରିବେ। ପରସ୍ପରକୁ ସମ୍ମାନ ଦେବା, ନିଜନିଜର ଗୁଣ ଓ ପ୍ରତିଭାକୁ ବିକଶିତ କରିବା ସହିତ ଅନ୍ୟମାନଙ୍କ ରୁଚି ଓ ପ୍ରତିଭାକୁ ଗ୍ରହଣ କରିବା ଦ୍ୱାରାହିଁ ପରିବାରରେ ସମସ୍ତଙ୍କ ମଧ୍ୟରେ ସଦ୍‌ଭାବ ବଢ଼େ ଓ ସୁସମ୍ପର୍କ ପ୍ରତିଷ୍ଠିତ ହୁଏ। ଶାଶୂ ଶ୍ୱଶୁରଙ୍କୁ ସମ୍ମାନ ଦେବା, ସେମାନଙ୍କର ଭଲମନ୍ଦ ବୁଝିବା, ସ୍ୱାମୀଙ୍କର ଯତ୍ନନେବା ସହିତ ଅର୍ଦ୍ଧାଙ୍ଗିନୀର କର୍ତ୍ତବ୍ୟ ତୁଲାଇବା, ପିଲାମାନଙ୍କୁ ଭଲଭାବରେ ପାଳନ କରିବା, ଯଥାର୍ଥ ଶିକ୍ଷା ଦେବା ବା ପଢ଼ାପଢ଼ି ଉପରେ ଦୃଷ୍ଟି ରଖିବା ଏବଂ ବାହାର ଦୁନିଆ ସହିତ ପରିଚିତ କରାଇବା ପ୍ରଭୃତି ଗୃହିଣୀଙ୍କର ହିଁ ଦାୟିତ୍ୱ। ଏସବୁ ପାଳନ କରି ସେ ତାଙ୍କ ଦାମ୍ପତ୍ୟ ଜୀବନକୁ ସୁରୁଖୁରୁରେ ଆଗକୁ ବଢ଼ାଇ ନିଅନ୍ତି। ପୁଣି ବାପା ବାହାର ଦୁନିଆ ସହିତ ଅଧିକ ସମୟ ଜଡ଼ିତ ଥିବାରୁ ପିଲାମାନେ ମା'ଙ୍କର ସଂସ୍ପର୍ଶରେ ବେଶି ଆସନ୍ତି ଓ ତାଙ୍କର ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ ବେଶି ଭାବରେ ହୁଅନ୍ତି।

ମୋଟାମୋଟିରେ ଉତ୍ତମ ବୁଝାମଣା, ତ୍ୟାଗ ମନୋଭାବ ଏବଂ ପରିସ୍ଥିତି ସହ ଖାପଖୁଆଇ ଚାଲିବାଟାହିଁ ଦାମ୍ପତ୍ୟ ଜୀବନର ସୁଖ ପାଇଁ ବିଶେଷ ଆବଶ୍ୟକ, ଏଥିରେ ସନ୍ଦେହର ଅବକାଶ ନାହିଁ।

❀

# କେତେଦୂର ସଫଳ ନାରୀଶିକ୍ଷା, ନାରୀମୁକ୍ତିର ଆହ୍ୱାନ?

ନାରୀ ଯେ ସମାଜ ରୂପକ ଯାନର ଏକ ଅନ୍ୟତମ ଚକ ବା ପୁରୁଷ ଭଳି ନାରୀ ଯେ ପ୍ରଗତିର ଅନ୍ୟତମ ସୋପାନ ଏହା ଆଜି କାହାରି ବୁଝିବାରେ ବାକି ରହି ନାହିଁ। ତେଣୁ ନାରୀର ସ୍ୱାତନ୍ତ୍ର୍ୟତା, ସମାନ ଅଧିକାର ଏବଂ ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରାଯାଉଛି।

ପୁରୁଷଠାରୁ ଶିକ୍ଷାଦୀକ୍ଷାରେ ନାରୀ ଖୁବ୍ ପଛରେ। କାଁଭାଁ କେତେଜଣ ନାରୀ ବାସ୍ତବରେ ପୁରୁଷର ସମକକ୍ଷ ହୋଇ ପାରିଛନ୍ତି। ଏହାର ମୁଖ୍ୟ କାରଣ ହେଲା ବର୍ଷ ବର୍ଷ ଧରି ଅଜ୍ଞାନ ଅନ୍ଧକାର ଭିତରେ ନାରୀକୁ ସଢ଼ାଯାଇ ଥିଲା। ସେମାନଙ୍କୁ ଶିକ୍ଷାଦେବା ତ ଦୂରର କଥା, ସେମାନଙ୍କର ଅଧିକାର, ପ୍ରତିଭା କିଛି ଉପରେ ଗୁରୁତ୍ୱ ଆରୋପ କରାଯାଇ ନଥିଲା। ପୁରୁଷର ଶଯ୍ୟାସଙ୍ଗିନୀ ହେବା, ପୁଞ୍ଜାଏ ପିଲାର ମା ହେବା ଛଡ଼ା ନାରୀର କୌଣସି ଅବଦାନ ସଂପର୍କରେ ପୁରୁଷ ସଚେତନ ନ ଥିଲା।

ଅତୀତର ପୃଷ୍ଠା ଖୋଲିଲେ ରାଜାମହାରାଜାଙ୍କର ନାରୀ ବିଳାସର ଅନେକ ପରିଚୟ ମିଳେ। ସୁନ୍ଦରୀ ନାରୀମାନେ ରାଜାଙ୍କର ମନୋରଞ୍ଜନ କରିବା ପାଇଁ ନୃତ୍ୟବିଦ୍ୟା ଶିକ୍ଷା ନେବାକୁ ବାଧ ହେଉଥିଲେ। ନୃତ୍ୟଗୀତ ମାଧ୍ୟମରେ ସେମାନେ ପୁରୁଷର ମନକୁ ରଙ୍ଗାଉଥିଲେ। ଦିନରାତି ଚନ୍ଦନ, କୁଙ୍କୁମ, କର୍ପୂରରେ ରୂପର ଶୃଙ୍ଗାର କରିବା ଛଡ଼ା ସେମାନେ ଆଉ କିଛି ଜାଣୁ ନଥିଲେ। ପ୍ରାୟ ଶତକଡ଼ା ଅନେଶତ ଥିଲେ ''ସି'' ଅକ୍ଷର ବିବର୍ଜିତା। ବାସ୍ ଏହିଭଳି ଭାବରେ ନାରୀ ଶହଶହ ବର୍ଷ କଟାଇ ଥିଲା। ଜୀବନରେ ଆଉ କିଛି ଦେଖିବାର ସୁଯୋଗ ନଥିଲା। ଜାଣିବାର ଉପାୟ ନ ଥିଲା। କୂପମଣ୍ଡୁକ ଭଳି ତାର ଚିନ୍ତାଧାରା ଥିଲା।

ପୁଣି ଦିନ ବଦଳିଲା, ରାଜା, ମହାରାଜା, ଜମିଦାରମାନଙ୍କର ରାଜୁତି ଚାଲିଗଲା। ହାରେମ ସବୁ ଭାଙ୍ଗିଗଲା। ଆଇନ୍ ପ୍ରଣୟନ ହେଲା। ସମ୍ବିଧାନରେ ନାରୀଶିକ୍ଷା, ନାରୀ ଅଧିକାର ସମ୍ପର୍କରେ ପ୍ରଶ୍ନ ଉଠିଲା। ବହୁ ଆଗରୁ ନାରୀଶିକ୍ଷା ସଂପର୍କରେ ଇଂରେଜ ବା ମିଶନାରୀମାନେ ହିଁ ଚିନ୍ତା କରି ଥିଲେ। ସେ ଯାହାହେଉ ନାରୀ ଯେ ପୁରୁଷ ଭଳି ସମାନ ସୁଖ, ସୁବିଧା ଉପଭୋଗ କରିବା ପାଇଁ ଉପଯୁକ୍ତା ଏହା ସମସ୍ତେ ଉପଲବ୍ଧି କଲେ। ସମାନ ଭାବରେ ଶିକ୍ଷାଦାନ, ଶିକ୍ଷାଗ୍ରହଣର ବ୍ୟବସ୍ଥା ହେଲା। ସମଗ୍ର ବିଶ୍ୱରେ ନାରୀର ଅଧିକାର ସମ୍ପର୍କରେ ପ୍ରଶ୍ନ ଉଠିଲା, ସଚେତନା ନାରୀମାନେ ନିଜକୁ ସାବ୍ୟସ୍ତ କରିବାପାଇଁ ସଭାସମିତି, ସଂଗଠନ ପ୍ରଭୃତି ଗଠନ କଲେ। ୧୯୮୫ ମସିହାକୁ ଜାତିସଂଘ ଆନ୍ତର୍ଜାତିକ ମହିଳା ଦିବସ ରୂପେ ଘୋଷଣା କଲା ଓ ୧୯୯୦ କୁ ବାଳିକା ଦିବସ କୁହାଗଲା। ଏହି ଦିବସ ଗୁଡ଼ିକ ପାଇଁ ଅନେକ ପ୍ରବନ୍ଧ ଲେଖାଗଲା, ବକ୍ତୃତା ଦିଆଗଲା। ଆଇନତଃ ପୁରୁଷ ଓ ନାରୀ ସମାନ ହାରରେ ବେତନ ପାଇବା ପାଇଁ ହକ୍‌ଦାର ହେଲେ। ସବୁ ଅନୁଷ୍ଠାନ ବା ଦପ୍ତରରେ ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ହାଇସ୍କୁଲ, ମହାବିଦ୍ୟାଳୟମାନ ମଧ୍ୟ ପ୍ରତିଷ୍ଠା କରାଗଲା। ପୁନଶ୍ଚ ପଞ୍ଚବାର୍ଷିକ ଯୋଜନା ସମୟରେ ଭାରତ ଅଧିକ ଭାବରେ ନାରୀଶିକ୍ଷା, ନାରୀପ୍ରଗତି ଉପରେ ଗୁରୁତ୍ୱ ଆରୋପ କଲା। ଷଷ୍ଠ, ସପ୍ତମ ଯୋଜନା କାଳରେ

ମଧ୍ଯ ଏହି ଉଦ୍ୟମ ବାଦ୍ ଗଲା ନାହିଁ। ଏ ସମୟରେ ବିଶେଷକରି ଗ୍ରାମାଞ୍ଚଳରେ ଶିକ୍ଷା, ସୁବିଧା, ସଭ୍ୟତାରୁ ବଞ୍ଚିତା ହେଉଥିବା ମହିଳାମାନଙ୍କୁ ଅନ୍ତର୍ଭୁକ୍ତ କରାଗଲା। ପ୍ରତି ଗ୍ରାମରେ ସ୍କୁଲ ଖୋଲାଗଲା। ପ୍ରତି ଜିଲ୍ଲାରେ କଲେଜ ଖୋଲାଗଲା। ଏହାଛଡ଼ା ପୌଢ଼ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରାଗଲା। ମାଗଣାରେ ଶିକ୍ଷାଦାନ ସହିତ ବହି, ସ୍ଲେଟ୍ ପ୍ରଭୃତି ଶିକ୍ଷା ନିମନ୍ତେ ଆବଶ୍ୟକୀୟ ଉପକରଣମାନ ଯୋଗାଇ ଦିଆଗଲା। ହେଲେ ଏପର୍ଯ୍ୟନ୍ତ କେତେ ସଂଖ୍ୟାରେ ନାରୀ ଶିକ୍ଷିତା ହେଇ ପାରିଛନ୍ତି ତାହା ଏକ ପ୍ରଶ୍ନବାଚୀ ହେଇ ରହିଯାଇଛି। କଥା ହେଲା ନାରୀଶିକ୍ଷାପାଇଁ ନିଆଯାଇଥିବା ପଦକ୍ଷେପ ଗୁଡ଼ିକ ଯଥେଷ୍ଟ କି? ଏଥିରେ ଆଶାନୁରୂପ ସଫଳତା ସତରେ ଆମେ ଲାଭ କରିଛୁ ନା କେବଳ କାଗଜ କଲମରେ ଆଗେଇଛୁ? ନିପଟ ମଫସଲର ଝିଅବୋହୂମାନେ ଶିକ୍ଷାର ଅର୍ଥ କିଛି ଏବେ ବି ବୁଝିଛନ୍ତି କି?

ସତ କହିବାକୁ ଗଲେ ଏ ପର୍ଯ୍ୟନ୍ତ ଏ ଦେଶର ନାରୀ ଜାତି ସଂପୂର୍ଣ୍ଣ ସ୍ୱାକ୍ଷର ହେବାର ସୁଯୋଗରୁ ବଞ୍ଚିତା। ଏହାର କାରଣ ଶିକ୍ଷା ସଂପର୍କରେ ଆମର ଧାରଣା ନାହିଁ। ତାର ଉପଯୋଗିତା ବୁଝିନାହୁଁ ବୋଲି ଶିକ୍ଷାନେବାରେ ଆମର ଆଗ୍ରହ ନାହିଁ। ଦ୍ୱିତୀୟରେ ଅର୍ଥନୈତିକ ଅବସ୍ଥା। ଆମରି ରାଜ୍ୟ କଥା ଚିନ୍ତା କରନ୍ତୁ। ଓଡ଼ିଶା ଏକ ଅନୁନ୍ନତ, ଦରିଦ୍ର ଓ ସବୁକଥାରେ ପଛୁଆ ରାଜ୍ୟ ବୋଲି ବିବେଚିତ। ଏ ରାଜ୍ୟ ଗ୍ରାମ୍ୟବହୁଳ। ସହରରେ ଶିକ୍ଷାଲାଭ ପାଇଁ ଝିଅମାନଙ୍କ ଭିତରେ ପତିଯୋଗିତା, ପ୍ରବଳ ଆଗ୍ରହ ଦେଖାଯାଉଥିଲେ ହେଁ ଗ୍ରାମାଞ୍ଚଳରେ ଏହାର ପ୍ରବାହ ଖୁବ୍ କ୍ଷୀଣ। ଅନେକେ ପାଠ କଣ ବୋଲି ବୁଝନ୍ତି ନାହିଁ। ଜୀବନ ନିର୍ବାହ କରିବା ନିମନ୍ତେ ପତର ଗୋଟାଇବା, ଘଷି ପାରିବା, ଗାଈ ଛେଳି ଚରାଇବା, ଦଉଡ଼ି ବଳିବା, ଧାନ କାଟିବା, ବେତ, ବାଉଁଶରେ ବୁଣିବା, ଅନ୍ୟଘରେ ପାଇଟି କରିବା ପ୍ରଭୃତିକୁ ଅଧିକ ଗୁରୁତ୍ୱ ଦେଉଛନ୍ତି। କାରଣ ଦାରିଦ୍ର୍ୟର ସୀମାରେଖା ତଳେ ପ୍ରାୟ ଶତକଡ଼ା ନବେଭାଗ ଲୋକ ରହୁଥିବାରୁ ପେଟଚିନ୍ତା କରିବା ଛଡ଼ା ସେମାନେ ଅନ୍ୟ କିଛି ଚିନ୍ତା କରି ପାରନ୍ତି ନାହିଁ। ପେଟକୁ ମୁଠାଏ ଏବଂ ଦେହକୁ ଜନା ଖଣ୍ଡେ ଘୋଡ଼ାଇବା ପାଇଁ ସଂଗ୍ରାମ କରୁକରୁ ହିଁ ସେମାନଙ୍କର ଜୀବନ ଶେଷ ହେଇଯାଏ। ନା ଶିକ୍ଷା ନା ସଭ୍ୟତାରେ ପହଞ୍ଚିବାକୁ ଅବସର ମିଳେ ନାହିଁ। ଅଭାବୀ ସଂସାରରେ ସ୍ୱାମୀ, ବାପାମାଙ୍କୁ ସାହାଯ୍ୟ କରିବା ପାଇଁ ଝିଅ ବୋହୂମାନେ ବିଭିନ୍ନ କାମ କରନ୍ତି। ତେଣୁ ଶିକ୍ଷାପ୍ରତି ଆଗ୍ରହୀ ହେବେ କାହିଁକି? ଯେଉଁଠି ଦୁଇପଇସା ମିଳିବ ଓ ମୁଠେ ଭାତ ଖାଇ ହେବ ସେଠି ସେମାନେ ନିଶ୍ଚିତ ଭାବରେ ଆକୃଷ୍ଟ ହେବେ। ଏ ଶୁଖିଲା ପାଠ ସେମାନଙ୍କୁ କଣ ଦେବ ? ଅନ୍ନ ଚିନ୍ତା ତ ଯୁଗେ ଯୁଗେ ଚମତ୍କାର। ତେଣୁ ମାଗଣା ବହି, ସ୍ଲେଟ ଯୋଗାଇଦେଲେ ସେମାନେ ସମୟ ନଷ୍ଟ କରି ଅ, ଆ ମଢ଼େଇବାକୁ ଆସିବେ କାହିଁକି ?

କେବଳ ଯୋଜନା କରିଦେଲେ ତ ଚଳିବ ନାହିଁ। ଯୋଜନାର କାର୍ଯ୍ୟକାରୀତା ଓ ଉପଯୋଗିତାକୁ ବି ଦୃଷ୍ଟିରେ ରଖିବାକୁ ପଡ଼ିବ। ସେଥିପାଇଁ ବୋଧହୁଏ ଦିନାକେତେ ପୌଢ଼ଶିକ୍ଷା ଜନସାଧାରଣଙ୍କ ମଧ୍ୟରେ ଉନ୍ମାଦନା ସୃଷ୍ଟିକରି ତାପରେ ତାଲାବନ୍ଦ ହେଇଗଲା। ପୁଣି ଶତକଡ଼ା କୋଡ଼ିଏ ଭାଗ ନାରୀ ଶିକ୍ଷିତା ହୋଇ ଗଲେ ବୋଲି କଣ ଆମେ କହିବା ନାରୀମାନେ ଶିକ୍ଷିତା ହେଇଗଲେ? ଟେପା, ଢେଗା ଢେଗା ଅକ୍ଷରରେ ଦସ୍ତଖତଟେ କରିଦେଲେ କି ସଂପୂର୍ଣ୍ଣ ସ୍ୱାକ୍ଷର ହେଇଗଲା? ତାଛଡ଼ା ଶିକ୍ଷିତା ଏବଂ ଅଶିକ୍ଷିତା ନାରୀମାନଙ୍କ ଭିତରେ ଦିନକୁ ଦିନ ପ୍ରଭେଦ ବଢ଼ିଚାଲିଛି। କିଏ କାହାଠାରୁ ଦୂରେଇ ଯାଉଛନ୍ତି କହିବା ମୁସ୍କିଲ। ତେବେ ଶିକ୍ଷା ପାଇଥିବା ନାରୀମାନଙ୍କ ଭିତରେ ଯେ ଆତ୍ମାଭିମାନ, ଅହଂ ଭାବ ସୃଷ୍ଟି ହେଉଛି ଏହା ସ୍ୱୀକାର କରିବାକୁ ପଡ଼ିବ।

ଅଶିକ୍ଷିତାମାନଙ୍କୁ ସ୍ୱାକ୍ଷର କରିବା ପାଇଁ ଯତ୍ନନେବା କି ଚେଷ୍ଟା କରିବା ତ ଦୂରର କଥା, ବରଂ ସେମାନେ ଘୃଣା କରୁଛନ୍ତି। ଯାହାଫଳରେ ପରସ୍ପର ପରସ୍ପରଠାରୁ ଦୂରେଇ ଯିବାକୁ ଇଚ୍ଛା କରୁଛନ୍ତି। ତେଣୁ ଶିକ୍ଷିତାମାନେ ଯେ ଅଶିକ୍ଷିତାମାନଙ୍କୁ ସ୍ୱାକ୍ଷର କରିବା ଲାଗି ବହୁଳ ସଂଖ୍ୟାରେ ଆଗେଇ ଆସିବେ ଏକଥା ଆପାତତଃ ଆଶା କରିବା ଉଚିତ ନୁହେଁ।

ତାହାହେଲେ ନାରୀଶିକ୍ଷାର ପ୍ରଗତି ହେବ କିପରି ? କେବଳ ମହମବତୀ, ଡିଆସିଲି ରଖିଦେଲେ ମହମବତୀ ଯେ ଆପେ ଆପେ ଜଳି ଉଠିବ ଓ ଅନ୍ଧକାର ଚାଲିଯିବ ଏଭଳି ଭାବିବା ଠିକ୍ ନୁହେଁ। ମହମବତୀରେ ଅଗ୍ନି ସଂଯୋଗ କରିବା ଓ ଡିଆସିଲି ଜଳାଇବା ପାଇଁ ଏକ ସଂଯୋଜକର ବା ମାଧ୍ୟମର ଆବଶ୍ୟକତା ରହିଛି, ଯାହା ଅଭାବରେ ମହମବତୀ କେବେ ବି ଜଳି ପାରିବନି। ପ୍ରକୃତରେ ଆମର ଏହି ସଂଯୋଜକଟିର ହିଁ ଅଭାବ ରହିଛି। ଆମେ ମହମବତୀ ଓ ଡିଆସିଲି ପାଇ ଭାରି ଖୁସି ଯେ ବତୀ ଜଳିବ। ଅଥଚ କେମିତି ଜଳିବ କାହାରିକୁ ଜଣା ନାହିଁ। ଆମ ସମସ୍ତଙ୍କୁ ମନେ ରଖିବାକୁ ହେବ ଯେ ବତୀ ଜଳାଇବା ପାଇଁ ଯେତେ ଦିନ ପର୍ଯ୍ୟନ୍ତ ଅଭିଜ୍ଞ ମଣିଷଟେ ନ ଆସିଛି ସେତେଦିନ ପର୍ଯ୍ୟନ୍ତ ଆମ ସମସ୍ତଙ୍କୁ ଅନ୍ଧକାରରେ ହିଁ ରହିବାକୁ ପଡ଼ିବ। ସେତେଦିନ ପର୍ଯ୍ୟନ୍ତ ନାରୀଶିକ୍ଷାର ପୂର୍ଣ୍ଣାଙ୍ଗ ବିକାଶ କେବେ ସମ୍ଭବ ହେବ ନାହିଁ। କେବଳ ଶିକ୍ଷା ନାଁରେ ସ୍ଲୋଗାନ୍ ହିଁ ହେଉଥିବ ଓ କାଗଜର Stastics ରେ କେବଳ ସଂଖ୍ୟା ବଢ଼ୁଥିବ। ଅର୍ଥନୈତିକ ଅବସ୍ଥା ନ ସୁଧୁରିଲା ଯାଏଁ ଜ୍ଞାନର ଅର୍ଥ ନ ବୁଝିଲାଯାଏଁ ଏଭଳି ଉପର ଠାଉରିଆ କାରବାର ଚାଲିଥିବ। ଶିକ୍ଷିତ ପରିବାରର ନାରୀମାନେ ପୁରୁଷାନୁକ୍ରମିକ ଶିକ୍ଷିତା ହେଇ ଚାଲିଥିବେ।

ନାରୀଶିକ୍ଷା ଭଳି ଆଉ ଗୋଟାଏ ପ୍ରଶ୍ନବାଚୀ ହେଲା ନାରୀ ମୁକ୍ତିର ଆହ୍ୱାନ। ଏହା ମଧ୍ୟ ଆଜି ଏକ ସ୍ଲୋଗାନ୍‌ରେ ପରିଣତ ହେଇଛି। ଝିଅ ଜୀବନର ଆରମ୍ଭ ଓ ଶେଷ ଦେଖିଲେ ମନେହୁଏ ଝିଅମାନେ ନିଜେ ହିଁ ପଞ୍ଜୁରି ଭିତରେ ମୁଣ୍ଡ ଭର୍ତ୍ତି କରି ଦେଉଛନ୍ତି। ନାରୀ କୌଣସି ଦିନ ସ୍ୱାଧୀନତା ଚାହିଁନି। ବରଂ ଶୃଙ୍ଖଳ ତାର କାମ୍ୟ ଓ ସେଥିରେ ବାନ୍ଧି ହେଇ ରହିବା ହିଁ ନାରୀ ଜୀବନ କହି ନିଜର ମୁକ୍ତିର ପଥ ବନ୍ଦ କରି ଦେଇଛି।

ଆଜି ଅମେ ଶିକ୍ଷିତା, ଉଚ୍ଚଡ଼ିଗ୍ରୀଧାରିଣୀ ବୋଲି ଦୁନିଆ ଦରବାରରେ ଡିଣ୍ଡିମ ପିଟୁଛୁ। ଚାକିରି କରି ସ୍ୱାଧୀନ ଭାବରେ ଜୀବନ ଯାପନ କରୁଛୁ ବୋଲି ଏହାକୁ ନାରୀ ସ୍ୱାଧୀନତା ବୋଲି ଭାବୁଛୁ। ନିଜର ଅକ୍ତିଆରରେ ସ୍ୱାମୀକୁ ରଖିଦେଲେ ଭାବୁଛୁ ମୁକ୍ତ ହୋଇଗଲୁ। କିନ୍ତୁ ଏହାକୁ କଣ ସ୍ୱାଧୀନତା କୁହାଯାଏ। ପୁଣି ସ୍ୱାଧୀନତା କାହା ଠାରୁ ? ପୁରୁଷ ନାରୀ ଦୁହିଁଙ୍କର ସ୍ୱାଧୀନ ଜନ୍ମ। ତାହାଲେ କିଏ କାହାଠାରୁ ସ୍ୱାଧୀନତା ନେବ ବା ଦେବ ? ଚାକିରି କରିବା, ନିଜ ରୋଜଗାରରେ ନିଜ ପେଟ ପୋଷିବାଟା ସ୍ୱାଧୀନ ମନୋବୃତ୍ତିର ପରିଚୟ ଦିଏ କିନ୍ତୁ ଏହା ନାରୀର ସ୍ୱାଧୀନତା ବୋଲି ଆମେ କଣ କହିବା ?

ଏ ସ୍ୱାଧୀନତା ଏକ ମାନସିକ ଚିତ୍ତବୃତ୍ତି। ପୁରୁଷର ବିନା ସାହାଯ୍ୟରେ ନିରାପଦରେ ବଞ୍ଚିବା ଓ ସମାଜର ସବୁ ପରିସ୍ଥିତିକୁ ସାମ୍ନା କରି ସେଥିରେ ସଫଳତା ହାସଲ କରିବା। କିନ୍ତୁ ଆଜିଯାଏଁ ପୁରୁଷର ବିନା ସାହାଯ୍ୟରେ ନାରୀ ବଞ୍ଚିବା ପାଇଁ ସମର୍ଥ ହୋଇ ପାରିଛିକି ? କାହିଁକି ଏକୁଟିଆ କୁଆଡ଼େ ଯିବାକୁ ନିରାପଦ ମନେକରୁନା ? କାହିଁକି ସନ୍ଧ୍ୟା ହୋଇଯିବ ବୋଲି ସେ ଅଫିସରୁ କି ଯୁଆଡ଼େ ଯାଇଥିବ ତରବରରେ ପଳାଇ ଆସୁଛି। ଘରେ ଝିଅ ଯେତେ ପାଠ ପଢ଼ିଲେ, ଯେତେ ବଡ଼ ଚାକିରି କଲେ ମଧ୍ୟ ବାପାମା କାହିଁକି କୁଆଡ଼େ ଏକୁଟିଆ ଛାଡିବାକୁ ରାଜି ହେଉ ନାହାନ୍ତି କି ତାର ଫେରିବାରେ ଡେରି ହେଇଗଲେ ବ୍ୟସ୍ତ, ବିବ୍ରତ,

ହେଇ ପଡୁଛନ୍ତି? ମାର୍କେଟ, ସିନେମା, ମନ୍ଦିର ଯେଉଁଠିକୁ ଯାଅନା କାହିଁକି ଜଣକୁ ଗାର୍ଡ ଭଳିଆ ନେବାକୁ ଝିଅଟି ଜଣ ନିଜେ ଚିନ୍ତା କରୁ ନାହିଁ? ତାର ନିରାପତ୍ତା ଏତେ ବିପନ୍ନ ଯେ, ସେ ମନବଳରେ ବି ଏତେ ଦୁର୍ବଳ ଯେ ନିଜଠାରୁ ଅତି ସାନ ଭାଇଟିକୁ ସଙ୍ଗରେ ନେଲେ ସାହସ ପାଉଛି। ସେମିତି କିଛି ଆସନ୍ନ ଦୁର୍ଘଟଣା ଘଟିଲେ ଏଇ ଭାଇରୂପକ ବଡ଼ିଗାର୍ଡଟି କିଛି କରିପାରିବ ନାହିଁ। ଅଥଚ ସେହି ଭରସା। ଏକୁଟିଆ ବାହାରିଲେ ବି ଘରେ ବାରଣ କରିବେ, ଶାଇପଡିଶା ଅଣ୍ଡିରୀ ଚଣ୍ଡୀ କହିବେ। ଏଭଳି ଏକ ବାତାବରଣ ଭିତରେ ଝିଅଟିକୁ ଭୀରୁ କରି ଦିଆଯାଏ। ପରିସ୍ଥିତି, ପରିବେଶକୁ ସାମ୍ନା କରିବା ପାଇଁ ସୁଯୋଗ ଦିଆଯାଏ ନାହିଁ। ତେଣୁ ନାରୀ ନିଜକୁ ସ୍ୱାଧୀନ ବୋଲି କହିବ କେମିତି? ପୁନଶ୍ଚ ନାରୀ ସ୍ୱାଧୀନତାକୁ ଦାବୀ କରିବା ଅର୍ଥ ହେଲା ପରୋକ୍ଷରେ ନିଜର ପରାଧୀନତ୍ୱକୁ ସ୍ୱୀକୃତି ଦେବା।

ସ୍ୱାଧୀନତା ଏମିତି ଏକ ଜିନିଷ ତାକୁ ମାଗିଲେ ମିଳେ ନାହିଁ। ତାକୁ ଛଡ଼େଇ ଆଣିବାକୁ ପଡ଼େ। କିନ୍ତୁ ଛଡ଼େଇବା ପାଇଁ ସେହି ପରିମାଣରେ ମନର ବଳ ଥିବା ଆବଶ୍ୟକ। ଏହା ସତ ଯେ ସ୍ୱାଧୀନତାକୁ ଛଡ଼େଇବାର ସୁଯୋଗ କି ଚିନ୍ତା ନାରୀ କେବେ କରିନାହିଁ। ନାରୀ ମୁକ୍ତି ଏକ ଫାଙ୍କା ଆୱାଜ। ନାରୀ ମନଭିତରେ ଏଯାଏଁ ରାତ୍ରିରେ ଏକୁଟିଆ ଯିବା, ପୁରୁଷମାନଙ୍କର ସାମ୍ନାକରିବାର ବଳ ଆସି ନାହିଁ। ଅଧିକନ୍ତୁ ଯେ କୌଣସି ବୟସର ନାରୀର ସାମାଜିକ ନିରାପତ୍ତା ଦିନକୁ ଦିନ ଅଧିକ ବିପନ୍ନ ହୋଇଯାଉଛି। ଏଭଳି ଏକ ବାତାବରଣ ଭିତରେ ନାରୀ ମୁକ୍ତିକୁ କିଏ ପଚାରୁଛି? କିଏ ଏହାର ଅର୍ଥ ବୁଝୁଛି। ସେଥିପାଇଁ ତ ଘର ଭିତରେ ଜଣେ ଶିକ୍ଷିତା ପ୍ରତିଭାମୟୀ ନାରୀକୁ ବନ୍ଦକରି ଦିଆଯାଉଛି। ସେ ବାହାର ଦୁନିଆକୁ ଦେଖିବାର ସୁଯୋଗ ପାଉନାହିଁ। ସ୍ୱାମୀ, ଶାଶୁ, ଶ୍ୱଶୁର, ଜାଆ, ନଣନ୍ଦ, ପିଲାଛୁଆଙ୍କ ସଂସାର ସମ୍ଭାଳୁ ସମ୍ଭାଳୁ ସାରା ଜୀବନ କଟିଯାଏ ଏମାନଙ୍କର। ଅବିବାହିତା ଥିଲାବେଳେ ଯାହା କରିବାର ଭାବପ୍ରବଣତା, ଉତ୍ସାହ, ସ୍ୱପ୍ନ, ଯୋଜନା ଥାଏ, ବିବାହ ହେଲାପରେ ଖୁବ୍‌କମ୍ ଏହାର ବିନିଯୋଗ କରିବାର ସୁଯୋଗ ମିଳେ। ସେଇଥି ପାଇଁ ଭଲ ନାଚୁଥିବା, ଗାଉଥିବା, ଝିଅଟି ସେ କଳାଟିକୁ ଛାଡ଼ିଦିଏ, ଭଲ ଲେଖୁଥିବା ଝିଅର ଲେଖା ହଜିଯାଏ, ଅଭିନୟ କରି ନାଁ କରିଥିବା ଝିଅଟି ବିବାହ ପରେ ମଞ୍ଚ ବା ରୂପେଲି ପର୍ଦ୍ଦା ଛାଡିଦେବାକୁ ବାଧ୍ୟହୁଏ। ଏହିଭଳି ଭାବରେ କେତେ ଭଲ ଖେଳାଳି, ଗାୟିକା, ନର୍ତ୍ତକୀ, ଲେଖିକା ପ୍ରଭୃତିଙ୍କ ପ୍ରତିଭା ହଜିଯାଇଛି। ଏସବୁ ଟ୍ୟାଲେଣ୍ଟ ସଂସାରୀ ଜୀବନରେ ଅତି ଗୌଣ ହୋଇ ପଡ଼ିଛି। ସାଧାରଣ ଘରଣୀ ଭଳି ସେମାନେ ବି ତେଲ ଲୁଣ ସଂସାରର ସେହି ଗତାନୁଗତିକ ଜୀବନ ଯାତ୍ରା ଭିତରେ ନିଜକୁ ମିଶାଇ ଦିଅନ୍ତି। ନିଜକୁ ଟିକେ ଭିନ୍ନେ କରି ଦେଖିବାକୁ ସୁଯୋଗ ପାଆନ୍ତି ନାହିଁ। ଏ ଝିଅଟି ସେ ଦିନେ ନାଚୁଥିଲା, ଗାଉଥିଲା, ଲେଖୁଥିଲା, ନେତୃତ୍ୱ ନେଉଥିଲା, ସଂଗଠନ କରି ପାରୁଥିଲା, ସମାଜ ସେବିକା ଥିଲା, ନେତ୍ରୀ ଥିଲା ନିଜେ ଝିଅଟି ବି ଭୁଲିଯାଏ। ଦୁଃଖ କରିବାକୁ ବି ସମୟ ମିଳେ ନାହିଁ। ତାହାଲେ ନାରୀ ସ୍ୱାଧୀନତାର ଅର୍ଥ କଣ? କାହିଁକି ବିବାହିତା ନାରୀଟି ଏସବୁ ଛାଡ଼ିବାକୁ ବାଧ୍ୟ ହୁଏ? କାହିଁକି ସେ ନିଜ ପ୍ରତିଭାର ବିକାଶ ନିମନ୍ତେ ସୁଯୋଗ ପାଏ ନାହିଁ? ପାଇବା ଲାଗି ଦାବୀ କରେ ନାହିଁ? ଅଧିକାର ଖୋଜେ ନାହିଁ? ଅନ୍ୟ ପକ୍ଷରେ ଦେଖିଲେ ସେ ଏଇଥିଲାଗି ଜରେ ନାହିଁ, କାରଣ ତା'ର ସଂସାର ଭାଙ୍ଗିଯିବ, ହୁଏତ ଅଶାନ୍ତି ହେବ ବା ସ୍ୱାମୀ ଛାଡ଼ପତ୍ର ଦେବେ, ନିର୍ଯ୍ୟାତନା ଦେବେ ବା ଘରର ଅନ୍ୟମାନେ ତାକୁ ଭୁଲ ବୁଝିବେ। ତାର ଶାନ୍ତିପୂର୍ଣ୍ଣ, ସୁଖର ସଂସାର ଭାଙ୍ଗିଯିବ। ଅଥବା ପିଲାମାନଙ୍କର ଯତ୍ନ ନେବାକୁ ସମୟ ମିଳିବ ନାହିଁ, ଅନ୍ୟମାନେ ତା ଲାଗି

ଅସୁବିଧାର ସମ୍ମୁଖୀନ ହେବେ। ଏଇ ଭୟରେ ହିଁ ଏତେ ପ୍ରତିଭାମୟୀ ନାରୀଟି ଭାତତରକାରି ରାନ୍ଧି ସାଧାରଣ ନାରୀଭଳି ଜୀବନ କଟାଇ ଦିଏ ଓ ଶେଷକୁ ଛ' ଝଣ୍ଡି କାଠରେ ଜୁହା ହୋଇ ଯାଏ ମଶାଣିକି। ଖାଇବା, ପିନ୍ଧିବା, ପିଲାଜନ୍ମ କରିବା ଓ ପିଲାମାନଙ୍କୁ ମଣିଷ କରିବା କେବଳ ଯଦି ନାରୀର ଧର୍ମ ତେବେ ଶିକ୍ଷାର ମୂଲ୍ୟ କଣ? ସ୍ୱାଧୀନତା ଖୋଜିବାର ଅର୍ଥ କଣ? ଏତେ ସ୍ଲୋଗାନ୍, ଏତେ ସଭାସମିତିରେ ଅଧିକାର ପାଇଁ ପାଟିତୁଣ୍ଡର ବି ମୂଲ୍ୟ କଣ? ତାହାଲେ ଏଇଭଳି କଣ ଏ ଯୁଗରେ ବି ସେମାନଙ୍କ ଜୀବନ ରୁଟିନ୍ ପାଇଟି ଯିବ? ନାରୀମାନେ ନିଜ ରୁଚିରେ, ନିଜ ଇଚ୍ଛାମୁତାବକ ଜୀବନଟେ ଜୀଇଁ ପାରିବେ ନାହିଁ ? କିନ୍ତୁ ସେ ସୁଯୋଗ କିଏ ଦେବ– ଆପଣ ନା ଆମର ସମାଜ?

※

# ନାରୀର ସାମାଜିକ ସମ୍ମାନର ପ୍ରଶ୍ନ

ସମାଜକୁ ଯେ ମଣିଷ ଗଢ଼ିଥାଏ ବେଳେବେଳେ ଏକଥା ସେହି ମଣିଷ ଭୁଲିଯାଏ। ସମାଜ ସେତେବେଳେ ଶକ୍ତିଶାଳୀ ହୋଇ ମଣିଷକୁ ନିୟନ୍ତ୍ରଣ କରେ। ତେଣୁ ମଣିଷର ସମ୍ମାନ ପଛରେ ସମାଜର ପ୍ରଶ୍ନ ଉଠେ। ଆଉ ଏଇଥି ପାଇଁ ଯେ କେତେ ଜୀବନ ବଳି ପଡ଼େ ତା'ର କିଛି ଇୟତ୍ତା ନାହିଁ।

ଆପଣ ରୁନୁ କଥା ଜାଣିଛନ୍ତି କି? ରୁନୁ ଏକ ସମାଜ ଭୟାଳୁ ଝିଅ। ଆତ୍ମସମ୍ମାନ ପ୍ରତି ତା'ର ସବୁବେଳେ ସଜାଗ ଦୃଷ୍ଟି। ନିଜକୁ ଯେତେ କଷ୍ଟ ହେଉ, ମନକୁ ଯେତେ ବାଧା ହେଉ ପଛେ ସାମାଜିକ ସଂପର୍କ, ସମ୍ମାନରେ ଯେଉଁଭଳି ଆଞ୍ଚ ନ ଆସେ ସେଥିପ୍ରତି ସେ ସର୍ବଦା ସଜାଗ। ଏ ଅଭ୍ୟାସ ତା'ର ପିଲାଦିନରୁ। ଏହା ଏକ ଭଲ ଗୁଣ ନିଶ୍ଚୟ। କିନ୍ତୁ ସମାଜ ପାଇଁ କ'ଣ ଜୀବନକୁ ବଳିଦେବାରେ ଯଥାର୍ଥତା ଅଛି ? ଅନ୍ୟାୟକୁ ଆଖି ବୁଜିଦେବା କଣ ଜଣେ ବିବେକଶୀଳା ଝିଅର କର୍ତ୍ତବ୍ୟ ?

ଉଚ୍ଚପଦସ୍ଥ ଅଫିସରଙ୍କ ସ୍ତ୍ରୀ ହୋଇଥିବାରୁ ରୁନୁ ନିଜର ସାମାଜିକ ପ୍ରତିଷ୍ଠା ବା Social position ସଂପର୍କରେ ଖୁବ୍ ସଚେତନ। କିନ୍ତୁ ଭିତରେ ଦେଖିଲେ ସ୍ୱାମୀସ୍ତ୍ରୀଙ୍କର ଅପଟ କହିଲେ ନ ସରେ। ସ୍ୱାମୀସ୍ତ୍ରୀ ମାରପିଟ ହେବା ଏକ ଦୈନନ୍ଦିନ ଘଟଣା। ତା ସହିତ ରେଡ଼ିଓ ଭାଙ୍ଗିବା, ଟି. ଭି. ଗ୍ଲାସ୍ ଉପରକୁ ପେପର ୱେଟ୍ ଫିଙ୍ଗିବା, ଫୁଲଦାନୀ କଚାଡ଼ିବା ଏମିତି ଅନେକ ଛୋଟବଡ ଘଟଣା ରହିଛି। ଏହା ଦିଜଣଙ୍କ ଭିତରେ ସୀମିତ ରହନ୍ତା ଭଲା। କିନ୍ତୁ ପିଲା ଯୋଡ଼ାଏ ଅଛନ୍ତି। ମା' ବାପାଙ୍କର କଳି ଓ ଭଙ୍ଗାରୁଜାର ସେମାନେ କେବଳ ନୀରବ ସାକ୍ଷୀ ମାତ୍ର ପାଲଟି ଥାନ୍ତି। ଛୋଟ ପିଲା ହେଲେ କ'ଣ ହେବ, ନିଜ ବାପାମା'ଙ୍କର ଏହି ଗଣ୍ଡଗୋଳ ଦେଖି ସେମାନେ ଅନେକ ସମୟରେ ଚିନ୍ତାରେ ଭାଙ୍ଗି ପଡ଼ନ୍ତି। ଅଥଚ ପିଲାମାନଙ୍କ ଉପରେ ତାହା ଯେ ଖରାପ ପ୍ରଭାବ ପକାଉଛି ଏ ସଂପର୍କରେ କାହାରି ଖିଆଲ ନାହିଁ। ସ୍ୱାମୀଙ୍କର ମଦ ଆଉ ନାରୀନିଶାକୁ ରୁନୁର ଜିଦ୍‌ଖୋର, ପ୍ରଚଣ୍ଡ ଅଭିମାନୀ ଗୁଣ। କେହି କାହାକୁ ବୁଝିବାକୁ ରାଜି ନୁହନ୍ତି। କେହି କାହାର ହାର୍ ମାନିନେବାକୁ ପ୍ରସ୍ତୁତ ନୁହନ୍ତି। ପୁଣି କେହି କାହାଠାରୁ ଦୂରେଇ ଶାନ୍ତିରେ ରହିବାକୁ ବି ଚିନ୍ତା କରନ୍ତି ନାହିଁ। କିନ୍ତୁ ଦିଜଣ ବନ୍ଧୁବାନ୍ଧବଙ୍କ ମେଳରେ ପାର୍ଟିପିକ୍‌ନିକ୍‌ରେ ଯୋଗ ଦିଅନ୍ତି। ଅନେକ ସାମାଜିକ ଅନୁଷ୍ଠାନରେ ସେମାନଙ୍କୁ ଦେଖିବାକୁ ମିଳେ। ବାହାରେ କେହି ଜାଣିବେ ନାହିଁ ଯେ ଏମାନଙ୍କ ଭିତରେ ଏକ କାଚକାନ୍ଥ ଠିଆ ହୋଇଛି ବୋଲି। କେହି କାହାରି ସହିତ କମ୍ପ୍ରମାଇଜ କରିବାକୁ ପ୍ରସ୍ତୁତ ନୁହନ୍ତି। ଚିହ୍ନଣା ଅଲଗା, କଥାବାର୍ତ୍ତା ପ୍ରାୟ ନାହିଁ। ମିଷ୍ଟରଙ୍କ ଖାନାପିନା ଅଧିକାଂଶ ଦିନ ବାହାରେ, ପିଲାମାନେ ମା'ଙ୍କ ପାଖକୁ ଗଲେ ମା' ଚିଡ଼ି ଉଠନ୍ତି। ବାପାଙ୍କଠାରୁ ମଧ ସ୍ନେହ, ଶ୍ରଦ୍ଧା ଆଶା କରିବା ବୃଥା। ମା' ବାପା ନଥିବା ତ ଗୋଟେ ପ୍ରକାର। କିନ୍ତୁ ଥାଇ ନ ଥିଲା ଭଳି ଅବହେଳିତ ହେବାଟା ନିହାତି ଦୁଃଖଦାୟକ, ଚର୍ଚ୍ଚାର ବିଷୟ ନିଶ୍ଚୟ।

କଥାହେଲା ଏମିତି କେତେଦିନ ଚାଲିବ? କେତେଦିନ ସମାଜ ଆଖିରେ ଧୂଳି ଦେଇ ସୁଖୀ ଦମ୍ପତିର ଅଭିନୟ କରାଯାଇ ପାରେ? ଏହାର ପରିଣତି କ'ଣ? ଏଥିରେ ପିଲାମାନଙ୍କର ଭବିଷ୍ୟତ ମଧ୍ୟ ଏକ ବିରାଟ ପ୍ରଶ୍ନ। ପିଲାମାନଙ୍କୁ ଗଢ଼ିବାର ଦାୟିତ୍ୱ ମା'ବାପାଙ୍କର। ଉଚ୍ଚଶିକ୍ଷିତା ବାପାମା' ହେଇ ଯଦି ସେମାନେ ଏଭଳି ପରିବେଶ ଭିତରେ ପିଲାମାନଙ୍କୁ ବଢ଼ାଇ ଆଣନ୍ତି, ସେହି ପିଲାମାନେ ବଡ଼ ହେଲେ ତାଙ୍କର ବାପାମା'ଙ୍କ ପ୍ରତି ସ୍ନେହ, ଭକ୍ତି, ସମ୍ମାନ ରହିବ କି? ବରଂଚ ସେମାନେ ଘୃଣା କରିବେ, ଦୋଷ ଦେବେ। ପିଲାମାନେ ଯେ ଦେଶର, ଜାତିର ଭବିଷ୍ୟତ। ସେମାନଙ୍କୁ କେବଳ ନିଜ ବ୍ୟକ୍ତିଗତ ସମ୍ପତ୍ତି ଭାବରେ ମନଇଚ୍ଛା ବ୍ୟବହାର କରି ନଷ୍ଟ କରିଦେବା କ'ଣ ବାପମା'ଙ୍କର କର୍ତ୍ତବ୍ୟ?

ତେଣୁ ସାମାଜିକ ସମ୍ମାନକୁ ଅକ୍ଷୁର୍ଣ୍ଣ ରଖି, ନିଜନିଜ ଭିତରେ ଆଦୌ ଆଡ଼ଜଷ୍ଟ ନକରି ଜୀବନକୁ ଘୋଷାରି ଚାଲିବାର କୌଣସି ଅର୍ଥ ନାହିଁ। ମୋ ମତରେ ଯେତେବେଳେ ସ୍ୱାମୀ ଓ ସ୍ତ୍ରୀ ଭିତରେ ସବୁ ସଂପର୍କର ଡ଼ୋରି କଟିଯାଏ ଓ ପରସ୍ପର ଅନୁଭବ କରନ୍ତି ଯେ କେହି କାହାରି ପାଖରେ ଆଉ ରହିବା ଆଦୌ ସମ୍ଭବ ନୁହେଁ, ସେତେବେଳେ ସବୁଠୁ ଭଲ ଉପାୟ ହେଲା ଦୁଇଜଣ ଅଲଗା ହୋଇଯିବା। ଛାଡ଼ପତ୍ର ଦେବାକୁ ଇଚ୍ଛା ନ କଲେ କିଛି ମାସ, କିଛି ବର୍ଷ ଅଲଗା ହୋଇ ଦୂରେଇ ଯିବାଟା ଭଲ। ଏ ଭିତରେ ହୁଏତ ପରସ୍ପର ଆତ୍ମ ଅନୁଶୋଚନା ବା ଆତ୍ମତର୍ଜ୍ଜନା କରିବାର ସୁଯୋଗ ପାଇବେ। ହୁଏତ ନିଜର ଭୁଲ ପାଇଁ ଅନୁତାପ କରିପାରିବେ ଅଥବା କମ୍ପ୍ରମାଇଜ କରିନେବାର ପ୍ରଶ୍ନ ଉଠାଇବେ। କିନ୍ତୁ ରୁନୁ ଭଳି ରାସ୍ତା ବାଛିନେଲେ ସଂପର୍କ କେବଳ ଦିନକୁ ଦିନ ତିକ୍ତ ହୋଇ ଉଠିବ ସିନା କିଛୁ ସମାଧାନ ନ ଥିବ। ବରଂଚ କେତୋଟି ନିରୀହ ଶିଶୁ ସେମାନଙ୍କର ସୁନ୍ଦର ଭବିଷ୍ୟତ ନଷ୍ଟ କରିବସିବା ହିଁ ସାର ହେବ। ଏଭଳି ପରିସ୍ଥିତିର ସାମ୍ନା କରୁଥିବା ରୁନୁ ଭଳି ଝିଅର ଅଭାବ ଆମ ସମାଜରେ ନାହିଁ। ଅନେକ କ୍ଷେତ୍ରରେ ନିଜେ ଆଡ଼ଜଷ୍ଟ କରିବେ ନାହିଁ ପୁଣି କେହି ଆଡ଼ଜଷ୍ଟ କଲେ ଗ୍ରହଣ କରିବେ ନାହିଁ। ଏଭଳି ପରିସ୍ଥିତିରେ ପିଲାମାନେହିଁ ବଳି ପଡ଼ିଥାନ୍ତି। ବାପାମାଙ୍କର ଏଭଳି ଜୀବନଯାତ୍ରା ଛୋଟ ପିଲାମାନଙ୍କର ମାନସିକତା ଉପରେ ବେଶି ରେଖାପାତ କରିଥାଏ। ତେଣୁ କେହି ଘର ଛାଡ଼ିଦିଏ, କେହି ଆୱାରା ହେଇଯାଏ ଅଥବା ପେସିମିଷ୍ଟ ହୋଇଯାନ୍ତି। ନିଜ ବ୍ୟକ୍ତିଗତ ଜୀବନରେ ସେମାନେ ସଂସାର ପ୍ରତି ବିତୃଷ୍ଣା ପ୍ରକାଶ କରିଥାନ୍ତି।

ସାମାଜିକ ସମ୍ମାନର ପ୍ରଶ୍ନ ଉଠିଲାବେଳେ ନାରୀର ସାମାଜିକ ସ୍ଥିତି ବା ସ୍ଥାନ ସଂପର୍କରେ ଜାଣିବାକୁ ଆପେ ଆପେ କୌତୂହଳ ପ୍ରକାଶ ପାଏ। ଦେଶ ସ୍ୱାଧୀନ ହେବାର ଚାରିଦଶକ ପାରିହେଇ ଗଲାଣି। ବହୁ ଉତ୍‌ଥାନ, ପତନ, ରକ୍ତାକ୍ତ ସଂଗ୍ରାମ, ଅସହଯୋଗ, ଅହିଂସ ଆନ୍ଦୋଳନ, ନିର୍ଯ୍ୟାତନା ପରେ ଆମେ ସ୍ୱାଧୀନତା ପାଇଛୁ। ଆଜି ଆମର ଆତ୍ମସମୀକ୍ଷା କରିବାର ସମୟ ଆସିଛି। କଣ ପାଇଛୁ ଆଉ କଣ ହରାଇଛୁ? ଏ ଭିତରେ ଦେଶ ଆଗେଇଛି, ଦାରିଦ୍ର୍ୟ ବିରୋଧରେ ସଂଗ୍ରାମ ଚାଲିଛି। ଶିକ୍ଷା, ଶିଳ୍ପ, ବାଣିଜ୍ୟ, ଅର୍ଥନୈତିକ ଅବସ୍ଥା ସବୁଥିରେ ବିକାଶ ଘଟିଛି। ବିଶେଷକରି ନାରୀମାନଙ୍କର ଶିକ୍ଷାର ପ୍ରସାର ଓ ଶିଶୁ ମାନଙ୍କର ଅକାଳମୃତ୍ୟୁ ରୋକିବା, ସେମାନଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଇବା, ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ ପ୍ରଭୃତି ସଂପର୍କରେ ଭାରତ ସରକାର ବିଶେଷ ସଚେତନ ହେଲାଭଳି ମନେହୁଏ। ତେବେ ସ୍ୱାଧୀନତା ପରେ ଆଜି ଆମେ ଯେଉଁ ସମାଜରେ, ଯେଉଁ ସ୍ଥାନରେ ପହଁଞ୍ଚିଛୁ ସେଠି ନାରୀର ସ୍ଥାନ କେଉଁଠି? ନାରୀର ମର୍ଯ୍ୟାଦା ସମାଜରେ ବଢ଼ିଛି ନା କମିଛି? "ନାରୀପ୍ରଗତି" ଏକ ଫମ୍ପା ଆୱାଜ ନା ଏଥିରେ କିଛି

ସତ୍ୟତା ଅଛି ? ଏହିଭଳି ଅନେକ ପ୍ରଶ୍ନ ମନରେ ଉଠେ। କେତେଗୁଡ଼ିଏ ଦୃଷ୍ଟିକୋଣରୁ ଏହି ପ୍ରଶ୍ନ ଗୁଡ଼ିକ ଉପରେ ଆଲୋଚନା କରାଯାଇପାରେ ।

ନାରୀଶିକ୍ଷା ଯେ ଏ ଭିତରେ ବୃଦ୍ଧି ପାଇଅଛି ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ। ସ୍ୱାଧୀନତା ବେଳକୁ ଯଦି ନାରୀଶିକ୍ଷା ୧% ପହଁଚିଥିଲା ଆଜି ତାର ପ୍ରସାର ୨୦% କୁ ବୃଦ୍ଧିପାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ଗାଁ ଗହଳରେ ବାଳିକାସ୍କୁଲ ତଥା କଲେଜର ସଂଖ୍ୟା ବୃଦ୍ଧି ପାଇଛି। ବିଶେଷକରି ନାରୀ ଶିକ୍ଷାର ପ୍ରସାର ଓ ଉନ୍ନତି ପାଇଁ ସରକାର ଅଧିକ ଯତ୍ନଶୀଳ ହୋଇଛନ୍ତି। ପୌଢ଼ଶିକ୍ଷା ଲାଗି ମଧ୍ୟ କେନ୍ଦ୍ରମାନ ଖୋଲା ଯାଇଛି। ତଥାପି ମନେହୁଏ ନାରୀମାନଙ୍କର ସ୍ୱାକ୍ଷରତା ଯେତିକି ବୃଦ୍ଧି ହେବା କଥା ସେତେ ହେଇ ନାହିଁ। ବିଶେଷ କରି ସହରମାନଙ୍କରେ ନାରୀଶିକ୍ଷା ଅଧିକ ବୃଦ୍ଧି ପାଇଛି। ଏହାର କାରଣ ହେଲା ଆର୍ଥିକ ସ୍ୱଚ୍ଛଳତା। ପୁରୁଷାନୁକ୍ରମିକେ କିଛି ପରିବାରର ନାରୀମାନେ ଉଚ୍ଚଶିକ୍ଷିତା ହେବାରେ ଲାଗିଛନ୍ତି ଓ ତଦୁପରି ନିଜ ବଂଶଧର ମାନଙ୍କୁ ଶିକ୍ଷିତା କରୁଛନ୍ତି। କିନ୍ତୁ ନିପଟ ମଫସଲ ଗାଁରେ ଆଜି ବି ନାରୀମାନେ ଅଜ୍ଞାନ ଅନ୍ଧାରରେ ସଢ଼ୁଛନ୍ତି। ଆଜି ବି "ଝିଅ ଜୀବନ ପରଘରକୁ" ବା "ରେବତୀ" ଗଳ୍ପର ଜେଜୀମା ଭଳି "ପାଠ କଣଲୋ, ମାଇକିନିଆ ଝିଅର ପାଠ କଣଲୋ" ପ୍ରଶ୍ନର ସାମ୍ନା କରୁଛନ୍ତି। ଏସବୁ ସ୍ଥାନରେ ପୁରୁଷମାନେ ଯେତେବେଳେ ଏଯାଏଁ ଶିକ୍ଷିତା ହେବାର ମୂଲ୍ୟ ବୁଝିନାହାନ୍ତି, ସେ କ୍ଷେତ୍ରରେ ଝିଅମାନଙ୍କର ପାଠପଢ଼ାର ଧାରଣା କରିବା ମଧ୍ୟ ଅଯୌକ୍ତିକ। ଅସଲ କଥା ପେଟରେ ଯେଉଁମାନେ ଦି ଓଳା ବିନା ସଂଗ୍ରାମ, ପରିଶ୍ରମରେ ଖାଇବାକୁ ପାଆନ୍ତି ନାହିଁ, ମୁଣ୍ଡଗୁଞ୍ଜିବା ପାଇଁ ଯେଉଁମାନଙ୍କର ରାହା ନାହିଁ ସେମାନଙ୍କ ଲାଗି ପାଠପଢ଼ା ତ ଏକ ସୌଖିନ ବିଳାସ ମାତ୍ର। ଶହେବର୍ଷ ତଳେ ଜଙ୍ଗଲରୁ ପତ୍ର, କାଠି, ଝୁଣା, ମହୁ ନେଇ ବା ମୂଲ ଲାଗି ଯେପରି ଭାବରେ ସେମାନେ ଜୀବିକା ନିର୍ବାହ କରୁଥିଲେ ଆଜି ମଧ୍ୟ ସେଭଳି କରୁଛନ୍ତି। ତାଙ୍କ ଅବସ୍ଥାର କୌଣସି ଉନ୍ନତି ହେଇ ନାହିଁ। ଆଜିବି ସେମିତି କଳାହାଣ୍ଡିରେ ପିଲାବିକ୍ରି, ସ୍ତ୍ରୀବିକ୍ରୀ ସମ୍ବାଦ ପତ୍ରର ପୃଷ୍ଠାମଣ୍ଡନ କରୁଛି। ତେଣୁ ଖାତାପତ୍ରରେ ନାରୀର ପ୍ରଗତିକୁ ଆମେ ହିସାବ କଲାବେଳେ ଏମାନଙ୍କୁ ବାସ୍ତବରେ ଶିକ୍ଷିତା କରିବା, ବାଲ୍ୟବିବାହ ରୋକିବା, ପ୍ରଶିକ୍ଷଣ କେନ୍ଦ୍ରମାନ ଖୋଲିବା, ମାଗଣାରେ ପଢ଼ାଖର୍ଚ୍ଚ, ଖାଦ୍ୟ ଓ ଷ୍ଟାଇପେଣ୍ଡ ଦେବା ସହିତ ଘରେଘରେ ଯାଇ ପାଠର ମୂଲ୍ୟ ବୁଝାଇବା ପାଇଁ ବହୁଳ ଉଦ୍ୟମ କରିବା ଆବଶ୍ୟକ। ନଚେତ୍ ସ୍ୱାଧୀନତାର ଶହେବର୍ଷ ପୂର୍ତ୍ତିରେ ମଧ୍ୟ ଏମାନେ ସଭ୍ୟଜଗତରୁ ବିଚ୍ଛିନ୍ନ ହୋଇ ରହିଥିବେ। ସାଧାରଣ ଅର୍ଥରେ କହିଲେ ଏବେବି ଅତି ଉତ୍କଟ ଦାରିଦ୍ର୍ୟ ଭିତରେ ଏଦେଶର ମହିଳାମାନେ ଦିନ କାଟୁଛନ୍ତି। (ଚାକିରିଆ, ଉଚ୍ଚଶିକ୍ଷିତା, ବଡ଼ବଡ଼ ଅଫିସରଙ୍କ ସ୍ତ୍ରୀ ବା ଧନିକଗୋଷ୍ଠୀଙ୍କ ପ୍ରସଙ୍ଗ ଏଠାରେ ଅବାନ୍ତର) ଦିନମଜୁରିଆ, କୁଲି, ରିକ୍ସାବାଲା ପ୍ରଭୃତି ଶ୍ରେଣୀର ଘରର ଝିଅ ବୋହୂମାନେ ଆଜି ବି ଭଲକି ମୁଠେ ଖାଇବାକୁ କିମ୍ବା ପିନ୍ଧିବାକୁ ପାଉ ନାହାନ୍ତି। ଏହି ଉତ୍କଟ ଦାରିଦ୍ର୍ୟ ନାରୀ ପ୍ରଗତିର ଅନ୍ତରାୟ ସାଜିଛି। ପେଟକୁ ମୁଠେ ଭଲ ଖାଇବା ଓ ଖଣ୍ଡେ ପିନ୍ଧିବାକୁ ପାଇଲା ପରେ ହିଁ ସିନା କେହି ଅନ୍ୟକଥା ଚିନ୍ତା କରିବ। କିନ୍ତୁ ଅନ୍ନ ଚିନ୍ତା ଯେ ଚମତ୍କାର। ତେଣୁ ଏହିଭଳି ମା'ମାନେ ପୁରୁଷାନୁକ୍ରମେ ତାଙ୍କ ପିଲାମାନଙ୍କୁ ଢ଼ୋକେ ପିଆଇ ଜୀଆଇଁ ରଖିବାର କଥା କେବଳ ଚିନ୍ତା କରିଥାନ୍ତି। ନିଜେ ଯେମିତି ବଢ଼ିଥାନ୍ତି, ଜୀଇଁ ଆସିଥାନ୍ତି ସେହି ଢ଼ାଞ୍ଚାରେ ବଢ଼ାଇଥାନ୍ତି। ତେଣୁ ଅତି ଛୋଟ ପିଲାଟି କେତେବେଳେ ରିକ୍ସାବାଲା ପାଲଟେ ତ ହୋଟେଲରେ ଅଇଁଠା ପ୍ଲେଟ ଧୋଏ। କୁଲିକାମ କରେ। ଅତି ଅଳ୍ପ ବୟସରୁ ତାକୁ ପେଟଚିନ୍ତା କରିବାକୁ ପଡ଼େ। ଅତି ସାନ ବେଳୁ ଝିଅଟି

ଚାକରାଣୀ ପାଲଟୁଛି। ତାଛଡ଼ା ଉତ୍କଟ ଦାରିଦ୍ର୍ୟରେ ପଡ଼ି ମଧ୍ୟ ଏଭଳି ମା'ମାନେ ବହୁ ସନ୍ତାନର ଜନନୀ ହେବାକୁ ପଛାଉ ନାହାନ୍ତି। ଛୋଟ ପରିବାର ସମ୍ପର୍କରେ ଟି.ଭି., ରେଡିଓରେ ଯେତେ ପ୍ରଚାର କଲେ ମଧ୍ୟ ବାସ୍ତବରେ ଟି.ଭି. ରେଡିଓ ପାଖରେ ସେମାନେ ପହଁଞ୍ଚି ପାରିଲେ ତ? ପୁଣି ସେମାନଙ୍କ ହୃଦ୍‌ଗମ ହେଲେ ତ? ପିଲା ଜନ୍ମ କରିବା ସହିତ ସେମାନଙ୍କୁ ଉପଯୁକ୍ତ ମଣିଷ କରିବାଟା ଯେ ସେମାନଙ୍କର ଦାୟିତ୍ୱ ବା କର୍ତ୍ତବ୍ୟ ଏକଥା ବୁଝିବାର ଶକ୍ତି ସେମାନଙ୍କର ନାହିଁ। ଯାହା ଫଳରେ କି ଦେଶର ଅର୍ଥନୈତିକ ଅବସ୍ଥା ଜନସଂଖ୍ୟା ବୃଦ୍ଧି ଯୋଗୁଁ ଅତି ଶୋଚନୀୟ ହୋଇଉଠୁଛି ଓ ପରିବାର ନିୟନ୍ତ୍ରଣ ଯୋଜନାଟି କାର୍ଯ୍ୟ କରୁନାହିଁ। ସ୍ୱାଧୀନତାର ଏତେ ବର୍ଷ ବିତିଗଲାପରେ ଆମେ ଏ ସତ୍ୟଟିକୁ କଣ କେବେ ଅସ୍ୱୀକାର କରିପାରିବୁ?

ଏକବିଂଶ ଶତାବ୍ଦୀ ଆଡ଼କୁ ଆମର ଗତି ଦ୍ରୁତ ଭାବରେ ବଢ଼ିଚାଲିଥିଲେ ହେଁ ନାରୀର ସମାଜରେ ସ୍ଥାନ ସେହି ମଧ୍ୟଯୁଗୀୟ ଚିନ୍ତାଧାରାର ବଳୟ ଘେରରେ ରହିଯାଇଛି। ଆଜିର ଏହି ଶିକ୍ଷିତ, ଅତ୍ୟାଧୁନିକ ଯୁଗରେ ବରଂ ନାରୀଜନ୍ମକୁ ଅଧିକ ଅଭିଶାପ ଭାବେ ଗ୍ରହଣ କରାଯାଉଛି। ପୁତ୍ରବତୀ ଜନନୀ ନିଜକୁ (ନାରୀ ହେଇ ମଧ୍ୟ) ଅଧିକ ଭାଗ୍ୟବତୀ ମନେ କରୁଛି ଓ ଯୌତୁକ ବଜାରରେ ପୁଅ ଲାଗି ମୂଲଚାଲ ବା ବାର୍‌ଗେଣ୍ଟିଂ କରୁଛି। ଆଜି ବି ପୁଅ ଅପେକ୍ଷାରେ ବାପା, ମା ଛଅ ସାତଟି ଝିଅର ଜନକ ଜନନୀ ପାଲଟୁଛନ୍ତି। ଆଗେ ଏନ୍ତୁଡିଶାଳରେ ଝିଅର ତଣ୍ଟି ଚିପି ଦିଆଯାଉଥିଲା ବୋଲି ଶୁଣାଯାଏ। ଏବେ ବିଜ୍ଞାନ ଆଗେଇଥିବାରୁ ଆଉ ନିଜ ହାତରେ ଏ ପାପ କରାନଯାଇ ଡାକ୍ତରଙ୍କ ମାଧ୍ୟମରେ ଗର୍ଭରେ ପୁଅ କି ଝିଅ ହେବ ପରୀକ୍ଷା କରି ସେହି ଗର୍ଭରେ ହିଁ ତାକୁ ନଷ୍ଟ କରିଦିଆଯାଉଛି। ଯାହାଫଳରେ ସଦ୍ୟଜାତ କନ୍ୟାଟିକୁ ଆଉ କୁଆଁରାବ ଦେଇ ମରିବାକୁ ପଡୁ ନାହିଁ। ଏଥିରୁ ଅନୁମେୟ ନାରୀର ସ୍ଥାନ ସ୍ୱାଧୀନ ଭାରତରେ କେଉଁଠି? କେବଳ ସେତିକି ନୁହେଁ, ଆଜି ବି ଅନେକ ସ୍ଥାନରେ ପିଲାକନିଆ ବାହା କରାଇ ଦିଆଯାଉଛି। ଯାହା ଫଳରେ ଏବେ ବି ବାଲ୍ୟ ବିଧବା ମାନଙ୍କର ସଂଖ୍ୟା କିଛି କମ୍ ନୁହେଁ। ଅତି ଲଜ୍ଜାର ସହ ଆମ ସମସ୍ତଙ୍କୁ ସ୍ୱୀକାର କରିବାକୁ ପଡ଼ିବ ଯେ ସ୍ୱାଧୀନତା ପରେ ବେଶି ପରିମାଣରେ ନାରୀମାନେ ଶୋଷଣ, ଅତ୍ୟାଚାରର ଶିକାର ହେଉଛନ୍ତି। ଯୌତୁକ ଲାଗି ବଧୂହତ୍ୟା, ବଧୂନିର୍ଯ୍ୟାତନା ଝିଅମାନଙ୍କର ଜନ୍ମକୁ ଅଭିଶାପରେ ପରିଣତ କରିଦେଇଛି। ପୁରୁଷ ଅଧ୍ୟୁଷିତ ସମାଜରେ ନାରୀର କିଣାବିକା ତାକୁ ଏକ ଶସ୍ତା ପଣ୍ୟରେ ପରିଣତ କରିଛି। ବିବାହ ମାର୍କେଟରେ ଯୌତୁକ ଝିଅର ଭବିଷ୍ୟତ ସୁଖର ମାପକାଠି ପାଲଟିଛି। ଅବିବାହିତା ଝିଅଟିକୁ ସମାଜ ଯେତେବେଳେ ପାରିଲା ଯେଉଁ ପ୍ରକାର ବଦ୍‌ନାମ କରିପାରିଲା।

ସ୍ୱାଧୀନ ଭାରତରେ ଆଉ ଏକ ଲଜ୍ଜାଜନକ ବ୍ୟାପାର ହେଲା ନାରୀର ସୁରକ୍ଷା ବିପନ୍ନ ହୋଇଛି। ରାସ୍ତାଘାଟ ଯେଉଁଠି ଯିଏ ପାଇଲା ମା' ଭଉଣୀକୁ ଉଠାଇ ନେଇ ଧର୍ଷଣ କଲା। ଭାରତରେ ଏ ଘଟଣା ହଜାର ହଜାର ସଂଖ୍ୟାରେ ଘଟି ଚାଲିଛି। ଓଡ଼ିଶା କଥା ତ ନ କହିବା ଭଲ। ଏଭଳି ଘଟଣା ଆଗେ ରାଜା, ଜମିଦାର ମାନଙ୍କ ଭିତରେ ସୀମିତ ଥିଲା। ସେମାନେ କିନ୍ତୁ ଏମାନଙ୍କୁ ସ୍ତ୍ରୀର ମର୍ଯ୍ୟାଦା ଅଥବା ଭରଣ ପୋଷଣ ଦେଉଥିଲେ। ଆଜି ଏଭଳି ବ୍ୟାପାର ଏମିତି ଚରମ ପର୍ଯ୍ୟାୟରେ ପହଞ୍ଚିଛି ଯେ ସ୍ୱାଧୀନତା ଦିବସ ପାଳନ କଲାବେଳେ ମୁଣ୍ଡ ଲଜ୍ଜାରେ ତଳକୁ ହୋଇ ଯାଉଛି। ହେଲେ ଏହାର ସମାଧାନ କେଉଁଠି? ଏ ପର୍ଯ୍ୟନ୍ତ ଆମ ଭିତରେ ଆତ୍ମସମୀକ୍ଷା, ଅନୁତାପ ଆସିଛି କି? ତାହାଲେ ଜଣେ ନାରୀ ପାଇଁ ସ୍ୱାଧୀନତାର

ମୂଲ୍ୟ କଣ? ଆଇନ୍ ଯଦି ସହାୟତା କରି ନ ପାରେ, ସମାଜ ଯଦି ନାରୀର ସୁରକ୍ଷା କରି ନ ପାରେ ତେବେ ସେ ଆଇନର, ସମାଜର ମୂଲ୍ୟ କଣ?

ପୁନଶ୍ଚ କହିବା ବାହୁଲ୍ୟ ଯେ ବର୍ତ୍ତମାନ ସମାଜରେ ଆମମାନଙ୍କର ସବୁଠାରୁ ବଡ଼ ସଫଳତା ହେଲା ଛାଡ଼ପତ୍ର। ଏହା ମଧ ନାରୀର ମର୍ଯ୍ୟାଦାକୁ ହାନି କରିଛି। ଯେତେ ଶିକ୍ଷା ସଭ୍ୟତା ବଢୁଛି ସେତେ ପରିମାଣରେ ଆମର ଦାମ୍ପତ୍ୟ ଜୀବନ କ୍ରମଶଃ ଭାଙ୍ଗି ପଡୁଛି। ପୁରୁଷ ସ୍ତ୍ରୀ କେହି କାହାସହିତ ଆଡ଼ଜଷ୍ଟ କରିବାକୁ ରାଜି ହେଉ ନାହାନ୍ତି। ଟିକିଏ ଟିକିଏ କଥାରେ ଭୁଲ ବୁଝାମଣା ଆଉ ତାପରେ ଛାଡ଼ପତ୍ର। ମଦ୍ୟପାନ, ଚରିତ୍ର ସ୍ଖଳନ, ଆର୍ଥିକ ଅବସ୍ଥାର ଅତ୍ୟଧିକ ସ୍ୱଚ୍ଛଳତା, ଶିକ୍ଷାର କୁପ୍ରଭାବ, ପାଶ୍ଚାତ୍ୟ ଦର୍ଶନ, ଯୌତୁକ ପ୍ରଭୃତି ଅନେକ ସମୟରେ ଏହାର କାରଣ ହେଉଛି।

ସମାଜରେ ପୁରୁଷ ସହିତ ସମାନ ମର୍ଯ୍ୟାଦା ପ୍ରଦାନ କରିବା ପାଇଁ ଆଇନ ଦ୍ୱାରା ନାରୀକୁ ପୁରୁଷ ସହିତ ସମାନ କରିଦିଆ ଯାଇଛି। କିନ୍ତୁ ବାସ୍ତବରେ ନାରୀ ଏ ଯୁଗରେ ଅଧିକ ଅସହାୟା। ସେ ଯେତେ ଆତ୍ମନିର୍ଭରଶୀଳା ହେଉଛି, ନିଜଗୋଡ଼ରେ ଠିଆ ହେଉଛି ସେତେ ସମାଜରେ ତାର ସ୍ଥିତି ଶୋଚନୀୟ ହେଇଚାଲିଛି। ତାଛଡ଼ା ଦାମ୍ପତ୍ୟ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟରୁ ବଞ୍ଚିତ ହେଲାପରେ ଏହିଭଳି ସ୍ୱାମୀ ପରିତ୍ୟକ୍ତା ନାରୀମାନଙ୍କର ଉପଯୁକ୍ତ ଥଇଥାନ ବ୍ୟବସ୍ଥା ସହିତ କର୍ମଯୋଗାଣ ପାଇଁ ସେତେଟା ସୁବିଧା ସୁଯୋଗ ସୃଷ୍ଟି ହୋଇ ନାହିଁ। ତାଛଡ଼ା ପାଶ୍ଚାତ୍ୟ ସଂସ୍କୃତିକୁ ଅନୁକରଣ କରି ଆମ ସମାଜରେ କ୍ରମଶଃ ବିବାହ ବିଚ୍ଛେଦ ବଢ଼ି ଚାଲିଛି। ଏହିଭଳି ଏକ ମାନସିକ ସମସ୍ୟାର ଅସ୍ତ୍ରୋପଚାର କେମିତି ହେବ ସେ ସଂପର୍କରେ ଆମର ଚିନ୍ତାବିତ୍, ବୁଦ୍ଧିଜୀବୀମାନେ ଚିନ୍ତା କରିବା ଦରକାର। ସନ୍ଦେହ ହୁଏ ଆଉ କିଛି ବର୍ଷ ପରେ ଆମ ଦେଶରେ ଦାମ୍ପତ୍ୟ ଜୀବନ ବୋଲି କିଛି ରହିଥିବ ତ? ଯଦି ବି ଥାଏ ତାହା ହୁଏତ ସଂପୂର୍ଣ୍ଣ ପାଶ୍ଚାତ୍ୟ ଢାଞ୍ଚାରେ (contract marriage)ରେ ବଦଳି ଯାଇଥିବ। ଏଭଳି ବିବାହ ବିଚ୍ଛେଦର ସଂଖ୍ୟାକୁ ରୋକିବା ଲାଗି ଆମ ଆଇନ କିପରି ଭାବେ ସହାୟତା ଦେଇପାରିବ?

ଏହିଭଳି ଅନେକ ପ୍ରଶ୍ନ, ଅନେକ ସମସ୍ୟା ଆମ ଆଗରେ। ଜନଜାଗରଣ ପାଇଁ ବହୁ ଯୋଜନା ଦରକାର ଓ ତାର ବାସ୍ତବ ରୂପାୟନ ଆବଶ୍ୟକ। କିନ୍ତୁ ଏହି ସେତୁବନ୍ଧ ଲାଗି ସମସ୍ତେ ଗୁଣ୍ଡୁଚିମୂଷା ଭଳି ଶ୍ରମ ଦେବା ଦରକାର। ହେଲେ ଏହା କଣ ସମ୍ଭବ? କେଜାଣି ?

*

# ଚାକିରିଆ ନାରୀ

ନାରୀର ଜଟିଳ ସମସ୍ୟା ଭିତରେ ବା ସେ ନିଜେହିଁ ଏକ ସମସ୍ୟାର ପ୍ରଶ୍ନବାଚୀ। ଶିକ୍ଷିତା ହେଇ ଆଜିକାଲି ସମୟରେ ସମସ୍ତେ ଚାକିରି କରିବାକୁ ଚାହାଁନ୍ତି। ଯିଏ ଏ କ୍ଷେତ୍ରରେ ଆଗ୍ରହ ନ ଦେଖାନ୍ତି ବା ଇଚ୍ଛାଥିଲେ ଯୋଗ୍ୟତା ନ ଥିବାରୁ ନ କରନ୍ତି ତ ଅଲଗା କଥା। କିନ୍ତୁ ଏହି ଆଧୁନିକ ଯୁଗରେ ମାନସିକ ସ୍ଥିତି, ଆର୍ଥିକ ସ୍ଥିତିକୁ ସୁଦୃଢ କରିବାକୁ ଅଥବା ଜୀବନଧାରଣର ମାନ ବଢ଼ାଇବା ପାଇଁ ପ୍ରତ୍ୟେକ ନାରୀ ଚାକିରିକୁ ହିଁ ଗୁରୁତ୍ୱ ଦେଇଥାନ୍ତି। ଆତ୍ମନିର୍ଭରଶୀଳତା ହେଲା ବର୍ତ୍ତମାନ ନାରୀପାଇଁ ସବୁଠାରୁ ବଡ଼ ସାନ୍ତ୍ୱନା ବା ଲକ୍ଷ୍ୟ। ହେଲେ ଚାକିରି କରିଦେଲେ ଯେ ସମସ୍ୟା ଶେଷ ହେଇଗଲା ଏହା ଭାବିବା ଉଚିତ ନୁହେଁ। ସମସ୍ୟା ଜୀବନ ସାରା ଲାଗିରହିଛି। ଯେଉଁମାନେ ଚାକିରି କରୁଛନ୍ତି ସେମାନେ ବିବାହିତା ହେଇଥିଲେ ଯେମିତି ବିଭିନ୍ନ ପ୍ରକାରର ସମସ୍ୟାର ସାମ୍ନା କରନ୍ତି ସେମିତି ଅବିବାହିତା ଚାକିରିଆ ମାନେ ମଧ୍ୟ ଘରେ, ଦପ୍ତରରେ ବିଭିନ୍ନ ସମସ୍ୟା ମଧ୍ୟ ଦେଇ ଗତିକରିଥାନ୍ତି। ତେଣୁ ଚାକିରିଆ ନାରୀମାନଙ୍କୁ ଏହି ଦୁଇ ଭାଗରେ ବିଭକ୍ତ କରି ସେମାନଙ୍କର କେତୋଟି ସମସ୍ୟାର ଆଲୋଚନା କରିବା ହେଲା ମୋର ଉଦ୍ଦେଶ୍ୟ।

## ଚାକିରିଆ ବିବାହିତା :-

ପାରିବାରିକ ସମସ୍ୟା ଯୋଗୁ ହେଉ କିମ୍ବା ଆର୍ଥିକ ସ୍ୱାବଲମ୍ବନଶୀଳତା ପାଇଁ ହେଉ ଅଥବା ସମୟ ବିତାଇବାର ସୌଖିନ ମନୋବୃତ୍ତି ଲାଗି ହେଉ ବିବାହିତା ମହିଳାମାନେ ଚାକିରି କରିଥାନ୍ତି। ଆଜିକାଲି ଯେ କୌଣସି ଶିକ୍ଷିତା ଝିଅ ଘରେ ବସିରହିବାକୁ ପସନ୍ଦ କରନ୍ତି ନାହିଁ। ସ୍ୱାମୀ ଯେତେ ବଡ଼ ଚାକିରି କରିଥାନ୍ତୁ ନା କାହିଁକି, ସ୍ତ୍ରୀଟି ଖାଲିଖାଲି ନ ବସି କିଛି ଗୋଟେ ନିଯୁକ୍ତିରେ ପଶିବାକୁ ଇଚ୍ଛା କରେ। ପୁଣି ସ୍ୱାମୀଙ୍କର ଭଲଚାକିରି ବା ଆର୍ଥିକ ଅବସ୍ଥା ଭଲ ନ ଥିଲେ, ଦିଅର, ନଣନ୍ଦଙ୍କୁ ପଢ଼ାଇବା, ବାହାଦେବା ପ୍ରଭୃତି ଦାୟିତ୍ୱ ରହିଥିଲେ ସ୍ତ୍ରୀ ଚାକିରି କରିବାକୁ ବାଧ୍ୟହୁଏ। କାରଣ ଦୁଇଜଣଙ୍କର ମିଳିତ ଆୟରେ ପାରିବାରିକ, ଆର୍ଥିକ ଅବସ୍ଥାକୁ ସୁଧାରି ନେବା ସହଜ ହୋଇଥାଏ।

ସାଧାଣତଃ ଆମ ପରିବାରରେ ସ୍ତ୍ରୀର ରୋଜଗାର ଉପରେ ଯେତିକି ଗୁରୁତ୍ୱ ଦିଆଯାଏ, ତାର ଶାରୀରିକ ପରିଶ୍ରମ ଉପରେ ସେତେଟା ଗୁରିତ୍ୱ ଦିଆଯାଏ ନାହିଁ। ପୁଅ ଅଫିସରୁ ଫେରିଲା ମାତ୍ରେ ମା'ର ପୁଅ କଣ ଖାଇବ ବୋଲି ବ୍ୟସ୍ତତାର ସୀମା ନଥାଏ। ଝାଳନାଳ ହୋଇ ପୁଅ ଦିନସାରା ଖଟି ଫେରିଛି, କଳାକାଠ ପଡ଼ିଗଲାଣି, ଥକିପଡ଼ିଥିବ ପ୍ରଭୃତି ବିଷୟରେ ମା' ସଚେତନା ଥାନ୍ତି। ବ୍ୟାକୁଳ ସ୍ନେହରେ ଅଧିରା ହୁଅନ୍ତି। ଅଥଚ ବୋହୂଟି ଯେ ଚାକିରି କରୁଛି ଓ ଦିନସାରା ଖଟି ଅଫିସରୁ ଫେରିଛି - ତାକୁ ଥକ୍କା ଲାଗୁଥିବ, ଭୋକ କରୁଥିବ ଏଥି ପ୍ରତି ଶାଶୁଙ୍କର ଦୃଷ୍ଟି ନଥାଏ, ବ୍ୟଗ୍ରତା ପ୍ରକାଶ ପାଏ ନାହିଁ। ଖୁବ୍ କମ୍ ଶାଶୁ, ସ୍ୱାମୀ ଅଛନ୍ତି, ଯେଉଁମାନେ କି ବୋହୂ ବା ସ୍ତ୍ରୀର ଏହି କ୍ଳାନ୍ତି ପ୍ରତି ଧ୍ୟାନ ଦେଇଥାନ୍ତି। ଅଧିକନ୍ତୁ ପ୍ରାୟ ଏକ ତୃତୀୟାଂଶ ଶାଶୁ ବୋହୂର ଦିନସାରାର ପରିଶ୍ରମ ପ୍ରତି ଦୃଷ୍ଟି ଦେଇ ନ ଥାନ୍ତି। ପୁଅ ଅଫିସରୁ ଫେରି

ଭଳାରେ ଖିଆପିଆ କରି ଶୋଇପଡୁ କିମ୍ବା ବିଶ୍ରାମ ନେଉ ବୋଲି ମା'ମାନେ ଚାହିଁ ଥାନ୍ତି। ବିଚାରୀ ବୋହୂଟିକୁ କିନ୍ତୁ ଏ ସୁଯୋଗ ମିଳେ ନାହିଁ। ସେମାନେ ସତେ ଯେମିତି ଚାବିଦିଆ ଖେଳଣା! ଯେମିତି ମୋଡ଼ାଯିବ, ସେମିତି ଚାଲିବ। ନା କହିବାର ଅଧିକାର ଥାଏ ନା ଶାଶୁ, ସ୍ୱାମୀ, ଦିଅର ନଣନ୍ଦଙ୍କ ଠାରୁ ସହାନଭୂତି ମିଳେ। ପ୍ରାୟ ଅଧିକାଂଶ କର୍ମଜୀବୀ ମହିଳାଙ୍କର ଘରୋଇ ବ୍ୟାପାରଟା ଏହିପରି। ପୁଣି କେବେ କିଛି ଫେରିବାର ଡ଼େରି ହେଇଗଲେ ସେଥିପାଇଁ ମଧ ନାନା ପ୍ରଶ୍ନର ସାମ୍ନା କରିବା ସହିତ କୈଫିୟତ ଦେବାକୁ ପଡ଼େ।

ଏମିତି ଦେଖିଲେ ସ୍ୱାମୀ ବାହାରିଗଲା ସମୟରେ ସ୍ତ୍ରୀ ବି ଦପ୍ତରକୁ ବାହାରିଯାଏ। ଫେରିଲା ବେଳେ ପ୍ରାୟ ଦୁହେଁ ଆଗପଛ ହେଇ ଏକା ସମୟରେ ଫେରନ୍ତି। ଉଭୟେ ନିଶ୍ଚୟ ଥକ୍‌କା ହେଇ ଫେରିଥିବେ। ହେଲେ ଝିଅ ଜୀବନ ନା; ତେଣୁ ବିଶ୍ରାମ କାହିଁ? ଗୋଡ଼ହାତ କ୍ଳାନ୍ତିରେ ଭାଙ୍ଗି ପଡ଼ୁଥିବ, ପେଟ ଭୋକରେ ଜଳୁଥିବ। ଇଚ୍ଛା ହେଉଥିବ ବିଛଣାରେ ଅଧଘଣ୍ଟା କି ଘଣ୍ଟାଏ ଶୋଇ ପଡ଼ନ୍ତି। କିନ୍ତୁ ଅଫିସରୁ ଫେରି ଗୋଡ଼ ହାତ ଧୋଇ ଲୁଗା ବଦଳାଇଲା ମାତ୍ରେ ରୋଷେଇ ଶାଳରେ ପଶିବାକୁ ପଡ଼େ। ଯଦି ଶ୍ୱଶୁର, ଶାଶୁ, ଦିଅର ନଣନ୍ଦ ପୂର୍ଣ୍ଣ ଘର ହେଇଥିବ ତ ଅବସ୍ଥା ଅସମ୍ଭାଳ। କାରଣ ସହଯୋଗ ନ ମିଳିଲେ ବି ସମସ୍ତଙ୍କ ପାଇଁ ଜଳଖିଆ ପ୍ରସ୍ତୁତ କରିବାକୁ ପଡ଼ିବ। କେବଳ ତିଆରି କରି ଦେଲେ ହେବ ନାହିଁ, ସେମାନଙ୍କୁ ଜଣ ଜଣ କରି ଡାକି ପରଷିବାକୁ ପଡ଼ିବ। ନିଜେ ଖାଇଲା ବେଳକୁ ଭୋକ ସଂପୂର୍ଣ୍ଣ ମରିଯାଇଥିବ। ପୁଣି ଅତିଥି ଅଭ୍ୟାଗତ, ସ୍ୱାମୀଙ୍କର ବନ୍ଧୁବାନ୍ଧବଙ୍କ ପାଇଁ ଚା ତିଆରି କରିବାର ଅଛି। ଯଦି ଘରେ କୁଣିଆ ଆସିଛନ୍ତି କିମ୍ବା ପାଇ ପଡ଼ିଶାରୁ କେହି ବୁଲି ଆସିଛନ୍ତି ସେମାନଙ୍କୁ ସମ୍ଭୋଳିବାର ଅଛି। ଚର୍ଚ୍ଚା ନ କଲେ କଥା ଶୁଣିବାକୁ ପଡ଼ିବ। ରୋଷେଇ ଘରୁ ଚା ଜଳଖିଆ କରି ପଠାଇ ଦେଲେ ଯଥେଷ୍ଟ ହେବ ନାହିଁ। ତାଙ୍କ ସହିତ ଯଦି ଗପ ନ କରିବେ ତ ଟୀପ୍‌ପଣୀ ଶୁଣିବାକୁ ପଡ଼ିବ-ଅମୁକ ଘରର ପାଠପଢୁଆ ବୋହୂଟି ଭାରି ଗର୍ବୀ। ଚାକିରି କରୁଛି ବୋଲି ଇନ୍ଦ୍ରଚନ୍ଦ୍ର ମାନୁନାହିଁ ଇତ୍ୟାଦି ଇତ୍ୟାଦି। ଯଦି ପିଲାଛୁଆ ଥାନ୍ତି ଦିନସାରା ବାହାରେ ରହିବା ହେତୁ ପିଲାଙ୍କର ସମସ୍ତ ଅଭାବ - ଅଭିଯୋଗ ଶୁଣିବାକୁ ପଡ଼ିବ। କିଏ କେଉଁଠି କଣ କଲା, କିଏ ମାରିଲା, କିଏ ଖାଇନାହିଁ, କିଏ ପାଠ ପଢୁନାହିଁ, ବୁଲୁଛି, କାହାର ପ୍ୟାଣ୍ଟ ସାର୍ଟ ଦରକାର, କାହାର ବୁଲିଯିବା ଆବଶ୍ୟକ ପ୍ରଭୃତି ନାନା ଅଭିଯୋଗ। ଛୋଟ ପିଲା ହୋଇଥିଲେ ତ ବୁଝାଇବା ମୁସ୍କିଲ। ଥରେ କାନ୍ଦିବା ଆରମ୍ଭ କଲେ ଓ ନ ବୁଝିଲେ ଘର ଲୋକଙ୍କଠାରୁ ବେଶ୍ ଖୁଣ୍ଟା ଶୁଣିବାକୁ ହେବ।

ଏତିକିରେ କାମ ସରିଯାଏ ନାହିଁ। ରାତିରେ ରୋଷେଇ କରିବାର ଅଛି। କେତେକଙ୍କ ଘରେ ତ ସାହାଯ୍ୟ କରିବାକୁ କେହି ନଥାନ୍ତି। ଅଟା ଦଳିବା ଠାରୁ ତରକାରି କରିବା, ମସଲାବଟା ପର୍ଯ୍ୟନ୍ତ ସବୁ ଏକୁଟିଆ କରିବାକୁ ପଡ଼ିଥାଏ। ରନ୍ଧା ସରିଲାପରେ ବି ଅପେକ୍ଷା କରିବାକୁ ହେବ। କିଏ କେତେବେଳେ ଖାଇବେ ତାର ବି ଠିକଣା ନାହିଁ। ସ୍ୱାମୀ ଯଦି ବାହାରକୁ ବୁଲିବାକୁ ଯାଇଥିବେ ତ ତାଙ୍କୁ ଅପେକ୍ଷାକର। ଶାଶୁ ଶୋଇପଡ଼ିଥିବେ ତ ଖାଇବା ପାଇଁ ଡ଼ାକ। ତାଙ୍କର କଞ୍ଚା, ଲୁଣିଆ, ରାଗର ଖୁଣ୍ଟା ଶୁଣ। ସମସ୍ତେ ଖାଇ ସାରିଲା ବେଳକୁ ରାତି ଏଗାର ଉପରେ। ନିଜେ ଖାଇଲାବେଳକୁ କେହି ପାଖରେ ଥିବେ କି ନାହିଁ ସନ୍ଦେହ। ତରକାରିପତ୍ର ସରି ଯାଇଥିଲେ କହିବାକୁ "ଚୁ" ନ ଥିବ। ଚାକରାଣିଟେ ଯଦି ନ ଥାଏ ତ ବାସନ ମାଜିବାକୁ ପଡ଼ିବ।

ରୋଷେଇ ଘର ସଫାକରି କବାଟ ଝର୍କା ବନ୍ଦ କରି ବିଛଣାକୁ ଗଲାବେଳକୁ ରାତି ବାର ଉପରେ ହେଇପାରେ। ପୁଣି ହାତ ଧରିଥିବା ମଣିଷଟି ଯଦି ସେତେବେଳେ ଖାଇସାରି

ଘୁଙ୍ଗୁଡ଼ି ମାରୁଥାନ୍ତି ନିଶ୍ଚିତ ଭାବରେ ସ୍ତ୍ରୀଙ୍କର ମନ ବ୍ୟଥାରେ, ଏକୁଟିଆପଣରେ ଭରିଯିବ। ଯେକୌଣସି ସ୍ତ୍ରୀ ଦିନସାରାର କ୍ଳାନ୍ତି ଆଉ ହାଡ଼ ଭଙ୍ଗା ପରିଶ୍ରମ ପରେ ଯଦି ସ୍ୱାମୀର ଏତେ ଟିକିଏ ସହାନୁଭୂତି ନ ପାଆନ୍ତି ନିଶ୍ଚିତ ଭାବରେ ଦୁଃଖ, ଅସହାୟ ଲାଗିବ। ପରିଶ୍ରମ ତ ପଡ଼ିବ ନିଶ୍ଚୟ, ସଂସାର କରିଛନ୍ତି ଯେତେବେଳେ, ତା ବୋଲି ଏମିତି ସହାନୁଭୂତିହୀନ। ଭାବରେ ଦିନରାତି ଗଧ ଭାବରେ ଖଟିବାଟାକୁ କେତେଦିନ କିଏ ବରଦାସ୍ତ କରିବ ?

ଆଜିକାଲି ସାଧାରଣତଃ ପ୍ରତ୍ୟେକ ଚାକିରି କରୁଥିବା ବିବାହିତା ନାରୀମାନଙ୍କ ପାରିବାରିକ ଜୀବନରେ ଉପରୋକ୍ତ ଘଟଣା ସବୁ ଅଳ୍ପ ବହୁତ ଘଟିବାର ଲକ୍ଷ୍ୟ କରାଯାଇଥାଏ। ଏସବୁ ପରିସ୍ଥିତିରେ ଲୁହକୁ ବି ଦେଖାଇ ହୁଏନାହିଁ। କାନ୍ଦିଲେ କହିବେ ଛଳନା କରୁଛି ବା ଲୁହ ଦେଖାଇ ସମସ୍ତଙ୍କୁ ଡ଼ରେଇ ରଖିବ ବୋଲି ଭାବୁଛି।

ପୁଣି ଖୁବ୍ ବିଳମ୍ବରେ ବିଛଣାକୁ ଯାଇ ଖୁବ୍ ସଅଳ ଉଠିବାକୁ ପଡ଼ିବ। ଉଠି ସମସ୍ତଙ୍କ ପାଇଁ ଚା କରି ବାସି ପାଇଟି ସାରି ରନ୍ଧା ଶେଷ କରିବା ସଙ୍ଗେ ସଙ୍ଗେ ପିଲାମାନଙ୍କର କଥା ବୁଝିବାକୁ ହେବ। ଏଣେ ଅଫିସବେଳ ହୋଇ ଯାଉଥିବ। ନାକରେ କାନରେ କେମିତି ଦିଟା ଗୁଞ୍ଜି ଧାଅଁ। ସେଠୁ ବିଳମ୍ବ ହେଲେ ଉପରିସ୍ଥଙ୍କୁ କୈଫିୟତ ଦେବାକୁ ପଡ଼ିବ। କିମ୍ବା ନାଲି ଆଖିର ତାଗିଦା ସହିବାକୁ ପଡ଼ିବ। ଡାକ୍ତରଟିଏ ହୋଇଥିଲେ ବା ଶିକ୍ଷାବିଭାଗରେ ଚାକିରି କରୁଥିଲେ ତାର ସମସ୍ୟା ଅଲଗା।

ଜଣେ ଚାକିରିଆ ବିବାହିତାଙ୍କ ଲାଗି ସପ୍ତାହରେ ରବିବାର ନାମକ ଯେଉଁ ଛୁଟି ଦିନଟି ମିଳେ, ସେଥିରେ ବି ତ୍ରାହି ନାହିଁ। ଲୁଗା ସଫା, ଝଡ଼ାଝଡ଼ି ସହିତ ଘର ସଫା, ଅତିଥିଚର୍ଚ୍ଚା ଏମିତି ଅନେକ। ଖାଉ ଖାଉ ଦିନ ଅଢ଼େଇ କି ତିନି। ଟିକେ ଗଡ଼ିଥିବ କି ନାହିଁ ଚା କର। ଖୁବ୍ କମ୍ ଜଣଙ୍କର ଭାଗ୍ୟରେ ଥାଏ ଏମିତି ଦିନରେ ବାହାରକୁ ବୁଲିଯିବା। ତେବେ ଟେଲିଭିଜନ ଯୁଗରେ ସେ ସୁଯୋଗ ବି ହାତଛଡ଼ା ହେଇ ଯାଇଛି। ସିନେମା ଚାଲିଥିଲାବେଳେ କେହି ଅତିଥି ପହଁଞ୍ଚିଗଲେ ବୋହୂକୁ ହିଁ ଉଠିଯାଇ ଚର୍ଚ୍ଚା କରିବାଲାଗି ଚା ବସାଇବାକୁ ପଡ଼ିବ।

ଅବଶ୍ୟ ସମସ୍ତଙ୍କୁ ଯେ ଏହି ପରିସ୍ଥିତି, ପରିବେଶ ଭିତରେ ବଞ୍ଚିବାକୁ ପଡ଼େ ତାହା ନୁହେଁ। ଅନେକ ଶାଶୂ, ନଣନ୍ଦ ଅଛନ୍ତି ବୋହୂକୁ ଫୁଲପରି ରଖନ୍ତି। ସ୍ୱାମୀ ବେଶ୍ କାମ ବାଣ୍ଟି ନିଅନ୍ତି। କିନ୍ତୁ ସମସ୍ତଙ୍କ ଭାଗ୍ୟରେ ଏହା ମିଳେ ନାହିଁ। ବୋହୂ କିଏ, ଝିଅ କିଏ ଏହି କଥାକୁ ଆଖି ଆଗରେ ରଖି ଯଦି ସେମାନେ ବୋହୂକୁ ସ୍ନେହ, ଆଦର କରନ୍ତେ ଓ ଦିଅର, ନଣନ୍ଦ ପ୍ରଭୃତି ଭାଉଜଙ୍କ ସହ ମିଶି କାମ ଆଗେଇ ନିଅନ୍ତେ, ତାଙ୍କର କ୍ଳାନ୍ତି ପରିସ୍ଥିତିକୁ ହୃଦୟଙ୍ଗମ କରନ୍ତେ ତାହାଲେ ଜୀବନଯାତ୍ରା ସୁଗମ ହେଇ ଯାଆନ୍ତା। ତାଛଡ଼ା ପ୍ରତ୍ୟେକ ସ୍ତ୍ରୀ ଚାହାଁନ୍ତି ସ୍ୱାମୀଙ୍କର ଆନ୍ତରିକତା, ସହାନୁଭୂତି, ଭଲପାଇବା ଯାହା ଫଳରେ କି ତାଙ୍କର ଦିନସାରାର କ୍ଳାନ୍ତି, ପରିଶ୍ରମ ମିଳାଇଯାଏ। ଅନ୍ତତଃ ଜଣେ ତ ମୋତେ ବୁଝିପାରିଛି, ମୋ ପାଇଁ ଶ୍ରଦ୍ଧା ରଖିଛି, ଏଇ ମନ ଭାବଟି ଆସିଗଲେ ଜୀବନଯାତ୍ରା ଏତେ ନୀରସ, କ୍ଳାନ୍ତ ଲାଗିବ ନାହିଁ। ବର୍ତ୍ତମାନ ସମୟରେ କାମ କରିବା ଲାଗି ବିଶ୍ୱସ୍ତ ପିଲା ନ ମିଳିଲେ ବୋହୂ ବା ସ୍ତ୍ରୀକୁ ସାହାଯ୍ୟ କରିବା ଘର ଲୋକଙ୍କର ନିହାତି କର୍ତ୍ତବ୍ୟ। ଏ କର୍ତ୍ତବ୍ୟ ସହ ଆନ୍ତରିକତା ଦରକାର। ତାଛଡ଼ା ବଦଳି ଚାକିରି, ଦୂର ଚାକିରିରେ ତ ଆହୁରି ଗୁଡ଼ାଏ ସମସ୍ୟା ରହିଛି। ଆଲୋଚନାଟି କେବଳ ଯୌଥ ପରିବାରର ଚାକିରି କରିଥିବା ମହିଳାଙ୍କ ସମ୍ପର୍କରେ।

## ଚାକିରିଆ ଅବିବାହିତା

ଆଜି ଆଉ କେବଳ ଝିଅ ଜନମ ପରଘରକୁ ହୋଇ ରହିନାହିଁ। ଅନେକ ମହିଳା ଚାକିରି କରି ସ୍ୱାଧୀନଭାବରେ ଅବିବାହିତା ଜୀବନ କଟାଇବାକୁ ଚାହୁଁଛନ୍ତି ଆଉ କେତେକ ଝିଅ କୌଣସି ପରିସ୍ଥିତିରେ ପଡ଼ି ଅବିବାହିତା ରହିଯାଉଛନ୍ତି। ଆଜି ଯୁଗ ବଦଳିଛି, ରୁଚି ବଦଳିଛି। ସେଦିନର ପିଲାକନିଆ ହୋଇ ବାହା ହେଉଥିବା ଝିଅମାନଙ୍କର ନାତୁଣୀ, ଅଣନାତୁଣୀମାନେ ଆଜି ପାଠପଢ଼ି ଶିକ୍ଷିତା, ସ୍ୱାବଲମ୍ବନଶୀଳା, ଆଧୁନିକା ହେଉଛନ୍ତି। ବିବାହ ବୟସ ଗଡ଼ି ଗଲେ ମଧ ଅଭିଭାବକ କିମ୍ବା ନିଜେ ପାତ୍ରୀ ବିଶେଷ ଚିନ୍ତିତା ହେବାର ଦେଖା ଯାଉନାହିଁ। କାରଣ ସମାଜରେ ବିବାହ ଆଜକାଲି ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ। ତାଛଡ଼ା ସାରାଜୀବନ ଆତ୍ମନିର୍ଭରଶୀଳ ହୋଇ ଝିଅଟି ନିଜର ଭରଣ ପୋଷଣ କରିବାର ଆତ୍ମବିଶ୍ୱାସ ହାସଲ କରିପାରିଛି। ଏହା ସହିତ ଅନ୍ୟମାନଙ୍କୁ ଭରଣ ପୋଷଣ ମଧ କରିବାକୁ ସକ୍ଷମ ହେଲାଣି।

ବିଦେଶରେ ରହି ଚାକିରି କରୁଥିବା ଅବିବାହିତା ମହିଳାମାନଙ୍କର ସବୁଠାରୁ ବଡ଼ ସମସ୍ୟା ହେଲା ଭଡ଼ାଘର। ଯେଉଁଠି କ୍ୱାଟର ନାହିଁ କି କର୍ମଜୀବୀ ମହିଳା ହଷ୍ଟେଲ ନାହିଁ ସେଠାରେ ଭଡ଼ାଘର ସବୁଠୁ ବଡ଼ ସମସ୍ୟା ହୋଇ ଦେଖାଯାଏ। ନିଜର ନିରାପତ୍ତା ଦୃଷ୍ଟିରୁ ସବୁ ଭଡ଼ାଘରର ମାଲିକଙ୍କୁ ବିଶ୍ୱାସ କରାଯାଏ ନାହିଁ କି ସବୁ ସୁବିଧା ବି ମିଳେ ନାହିଁ। ପୁନଶ୍ଚ ସ୍ୱଳ୍ପ ବେତନ ଭୋଗୀ ପାଇଁ ସୁଲଭ ମୂଲ୍ୟରେ ଭଡ଼ାଘରଟିଏ ମିଳିବା ବି କାଠିକର ପାଠ। ପରିବାର ଭିତରେ ଘରଟିଏ ଚାକିରି ଜାଗା ପାଖରେ ମିଳିବା ଏକ ଭାଗ୍ୟର କଥା। ଅନେକ ପୁଣି ଅବିବାହିତା ଝିଅମାନଙ୍କୁ ଭଡ଼ା ଦେବାକୁ ସହଜରେ ରାଜି ହୁଅନ୍ତି ନାହିଁ। ସବୁ ସ୍ଥାନରେ ଯେ ସମସ୍ତଙ୍କର ଚିହ୍ନାପରିଚୟ ଏହା ବି ଠିକ ନୁହେଁ। ଅନେକ ସ୍ଥାନରେ ଝିଅମାନଙ୍କୁ ଘରବାଲାମାନେ ବିଶ୍ୱାସ କରିପାରୁନାହାନ୍ତି ତ ଝିଅମାନେ ମଧ ଘରମାଲିକ ଉପରେ ଆସ୍ଥା ରଖି ପାରୁ ନାହାନ୍ତି। ତେଣୁ ପ୍ରତି ଜିଲ୍ଲାରେ, ସବ୍‌ଡିଭିଜନରେ, ସହରରେ ନିହାତି କର୍ମଜୀବୀ ମହିଳା ହଷ୍ଟେଲଟିଏ ଥିବା ଉଚିତ।

ବସ୍‌ରେ ଯିବା ଆସିବା କରିବା ବା ରିକ୍ସାରେ ଯିବା ଆସିବା କରିବା ପାଇଁ ବିଶ୍ୱସ୍ତ ଚାଳକର ବି ଆବଶ୍ୟକ ହୋଇଥାଏ। ତା ଛଡା ପୁରୁଷ କର୍ମଚାରୀମାନଙ୍କ ସହିତ ମିଳିମିଶି କାମ କରିବା ବି ଏକ ସମସ୍ୟା। ଯଦି ଦପ୍ତରରେ ଏକୁଟିଆ ଝିଅଟେ ହୋଇଥାଅ ତ ଜଗିରଖି ଚଳିବାକୁ ପଡ଼େ। ନିଜର ପରିଧାନ, ବେଶ ପରିପାଟୀକୁ ରୁଚିପୂର୍ଣ୍ଣ କରିବା ଦିଗରେ ଧ୍ୟାନ ଦେବାକୁ ପଡ଼େ। ସେମାନଙ୍କ ସହ ଆଡ଼ଜଷ୍ଟ ନ କରି ଚଳିଲେ ବହୁ ହଇରାଣ ହେବାକୁ ପଡ଼େ। କିଏ ଚା ପାଇଁ କ୍ୟାଣ୍ଟିନ୍ ଡାକିଲାଣି ତ କିଏ ଲିଫ୍ଟ ଦେବାକୁ ବାହାରିଲାଣି, କିଏ ତମ ଚାଲି, ହସ ମାର୍କ କଲାଣି ତ କିଏ ତମ ଅତୀତ, ପାରିବାରିକ ଜୀବନର ସନ୍ଧାନ କଲାଣି, କିଏ ଅଯଥା ସହାନୁଭୂତି ଦେଖାଇ ଉପରେ ପଡ଼ିଲାଣି। ଏ ସବୁକୁ ସୁନ୍ଦର ଭାବରେ ଏଡ଼େଇଯିବାକୁ ପଡ଼ିବ। ଏ ବି ଚାକିରିଆ ଝିଅମାନଙ୍କ ପାଇଁ ଏକ ସମସ୍ୟା। ନ ହେଲେ ଟିକିଏ କଥାରେ ଚାରିତ୍ରିକ ସଂହାର ହୋଇଯିବ, କାଛବାଡ଼ରେ ଲେଖା ହୋଇଯିବ କି କାହାସହ ଯୋଡ଼ାଯାଇ ନାନା କୁତ୍ସାରଟନା କରାଯିବ। କେବଳ ସେତିକି ନୁହେଁ ଉପରିସ୍ଥ ହାକିମକୁ ସନ୍ତୁଷ୍ଟ କରିବା ବି ଏକ ସମସ୍ୟା। କେତେକ କ୍ଷେତ୍ରରେ ମହିଳା କର୍ମଚାରୀଙ୍କୁ ଅଯଥା ହଇରାଣ କରିବା, ବାରମ୍ବାର ନିଜ ରୁମ୍‌କୁ ଡାକିବା, ଜାଣିଜାଣି ଅଫିସଛୁଟି ସମୟ ହୋଇଗଲେ ବି ଅଟକାଇ ରଖିବା, ଟୁରରେ ଯିବାକୁ ବାଧ କରିବା ପ୍ରଭୃତି ଅପ୍ରୀତିକର ସମସ୍ୟା ଉପୁଜି ଥାଏ। ଏସବୁ ସମସ୍ୟା ଝିଅଟିକୁ ଅନେକ ସମୟରେ ଅସହାୟ, ନିରାଶ କରିଦିଏ। ନିଜକୁ ଜଗିରଖି ଚଳିଲେ ବି ଅନ୍ୟ ଆଖିରେ

ଦୋଷୀ ସାବ୍ୟସ୍ତ ହେବାକୁ ପଡ଼ିଥାଏ। କାରଣ ଆମଦେଶରେ ସଳମାଛରେ ପୋକ ଭର୍ତ୍ତିକରିଦେବା ଲୋକଙ୍କର ଅଭାବ ନାହିଁ। ତେଣୁ ନିରାପତ୍ତାର ଅଭାବ, ନିଜର ଶାରୀରିକ ଶକ୍ତିର ଅଭାବ ଯୋଗୁ ହିଁ ଝିଅଟି ବେଳେବେଳେ ପରିସ୍ଥିତିର ମୁକାବିଲା କରିପାରେ ନାହିଁ। କିଏ ପରିସ୍ଥିତିର ଶିକାର ହେଇଯାଏ ତ କିଏ ବାଧ୍ୟହେଇ ଚାକିରି ଛାଡ଼ିଦିଏ। ଆତ୍ମସମ୍ମାନବୋଧକୁ ଜଳାଞ୍ଜଳି ଦେବାକୁ କିଏବା ଚାହେଁ? ଅଜଣା ଅଶୁଣା ଜାଗାରେ ଏକୁଟିଆ ରହିବା ସବୁବେଳେ ଆଶଙ୍କାର ରୂପ ନେଇ ଥାଏ। ବେଳେ ବେଳେ ପୁରୁଷ କଲିଗ୍‌ମାନେ ଅଯଥାରେ ଗପ କରିବାର ବାହାନା ଦେଖାଇ ବା କାମରେ ଆଳକରି ବସାଘରେ ପହଁଞ୍ଚି ଯାଇଥାନ୍ତି। ଏସବୁକୁ ସାମ୍ନା କରିବା ବି ଏକ ସମସ୍ୟା ହେଇ ଉଠେ ବେଳେ ବେଳେ।

ପୁଣି ଅବିବାହିତା ରହିଲେ ଓ ଚାକିରି କରୁଥିଲେ ପରିବାରର ଲୋକ ଅନେକ ସମୟରେ ବହୁତ କିଛି ପାଇବାର ଆଶା କରନ୍ତି। ମରିଗଲା ପରେ ସଞ୍ଚିତ ଅର୍ଥ କାହାକୁ ମିଳିବ ସେ ସଂପର୍କରେ ବି ଆଲୋଚନାର ଶେଷ ନଥାଏ। ପରିବାରର ଦାୟିତ୍ୱ ଯଦି ଅଳ୍ପ ନେଉଥାଏ ଝିଅଟି ତା ଉପରେ ସବୁ ଦାୟୀତ୍ୱ ଛାଡିଦେଇ ବା ନଦିଦେଇ ଘର ଲୋକ ନିଶ୍ଚିନ୍ତ ହେଇଯାନ୍ତି। ଏ କ୍ଷେତ୍ରରେ ସ୍ନେହ, ଶ୍ରଦ୍ଧା ବଡ଼ ସ୍ୱାର୍ଥପର ମନେହୁଏ।

ଏକୁଟିଆ ରହୁଥିବା ଝିଅଟି ମାର୍କେଟିଂ କରିବା, ରୋଷେଇ କରିବା, ନିଜ ଏକାକୀତ୍ୱ ସମୟକୁ କାଟିବା ପ୍ରଭୃତି ବେଳେବେଳେ ଖୁବ୍ କଷ୍ଟକର ମନେହୁଏ। ତାଛଡା ଆମ ସମାଜ ଏଭଳି ଝିଅମାନଙ୍କ ପଛରେ ବହୁ ପ୍ରକାର କଳ୍ପନାଜଳ୍ପନାର କାହାଣୀ ଯୋଡ଼ିଥାଏ।

ଏଥିରୁ ମନେ ହୁଏ ସବୁ ପରିସ୍ଥିତିରେ ନାରୀ ଚାରିପଟେ ସମସ୍ୟା ହିଁ ଗଢ଼ି ଉଠିଛି। ଯାହାର ଗୋଲକ ଧନ୍ଦାରୁ ତାର ମୁକ୍ତି ନାହିଁ। ଏସବୁ ସମସ୍ୟାର ବିକଳ୍ପ ସମାଧାନ କେବଳ ନାରୀ ଖୋଜିଲେ ହେବ ନାହିଁ। ପୁରୁଷର ବି କର୍ତ୍ତବ୍ୟ ସମାଧାନ ଲାଗି ରାସ୍ତା ଖୋଜିବା। ତେବେ କେବେ ସେ ରାସ୍ତା ମିଳିବ କେଜାଣି!



# ଦାରିଦ୍ର୍ୟ ଓ ଆମେ

କେତେ କେତେ କବି ଉପମାରେ ଭୂଷିତା ନ ହୋଇଛି ନାରୀ ! କବି କଲମରେ ଇଏ କେବେ ସ୍ୱପ୍ନମୟୀ ତ କେବେ ଲାସ୍ୟମୟୀ, ହାସ୍ୟମୟୀ । ଦାନ୍ତେ, ସେକ୍ସପିୟର, କିଟ୍ସ, ସେଲୀଙ୍କଠୁ ଆରମ୍ଭ କରି ଭଞ୍ଜ, ଅଭିମନ୍ୟୁ, ଦୀନକୃଷ୍ଣ, ତୁଳସୀ ଦାସ, ମୈଥିଳୀ ଶରଣ ଗୁପ୍ତ, ରବିଠାକୁରଙ୍କ ପର୍ଯ୍ୟନ୍ତ କେତେ କେତେ ଲେଖକ, କବିମାନେ କେତେ ରୂପରେ ନାରୀର ପ୍ରକାଶରୂପ ଆଙ୍କିଛନ୍ତି । କବି ଆଖିରେ ସେ କେବଳ ରୂପମୟୀ ନୁହେଁ, ପ୍ରେରଣାଦାୟିନୀ ମଧ୍ୟ । ନାରୀର ସ୍ନେହ, ତ୍ୟାଗ, ସେବା, ଅତିଥିପରାୟଣତା, ସହନଶୀଳତା ପ୍ରଭୃତି ପାଇ ପୁରୁଷ ଧନ୍ୟ ହୋଇଯାଏ । କହିବା ବାହୁଲ୍ୟ ଯେ ପୁରୁଷର ବନ୍ଧୁର ଜୀବନଯାତ୍ରାରେ ନାରୀ ଏକମାତ୍ର ମରୁଝରଣା । ତାର ସାନ୍ନିଧ୍ୟରେ ଶସ୍ୟଶ୍ୟାମଳା ହୋଇଯାଏ ପୁରୁଷର ଜୀବନ । ତା ବିହୁନେ ପୁରୁରୁଷର ସ୍ୱପ୍ନ ବଗିଚା ଉଜୁଡ଼ି ପଡ଼େ, ବାଲିରେ ହୋଇଯାଏ ସ୍ୱପ୍ନ, ସମ୍ଭାବନା, ଆଶା ସବୁକିଛି । ଯୁଗେ ଯୁଗେ ଏଇଥିପାଇଁ ବୋଧହୁଏ ଅର୍ଦ୍ଧାଙ୍ଗିନୀ ସାଜି ସ୍ୱାମୀର ସହଚରୀ ହୋଇଛି ନାରୀ । ରାମଚନ୍ଦ୍ରଙ୍କ ସହିତ ସୀତା ଯଦି ବନବାସ ଯାଇ ନ ଥାନ୍ତେ, କେମିତି କଟିଥାନ୍ତା ସତେ ରାମଚନ୍ଦ୍ରଙ୍କ ଏ ଅଭିଶପ୍ତ ଚଉଦ ବର୍ଷର ବନବାସ ? ଲକ୍ଷ୍ମୀ ନ ଥିଲେ ବୋଲି ଜଗନ୍ନାଥ ଙ୍କୁ ଲୋକେ ଲକ୍ଷ୍ମୀଛଡ଼ା କହି ଭିକ୍ଷ ମଧ୍ୟ ଦେଲେ ନାହିଁ । ନାରୀ ବିନା କୃଷ୍ଣଙ୍କର ସ୍ଥିତି କାହିଁ, ପରିପୂର୍ଣ୍ଣତା କାହିଁ ? ଦୁର୍ଗା ଆସି ନଥିଲେ ମହିଷାସୁରର ଜଣ କେବେ ମୃତ୍ୟୁ ହୋଇଥାନ୍ତା ? ପଦ୍ମାବତୀଙ୍କ ବିହୁନେ ତ "ଗୀତ ଗୋବିନ୍ଦ" ଅସଂପୂର୍ଣ୍ଣ ରହିଯାଇଥାନ୍ତା ? ଏମିତି ଖୋଜି ବସିଲେ ଦୃଷ୍ଟାନ୍ତର ଅଭାବ ହେବନାହିଁ ।

କବି ଉପମାର ନାରୀ, ପୁରାଣ ବର୍ଣ୍ଣିତ ନାରୀ ଆଉ ବାସ୍ତବ ଜୀବନର ନାରୀ ଭିତରେ କେତେ ପାର୍ଥକ୍ୟ କିଏ ଜାଣେ ? ଗୋଟେ ପଟେ ଉଚ୍ଚ ଶିକ୍ଷିତା, ଅତ୍ୟାଧୁନିକା, ଉଗ୍ରପ୍ରସାଧନରେ, ପ୍ରାଚୁର୍ଯ୍ୟ ଭିତରେ ସମୃଦ୍ଧା ନାରୀ । ସେ କ୍ଲବ୍ ଯାଏ, କାବ୍‌ରା ନୃତ୍ୟ କରେ, ଡ୍ରିଙ୍କସ କରେ, ମଡେଲିଂ, ସିନେମା ବା ଗ୍ଲାମୋରର ଦୁନିଆ ଭିତରେ ବଞ୍ଚିରହେ । ସୁଖର, ବିଳାସର ଦୁନିଆ ଭିତରେ ହଜି ଯାଏ । ନାରୀ ପୁଣି ହେଇପାରେ ନେତ୍ରୀ, ସଂଗଠିକା ଅଧ୍ୟାପିକା, ଲେଖିକା, ଡାକ୍ତର, ସେବିକା, କଳାକାର, ପ୍ରଯୋଜିକା, ନିର୍ଦ୍ଦେଶିକା, ପାଇଲଟ, ଖେଳାଳୀ, ଅଫିସର ଏମିତି କେତେ କଣ । ଆଉ ଗୋଟେପଟେ ନାରୀର ବିକଟ ଜୀବନଯାତ୍ରା, ଯାହା ଅଧିକାଂଶ ନାରୀ ଜୀବନରେ ସତ୍ୟ । ସେ ବିକଟତାର ଜନ୍ମ ଦାରିଦ୍ର୍ୟରୁ । ମୁଠାଏ ଖାଇବାକୁ ମିଳେନି । ଲୁଗାଟିଏ ନ ଥାଏ ଦେହ ଘୋଡ଼ାଇବା ପାଇଁ । ଭୋକିଲା ଶିଶୁକୁ ଆହାର ଦେବା ପାଇଁ ସ୍ତନରେ କ୍ଷୀର ନ ଥାଏ । ବଞ୍ଚିବା, ପେଟରେ ଜ୍ୱାଳା ସହିବା କଷ୍ଟକର ହୋଇପଡ଼େ । କେବେକେବେ ଜୀବନ ସଂଗ୍ରାମରେ ହାରିଯାଇ ସେ ଟ୍ରେନ୍ ତଳେ ବେକ ଦେଖାଇ ଦିଏ ତ ନଇନାଳକୁ ଡେଇଁପଡ଼େ । ଏସବୁ କିଛି କରି ନପାରିଲେ ନିଜ ଦେହର ମାଉଁସକୁ ବିକ୍ରି କରେ । ନାରୀମାଂସ ପାଇଁ ଭୋକିଲା ପୁରୁଷଙ୍କର ସୁଅ ଛୁଟେ । ସେଠି ମନ୍ତ୍ରୀ, ନେତା, କଣ୍ଟ୍ରାକ୍ଟର, ଶିଳ୍ପପତି, ପ୍ରଫେସର, ସେବକ,

ରିକ୍ସାବାଲାର ବାଛବିଚାର ରହେନା। ଟଙ୍କାର ଠନ୍ ଠନ୍ ଆୱାଜରେ ନାରୀର ଦେହ ବିକ୍ରି ହୋଇଯାଏ। ବଞ୍ଚିରହିବା ପାଇଁ ଗଣିକା ସାଜେ କବି ଉପମାର ଲାସ୍ୟମୟୀ ନାରୀ। ପୁରାଣର ସତୀ ଅନୁସୂୟା ହୋଇଯାଏ ଏ ଯୁଗରେ ସହସ୍ର ଶଯ୍ୟାର ନାୟିକା। ଆମେ କିନ୍ତୁ ସଚେତନ ବିଚାରଶୀଳ ଦର୍ଶକ। ପକେଟମାର ପିଲାଟେ ହାତରେ ପଡ଼ିଗଲେ ଯେମିତି ନାକରୁ ରକ୍ତ ବାହାରିଲା ଯାଏଁ ପିଟାପିଟି କରି ଥାନାକୁ ପଠାଇଦେଉ ସେମିତି ପତିତା ନାରୀକୁ ବିଦ୍ରୂପକାରରେ ଅପମାନ କରି, ଦରକାର ହେଲେ ମାଡ଼ ଦେଇ ଥାନା ନେଇଯାଉ। ଅଥଚ କେବେ ବି ଜାଣିବାକୁ ଚେଷ୍ଟାକରୁନା କେଉଁ ପରିସ୍ଥିତି, କେଉଁ ମଜବୁରି ଯୋଗୁଁ ସେ ଏଭଳି ଏକ ବାଟ ବାଛି ନେଇଛି ?

ଥରେ ଏକ ବିସ୍ତୀର୍ଣ୍ଣ ପଡ଼ିଆ ପାରିହେଲାବେଳେ ମୋର ଦୃଷ୍ଟି ପଡ଼ିଥିଲା ଗାଈ ଗୋରୁ ଜଗୁଥିବା ଏକ କଙ୍କାଳସାର ବୁଢ଼ୀ ଉପରେ। ସତେ କି ସେ ମଶାଣିରୁ ଉଠି ଆସିଛି। ଆଖି ପଶି ଯାଇଛି। ନୁଖୁରା ମୁଣ୍ଡରେ କେବେ ଯେମିତି ତେଲ ବାଜି ନାହିଁ। କଙ୍କାଳସାର ସ୍ତ୍ରୀଲୋକଟି ପିନ୍ଧିଥିବା ଗୋଟିଏ ପଟ ଲୁଗାକୁ ଶୁଖାଉ ଥିଲା। ତାର ଯେତେଦୂର ସମ୍ଭବ ଦ୍ୱିତୀୟ ଲୁଗା ନଥିଲା। ଯେଉଁ ଲୁଗାଟି ସେ ପିନ୍ଧିଥିଲା ତାର ଅବସ୍ଥା ବି ଅତି ଦୟନୀୟ। ଏ ନାରୀଟିର ପରିଧାନ ଦେଖି ମନେପଡ଼ିଲା ମୋର ରାଜଧାନୀର ଶାଢ଼ୀ ସୋରୁମ୍ "କଳାମନ୍ଦିର", "ବନାରସ ବିଉଟି", "ସତ୍ୟମ୍ ଶିବମ୍ ସୁନ୍ଦରମ୍", ଅଥବା କଟକର "କେଦାରସନ" ପ୍ରଭୃତି ଦୋକାନର ସୋକେଶ୍‌ରେ ସଜା ହୋଇଥିବା କଣ୍ଢେଇମାନଙ୍କର କଥା। ନିର୍ଜୀବ କଣ୍ଢେଇ ଦେହରେ ଥିବା ଭଳିକି ଭଳି ଶାଢ଼ୀ ସହିତ ଏହି ଶାଢ଼ୀ ଶୁଖାଉଥିବା ନାରୀର ଭାଗ୍ୟକୁ କଣ କେବେ ତୁଳନା କରାଯାଇ ପାରେ ?

ଏହିଭଳି ଅସଂଖ୍ୟ ନାରୀ ଅଛନ୍ତି, ଯେଉଁମାନଙ୍କ ପାଖରେ ନିଜ ଦେହ ଲୁଚାଇବା ବା ନିଜର ପ୍ରସ୍ଫୁଟିତ ଯୌବନକୁ ଢ଼ଙ୍କାଇବାକୁ ଲୁଗାଖଣ୍ଡେ ନାହିଁ। ସ୍ତ୍ରୀକୁ ସ୍ୱାମୀ ଖଣ୍ଡେ ଶସ୍ତା ଲୁଗାଟେ କିଣିଦେବାକୁ ଅକ୍ଷମ। ସ୍ତ୍ରୀ ସାତସିଆଁ ଲୁଗା ପିନ୍ଧି ପଦାକୁ ବାହାରିବାକୁ ଇଚ୍ଛା କରୁଛି, ବୁଢ଼ାବାପଟିର କ୍ଷମତା ନାହିଁ ବଢ଼ିଲା ଝିଅକୁ ବାହାଦେବାକୁ, ଭଲ ମୁଠାଏ ଖୋଇବାକୁ ବା ଲୁଗାଖଣ୍ଡେ ପିନ୍ଧିବା ପାଇଁ ଦେବାକୁ। ଯାହାର ଚାରି ପାଞ୍ଚୋଟି ଝିଅ ଅଛନ୍ତି ଏଥିରୁ ଅନୁମେୟ କି ଅବସ୍ଥାରେ ସେମାନେ ଚଳୁଥିବେ। ଯାହାଘରେ ଭଲ କି ମୁଠାଏ ଖାଇବାକୁ ଦେବାକୁ କି ପିନ୍ଧିବାକୁ ନାହିଁ, ସେ କେମିତି ଝିଅ ବାହାଘର କରିବ ? ଝିଅକୁ ପାଠ ପଢ଼ାଇବ ? ଆମେ ସବୁ ବିଜୁଳି ଆଲୁଅ, ପ୍ରଚୁର ବହି, ଟିଉସନ ଓ ସମସ୍ତ ସୁବିଧା ସୁଯୋଗ ପାଖରେ ଥିଲେ ବି ପଢ଼ିପାରୁ ନାହୁଁ, ଫେଲ୍ ହେଉଛୁ ଅନେକ ସମୟରେ। ତାହାଲେ ଏଭଳି ଜୀବନ ସଂଗ୍ରାମ କରୁଥିବା ଘରର ଝିଅପୁଅଙ୍କ କଥା ଚିନ୍ତା କରି ହୁଏନା। ପ୍ରତିଟି ପଦକ୍ଷେପରେ ସଂଗ୍ରାମ। ଜନ୍ମରୁ ମରଣଯାଏଁ। ଖଟାପଖାଳ, ଲୁଣଲଙ୍କା, ଶାଗଭଜାଟିକେ ଏମାନଙ୍କ ଭାଗ୍ୟରେ ଜୁଟେନା। ଏହି ଭଳି ଦୁର୍ବଳ ସ୍ୱାସ୍ଥ୍ୟ ଆଉ ଅସ୍ୱାସ୍ଥ୍ୟକର ପରିବେଶ ଭିତରେ ଯେଉଁ ପିଲା ଦିନକୁ ତିନିଚାରି କିଲୋମିଟର ଚାଲି ଗାଁ ସ୍କୁଲରେ ପହଁଚିବ ସେ କେତେଦୂର ପାଠ ପଢ଼ିପାରିବ ? ତାର ମନର ବଳ ଓ ବାପାର ଆର୍ଥିକ ଅବସ୍ଥା ତାକୁ କେତେ ପରିମାଣରେ ଆଶା ଦେବ ? ଏତେବୋଟକୁ ଯାଇ ଏଭଳି ପରିସ୍ଥିତିରେ ଝିଅମାନେ ବି କେତେ ପାଠ ପଢ଼ିପାରିବେ ? ଗାଁରେ ଟିକେ ବଡ଼ ହୋଇଗଲେ ଏତେ ବାଟକୁ କିଏ ଝିଅକୁ ଛାଡିବ ଯେ ସେମାନେ ଶିକ୍ଷିତା ହେବେ ?

ଏଇ ପରିବେଶରେ ବଢ଼ୁଥିବା ଝିଅମାନଙ୍କୁ ଅଳ୍ପବୟସରୁ ଅନେକ ପ୍ରକାରର କାମ କରିବାକୁ ପଡ଼େ। ଘରର ଦୁନିଆ ପାଇଟି କରିବେ, ଦରକାର ପଡ଼ିଲେ ଅନ୍ୟ ଘରେ ବାସନ ମାଜିବେ, ଛୁଆ ଧରିବେ। ପାଣିଆଣିବାଠୁ ରୋଷେଇ ପର୍ଯ୍ୟନ୍ତ କାମ। ପୁଣି ଅନେକ ସାନ ଭାଇଭଉଣୀଙ୍କୁ ସମ୍ଭାଳିବେ, ଗାଧୋଇଦେବେ, ଲୁଗା କାଚିବେ, ଅଧିକାଂଶ ସମୟରେ ଛୋଟଭାଇକି ଭଉଣୀକୁ ବୋକଚା କରି କାଖେଇବେ ନହେଲେ ମାଡ଼ ଖାଇବେ। ଏମାନଙ୍କ ଭାଗ୍ୟରେ ପେଟ ଖଟା ପଖାଳ, ଲୁଣଲଙ୍କା ଛଡା ପ୍ରାୟ ଅଧିକାଂଶ ସମୟରେ କିଛି ଜୁଟେନା, କାରଣ ଘରେ କେବେ ଭଲମନ୍ଦ ହେଲେ ତାହା ଯାଏ ପୁଅମାନଙ୍କ ଭାଗ୍ୟରେ। ଏମାନେ କି ସୁସ୍ଥ ମା' ହେବେ ଭବିଷ୍ୟତରେ? ସେମାନଙ୍କର ପିଲାମାନଙ୍କୁ କେଉଁ ଢାଞ୍ଚାରେ ବଢ଼ାଇବେ? ଗଢ଼ିବେ? କି ଶିକ୍ଷା ଦେବେ? ଏମାନଙ୍କ ପାଖରେ ସାଇନ୍ସ ଆଣ୍ଡ ଟେକ୍‌ନୋଲୋଜି, ହାୟର ଏଜୁକେଶନ, ଓମ୍ୟାନ୍ ଲିବରେସନ, ଓମ୍ୟାନ୍ ରାଇଟ୍‌ସ୍, ମଡ଼ର୍ଣ୍ଣ ଫ୍ୟାସନ ଭଳି ବଡ଼ ବଡ଼ ଶବ୍ଦର କିଛି ମୂଲ୍ୟ ଅଛିକି?

ଅନେକ ସମୟରେ ଲେଡ଼ି ସୁପରଭାଇଜର ବା ସ୍ୱାସ୍ଥ୍ୟକର୍ମୀମାନେ ଗାଁ ଗାଁ ବୁଲି ନର୍ସିଂମଦର ଏବଂ ପ୍ରେଗ୍‌ନାଣ୍ଟ ମଦର କେଉଁ ଖାଦ୍ୟ କେତେ ପରିମାଣରେ ଖାଇବେ, କେତେ ଭିଟାମିନ୍ କେଉଁଠୁ ପାଇବେ ପିଲାମାନଙ୍କର କେମିତି ଯତ୍ନ ନେବେ ପ୍ରଭୃତି ସଂପର୍କରେ ମିଟିଂ କରି ବା ଘରଘର ବୁଲି ବୁଝାଇ ଥାନ୍ତି। ଯେଉଁମାନଙ୍କ ପାଇଁ ମାଛ, ଅଣ୍ଡା, ଦୁଧ, ମାଂସ ସ୍ୱପ୍ନ ସେମାନଙ୍କୁ ଭିଟାମିନ୍, କେଉଁଠୁ କେତେ କ୍ୟାଲୋରି ମିଳିବ କହିବା ସେ ଅବାନ୍ତର ତା ଅନୁଭବୀ ଜାଣେ। ଆମ୍ଭେମାନେ ଯାହା ପଢୁ, ଶିକ୍ଷା ପାଉ ବା ଜାଣୁ ତାହାକୁ ବିଶେଷକରି ପ୍ରାକ୍‌ଟିକେଲରେ ପରିଣତ କରିବା କେତେ କଷ୍ଟକର ତାହା ନିଜେ ପ୍ରୟୋଗ କରି ନ ଦେଖିଲେ ଜାଣି ହେବ ନାହିଁ।

ମୁଁ ଦେଖୁଛି ଗର୍ଭବତୀ ମା'ମାନେ କେମିତି ତୋରାଣି ତେନ୍ତୁଳି ପିଇ ରହନ୍ତି, ନାଲି ଚା ସହିତ ଚାଉଳଭଜା ମୁଠେ ମଧ କେବେ କେବେ କପାଳରେ ଜୁଟେନାହିଁ। ନାଲିଚାରେ ଲୁଣ କି ଗୁଡ଼ ଟିକେ ପଡ଼େ। ଅଥଚ ସେମାନେ ଗୃହାଙ୍ଗ ସଫାକରିବାଠାରୁ ଘର ଲିପିବା, ମାଟି ହାଣିବା, କାଠ ଚିରିବା ଯାଏଁ ସବୁକାମ କରନ୍ତି। ସାବୁନ କି ସୋଡ଼ାଟିକେ ମିଳେନି ଲୁଗା ସଫା କରିବାକୁ। ମଇଳା ତେଲଚିକିଟା ଛିଣ୍ଡା ଲୁଗା, କନ୍ଥାପଟା ସହିତ ସେମାନେ ବର୍ଷ ବର୍ଷ ଧରି ଦିନ କଟାନ୍ତି। ପିଲାକୁ ଶାଗୁଟିକେ କି ପେଜ ଗିନାଏ ଦେଇ ବଞ୍ଚାନ୍ତି।

ସତକଥା, ଆମର ଦାରିଦ୍ର୍ୟହିଁ ହେଉଛି ଆମର ଅଜ୍ଞାନତାର ପ୍ରଧାନ କାରଣ। ପେଟକ୍ଷୁଧା ଏମିତି ଏକ କ୍ଷୁଧା ତାର ସମାଧାନ ନ ହେଲା ଯାଏଁ ଆଉ ଅନ୍ୟ ଚିନ୍ତା କରିବା ସମ୍ଭବ ହୁଏ ନାହିଁ। ପେଟ ପାଇଁ ରଜା ବି ଦାଣ୍ଡର ଭିଖାରି ସାଜିଛି। ସେ କ୍ଷେତ୍ରରେ ମହିଳାମାନେ ବେଶ୍ ଭଲରେ ଅଛନ୍ତି କହି ସହରରେ ଆମେ "ବିଉଟିପାର୍ଲର", "କସ୍‌ମେଟିକ୍‌ସ" ବିକ୍ରିର ଉଦାହରଣ ଦେଉ। "ଫେମିନା", "ଓମେନ୍‌ସଏରା", "ସୁକନ୍ୟା", "ସାନନ୍ଦା", "ସୁଚରିତା", "ଗୃହଶୋଭା", "ମନୋରମା", "ବାମା", "ଇଭ୍‌ସଉଇକ୍ଲି", "ମାଧୁରି", ଭଳି ଆଧୁନିକ ସଭ୍ୟତାକୁ ଧରି ରଖିଲା ଭଳି ସମ୍ଭ୍ରାନ୍ତ ପତ୍ରିକା ଗୁଡ଼ିକର ଉଦାହରଣ ଦେଉ। ବାସ୍ତବରେ ଏସବୁ ପତ୍ରିକାରେ ମ୍ୟାକ୍‌ଅପ୍, ଫ୍ୟାସନ, ସିନେମା, ବିଜ୍ଞାପନ ବା ମଡେଲିଂ, ଘରସଜ୍ଜା, ଶାଢ଼ୀ, ଗହଣା, ସୁଏଟର ଡିଜାଇନ୍ କୁକିଂ ଭିତରେ ଯେଉଁ ସୁରୁଚି ସଂପନ୍ନା ନାରୀମାନଙ୍କର ମୁହଁ ଦେଖୁଛୁ ସେ ନାରୀମାନଙ୍କ ସଂଖ୍ୟା ଖୁବ୍ ନଗଣ୍ୟ। କିନ୍ତୁ ଏମାନଙ୍କୁ ଦେଖି ଆମେ କେବେ ଚିନ୍ତା କରି ପାରୁଛୁ କି ଯେ ଆଉ ବି ଏମିତି ନାରୀମାନେ ଅଛନ୍ତି, ଯେଉଁମାନେ କି ପିନ୍ଧାକାନି ପିନ୍ଧି ଅନ୍ୟପଟରେ

ଲୁଗାଟି ଶୁଖାନ୍ତି, ମୁଠାଏ ଖାଇବାକୁ କଠିନ ପରିଶ୍ରମ କରନ୍ତି ? ଆମେ ଲାଖ୍‌ମୀର ନେଲପାଲିସ୍‌ଟେ କିଣିଲାବେଳେ ଚକ୍ ଚକ୍ ଦଶଟଙ୍କିଆ କେତୋଟି ବଢ଼ାଉଲାବେଳେ କଣ କେବେ ଚିନ୍ତା କରିପାରୁ ଯେ ଏହି କେତୋଟି ଟଙ୍କାପାଇଁ ଗୋଟେ ପୁଅ କି ଝିଅ ପାଇଁ କେତେ ଠୁଙ୍ଗା ତିଆରି କରିବାକୁ ପଡ଼େ ବୋଲି ? ବାସ୍ତବିକ ଆମେ ସେମାନଙ୍କ ସଂପର୍କରେ କେବେ ଆଉ ଚିନ୍ତା କରିବା ?



# ବିଳମ୍ବ ବିବାହ ଏବଂ ପରିବାର କଲ୍ୟାଣ

ଆମ ଭାରତୀୟ ହିନ୍ଦୁ ସଂସ୍କୃତିରେ ବିବାହ ହେଲା ଜଣେ ପୁରୁଷ ଏବଂ ଜଣେ ନାରୀ ଭିତରେ ସାରା ଜୀବନର ବନ୍ଧନ। ଭାରତୀୟ ସମାଜରେ ଏହା ଏକ ପବିତ୍ର, ଦୀର୍ଘସ୍ଥାୟୀ ବା ଜନ୍ମଜନ୍ମାନ୍ତର ବନ୍ଧନ। ପାଶ୍ଚାତ୍ୟ ଦେଶରେ ବା ବର୍ତ୍ତମାନ ଆଧୁନିକ ଶିକ୍ଷିତମାନଙ୍କ ଦୃଷ୍ଟିରେ ବିବାହର ରୂପ କଣ ଏଠାରେ ଆଲୋଚନା କରାଯାଉ ନାହିଁ। କାହିଁକି ନା ଆମ ସମାଜ ଏଯାଏଁ ଚୁକ୍ତି ବିବାହକୁ ସ୍ୱୀକୃତି ଦେଇନାହିଁ। ଯେଉଁ ଦେଶରେ ସନ୍ଧ୍ୟାରେ ବିବାହ, ରାତିରେ ମଧୁଚନ୍ଦ୍ରିକା ଓ ସକାଳେ ଛାଡପତ୍ର ଦିଆଯାଏ ସେ ଦେଶରେ ବିବାହକୁ ହୁଏତ ଚିରନ୍ତନ ପବିତ୍ର ବନ୍ଧନ ଭାବେ ଗ୍ରହଣ କରାଯିବ ନାହିଁ।

ବିବାହରେ ହିଁ ଜଣେ ପୁରୁଷ ଜଣେ ସ୍ତ୍ରୀ ସ୍ୱାମୀ-ସ୍ତ୍ରୀର ଭୂମିକା ଗ୍ରହଣ କରନ୍ତି ଓ ନିଜ ସୁଖଦୁଃଖ ପରସ୍ପରକୁ ବାଣ୍ଟି ଦିଅନ୍ତି। ଏହି ସୁଖଦୁଃଖ ବାଣ୍ଟିନେବା, ପରସ୍ପରକୁ ମାନସିକ ହେଉ ଶାରୀରିକ ହେଉ ବା ଆର୍ଥିକ ଦୃଷ୍ଟିରୁ ହେଉ ସହଯୋଗ କରିବା ପ୍ରଭୃତି ନିର୍ଭର କରେ ପରିପକ୍ୱ ମସ୍ତିଷ ଉପରେ। ଦିନ ଥିଲା ଧୂଳିଖେଳ ଛାଡ଼ି ନଥିବା ଅପ୍ରାପ୍ତ ବୟସ୍କା ଝିଅଟିକୁ ଏକ ନାବାଳକ କିଶୋର ସହିତ ବିବାହ କରାଇ ଦିଆ ଯାଉଥିଲା। ସେ ସମୟରେ ବାଲ୍ୟ ବିବାହ ଏକ ସାଧାରଣ କଥା ଥିଲା। ତେଣୁ ବାହାଘର କଣ, ବର କଣ, ସ୍ୱାମୀସ୍ତ୍ରୀର ସମ୍ପର୍କ କଣ, ଘରସଂସାର କଣ କିଛି ଜାଣିବା ଆଗରୁ ଚପଳମତୀ ବାଳକ ବାଳିକା ଦୁହେଁ ସ୍ୱାମୀସ୍ତ୍ରୀ ପାଲଟି ଯାଉଥିଲେ। ପରେ ସନ୍ତାନ ଜନ୍ମକରିବା ହିଁ ସ୍ୱାମୀସ୍ତ୍ରୀଙ୍କର କେବଳ ସାଂସାରିକ ଧର୍ମ ପାଲଟି ଯାଉଥିଲା। ଅଳ୍ପ ବୟସରୁ ବହୁ ସନ୍ତାନର ଜନକ ଜନନୀ ହେବା ଛଡା ସେମାନେ ଆଉ କିଛି କରିପାରୁ ନ ଥିଲେ। ନା ପିଲାମାନେ ଭଲ ଶିକ୍ଷା ପାଉଥିଲେ ନା ନିଜେ ଟିକେ ଭଲରେ ରହୁଥିଲେ। ଦାୟିତ୍ୱର ବୋଝ ଅସମୟରେ ବାର୍ଦ୍ଧକ୍ୟ ଡାକିଆଣୁଥିଲା। ନିଜର ଜୀବନସାଥି ବାଛିବାର ସ୍ୱାଧୀନତା ନଥିଲା। ଚିନ୍ତା ବି କରାଯାଇ ପାରୁନଥିଲା। ବାପାମାଙ୍କର ଖିଆଲ ଉପରେ ସେମାନଙ୍କର ଭାଗ୍ୟ ନିରୂପିତ ହେଉଥିଲା।

ଆଜି କିନ୍ତୁ ସେ ଯୁଗ କି ସେ ପ୍ରଥା ନାହିଁ। ବିବାହର ସର୍ବନିମ୍ନ ବୟସ ଝିଅମାନଙ୍କର ପାଇଁ ଅଠର ଏବଂ ପୁଅମାନଙ୍କ ଲାଗି ଏକୋଇଶିରୁ ପଚିଶ ଭିତରେ ନିର୍ଦ୍ଧାରିତ ହୋଇଛି। ଏହା ଆଗରୁ ବିବାହ କଲେ, ଧରାପଡ଼ିଲେ ଆଇନତଃ ଦଣ୍ଡନୀୟ ହେବେ ବୋଲି ଆଇନ୍ ପ୍ରଣୟନ କରାଯାଇଛି। ପୁଅଝିଅ ଉଭୟେ ଆଜି ନିଜ ମନମୁତାବକ ସାଥି ବାଛିବାର ସ୍ୱାଧୀନତା ପାଇଛନ୍ତି। ବହୁସନ୍ତାନ ଉତ୍ପାଦନ ଆଜି ବିବାହର ଉଦ୍ଦେଶ୍ୟ ହୋଇ ରହିନାହିଁ। ପିଲାଙ୍କୁ ଉପଯୁକ୍ତ କରି ଗଢ଼ିବା, ସାରା ଜୀବନ ସୁଖରେ ରଖିବା, ପରସ୍ପର ସହିତ ବୁଝାମଣା ପ୍ରଭୃତି ଆଜି ସ୍ୱାମୀ ସ୍ତ୍ରୀ ଉଭୟଙ୍କ ଭିତରେ ଦେଖା ଦେଇଛି। ଅଭିଭାବକମାନେ ବି ଆଜି ପୁଅ ଝିଅଙ୍କର ବିଳମ୍ବ ବିବାହ ଦେଖି ବ୍ୟସ୍ତ ହେଉ ନାହାନ୍ତି। ଝିଅର ବୟସ ପଚିଶରୁ ଉର୍ଦ୍ଧ୍ୱ ଏବଂ ପୁଅର ତିରିଶ ହୋଇଗଲେ ମଧ

ଚିନ୍ତା ନାହିଁ। ଝିଅପୁଅ ଉଭୟେ ନିଜର ଭବିଷ୍ୟତ ସମ୍ପର୍କରେ ଚିନ୍ତା କରିବାର ସ୍ୱାଧୀନତା ପାଇଛନ୍ତି।ବିବାହ ବନ୍ଧନ ସାରାଜୀବନର ଚୁକ୍ତି ହୋଇଥିବାରୁ ଏଥିରେ ତରତର ହେବା ଆଦୌ ଉଚିତ ନୁହେଁ ବୋଲି ସମସ୍ତେ ପ୍ରାୟ ଉପଲବ୍ଧି କଲେଣି। ଶୀଘ୍ର ବିବାହ କେବଳ ଆବେଗ ପ୍ରବଣତା ଓ ରୋମାଣ୍ଟିକ କଳ୍ପନା ସମନ୍ୱିତ ମାତ୍ର। ଏଠି ନ ଥାଏ ଜୀବନ ପ୍ରତି ଗଭୀର ଅନୁଭୂତି, ନଥାଏ ମଧ୍ୟ ସୁଦୂର ଯୋଜନା। ତେଣୁ ଏଭଳି ବିବାହ କମ୍ ସଫଳ ହୁଏ। ଏଥିରେ ବାସ୍ତବତା ଅପେକ୍ଷା ଭାବବିହ୍ୱଳତାର ଭୂମିକା ଅଧିକ। କେବଳ ଭାବପ୍ରବଣତାକୁ ନେଇ ପ୍ରକୃତ ତେଲଲୁଣ, ସୁଖଦୁଃଖର ସଂସାର ଚଳାଯାଇ ପାରେନା।

ଅତି ଅଳ୍ପ ବୟସରୁ ବାହାହୋଇ ପଡ଼ିଲେ ପ୍ରାୟ ପିଲାଟି ବେଶି ପାଠ ପଢ଼ିପାରେ ନାହିଁ। ସଂସାର ଜଞ୍ଜାଳ ଓ ଦାୟିତ୍ୱ ତାକୁ ଆଗେଇବାରେ ବାଧା ଦିଏ। ବେଶି ପାଠ ନ ଥିବାରୁ ଚାକିରି ପାଇବା କଷ୍ଟକର ହୋଇ ପଡ଼େ। କାର୍ଯ୍ୟର ଭାର ଓ ସଂସାରର ବୋଝ ଭିତରେ ଏକ ପ୍ରକାର ପେଷି ହୋଇ ନିଜର ପ୍ରତିଭା, ଉଦ୍ୟୋଗର ବିନିଯୋଗ କରିପାରେ ନାହିଁ। ଝିଅଟି ମଧ୍ୟ କମ୍ ଶିକ୍ଷିତା ହୋଇଥିବାରୁ ଦୂରଦୃଷ୍ଟି ସମ୍ପନ୍ନା ହୋଇପାରେ ନାହିଁ। ସାଂସାରିକ ଅଭିଜ୍ଞତା ମଧ୍ୟ କମ୍ ଥାଏ। ପିଲାଙ୍କୁ ଠିକ ଗଢ଼ି ନ ପାରିଲେ ସେମାନେ ବାଲୁଙ୍ଗା ହୋଇଯାନ୍ତି। ପିଲାଙ୍କ ସଂଖ୍ୟା ଅଧିକ ହୋଇଥିଲେ ନିଜର ସୀମିତ ଆୟ ଭିତରେ ସେମାନଙ୍କୁ ମଣିଷ କରିବା ସମ୍ଭବ ହୋଇପାରେ ନାହିଁ।

ଆଜି ପ୍ରତ୍ୟେକଙ୍କ ବାପାମା ଚାହାଁନ୍ତି ସେମାନଙ୍କ ପିଲାମାନେ ଉଚ୍ଚଶିକ୍ଷିତ ହୁଅନ୍ତୁ, ଭଲ ଚାକିରି କରି ବାହାସାହା ହୋଇ ସୁଖରେ, ଶାନ୍ତିରେ ଜୀବନଯାପନ କରନ୍ତୁ। ବିବାହ ଆଗରୁ ପୁଅଝିଅଙ୍କର ମତାମତ ଜଣ ସେମାନେ ଲୋଡ଼ିଥାନ୍ତି। ଝିଅର ଇଚ୍ଛା ବିରୁଦ୍ଧରେ ବାହା କରାଇ ଦେଲେ ଝିଅଟି ସୁଖୀ ହୋଇ ନ ପାରେ ବୋଲି ସେମାନେ ବିଶ୍ୱାସ କରନ୍ତି। ତେଣୁ ଝିଅର ବୟସ ବେଶି ହୋଇ ଯାଉଛି କହି ବାପାମା ମୁଣ୍ଡ ଗଡ଼ାଇବାରେ କୌଣସି ଯଥାର୍ଥତା ନାହିଁ। ତାଛଡ଼ା ବିବାହରେ ବୟସ ଯେତେ ବଡ଼ କଥା ନୁହେଁ, ବଡ଼କଥା ହେଲା ପରସ୍ପର ଭିତରେ ବୁଝାମଣା। ଯାହାକୁ ଆମେ କହୁ **mental adjustment.** ।''ମନର ମିଳନ'' ନ ଥିଲେ ''ରାବଣସ୍ୟ ମନ୍ଦୋଦରୀ'' ମନ୍ତ୍ର କିଛି କାମ ଦେବ ନାହିଁ।

ତେବେ କଥାହେଲା ଅତିବିଳମ୍ବ ଆଦୌ ସ୍ପୃହଣୀୟ ନୁହେଁ। ଜୀବନ ତ ଖୁବ୍ ଛୋଟ। ଜଣେ ମଣିଷର ବଞ୍ଚିବାର ଦୈର୍ଘ୍ୟତା ଆସ୍ତେ ଆସ୍ତେ କମି ଆସୁଛି। ଯଦି ଆପଣ ଖୁବ୍ ଶୀଘ୍ର ନିଜର ଶିକ୍ଷା ସମାପ୍ତ କରି ଉପଯୁକ୍ତ କର୍ମସଂସ୍ଥାନଟେ ପାଇପାରିଛନ୍ତି, ଆପଣଙ୍କ ଆଗପଛରେ କୌଣସି ଦାୟିତ୍ୱର ବୋଝ ନାହିଁ ଓ ଭଲ ପାତ୍ରଟେ ମିଳୁଛି ତେବେ ଅଯଥାରେ ବିଳମ୍ବ କରିବେ କାହିଁକି? ଏ କ୍ଷେତ୍ରରେ ଶୁଭସ୍ୟ ଶୀଘ୍ରମ୍। ଅତିବିଳମ୍ବରେ ବିବାହ କଲେ ଆପଣ ଚାକିରିରୁ ଅବସର ଗ୍ରହଣ କଲାବେଳକୁ ପିଲାମାନେ ମଣିଷ ହୋଇ ନଥିବେ। ନା ସାମାଜିକ ପ୍ରତିପତ୍ତି ଥିବ ନା ବୟସ, ଅର୍ଥବଳ। ଆପଣ ବୁଢ଼ା ବୟସରେ ପିଲାମାନଙ୍କ ଉପରେ ନିର୍ଭରଶୀଳ ହେବେ କଣ,ପିଲାମାନେହିଁ ଆପଣଙ୍କ ଉପରେ ନିର୍ଭର କରିବେ। ତେଣୁ ନିଜର ସୁଦୂର ଭବିଷ୍ୟତ ଦୃଷ୍ଟିରୁ ବିବାହରେ ଅତି ବିଳମ୍ବ କରିବା ଆଦୌ ଉଚିତ ନୁହେଁ।

କଥାହେଲା, ଏଭିତରେ ଯୁଗ ବଦଳିଛି, ସମୟ ଆଗେଇଛି, ମଣିଷର ଦୃଷ୍ଟିର ଦିଗନ୍ତ ମଧ୍ୟ ବଢ଼ିଛି। ପୁରୁଣାଛାଞ୍ଚରେ ପକାଇ ଯଦି ଜୀବନକୁ ମପାଯାଏ ତେବେ ଆମର ପ୍ରଗତି ହେବନାହିଁ। ଅନେକ ପୁରୁଣା ବିଚାରର ମଣିଷ ଅଛନ୍ତି, ଯେଉଁ ମାନେ କି ବିଳମ୍ବ ବିବାହ, ଝିଅପୁଅର

ଜୀବନସାଥି ବାଛିବାର ସ୍ୱାଧୀନତାକୁ ବିରୋଧ କରିଥାନ୍ତି। ଆମ ଭାରତୀୟ ପରମ୍ପରାରେ ଏଯାଏଁ ପୁଅଝିଅଙ୍କୁ ଏଥିପାଇଁ ସଂପୂର୍ଣ୍ଣ ସ୍ୱାଧୀନତା ମିଳି ପାରିନାହିଁ। ମନେରଖନ୍ତୁ, ଆପଣ ବାପା, ମା' କି ଭାଇଭଉଣୀଙ୍କ ସହିତ ରହିବେ ସତ କିନ୍ତୁ ସଂସାର କରିବେ ଜଣକୁ ନେଇ ଯିଏ ଆପଣଙ୍କ ସୁଖଦୁଃଖ, ଭଲମନ୍ଦରେ ଅଂଶୀଦାର ହେବ। ମୋଟ ଉପରେ କହିଲେ ଖୁବ୍ ବିଳମ୍ବ ବା ଖୁବ୍ ଶୀଘ୍ର ବିବାହ କରିବା ଅନୁଚିତ୍। ଏହାଦ୍ୱାରା ଅନେକ ବ୍ୟକ୍ତିଗତ ସମସ୍ୟା ଦେଖାଯାଏ ଯାହାର ସମାଧାନ ସମୟ କ୍ରମେ କରି ହୁଏନା। ଏଥିପାଇଁ ବେଳେ ବେଳେ ବିବାହିତ ଜୀବନ ଭାଙ୍ଗି ଯାଏ। ପୁଣି ଅତିକମ୍ ବୟସରୁ ବାହାହେଉଥିବା ଝିଅଟି ଯଦି ଦୁର୍ଭାଗ୍ୟବଶତଃ ବିଧବା ହୁଏ କିମ୍ବା ସ୍ୱାମୀ କୌଣସି କାରଣରୁ ଛାଡ଼ପତ୍ର ଦିଏ ତେବେ ସେ ପରିସ୍ଥିତିର କେମିତି ସାମ୍ନା କରିବ ? ପିଲାପିଲି ଥିଲେ ସେମାନଙ୍କୁ ମଣିଷ କରିବ କେମିତି? ନିଜେ ସ୍ୱାବଲମ୍ବନଶୀଳା ନ ହେଲା ଯାଏଁ ବା ଶିକ୍ଷା ସମାପ୍ତ ନ ହଲା ପର୍ଯ୍ୟନ୍ତ ବିବାହ କଥା ଚିନ୍ତା କରିବା ଉଚିତ ନୁହେଁ। ବିବାହକରି ବହୁତ ସନ୍ତାନର ଜନନୀ ହେବା ଅପେକ୍ଷା ଦେଶ ଚାହେଁ ଏକ ପ୍ରତିଭାମୟୀ ନାରୀକୁ ଯିଏ ଦେଶକୁ ଦିଗ୍‌ଦର୍ଶନ ଦେଇ ପାରିବ, ନାରୀଜାତିର ଆଦର୍ଶର ନମୁନା ହୋଇପାରିବ। ଘର କୋଣରେ ଚୁପ୍ ଚାପ୍ ବସି ରହିବାର ସମୟ ଚାଲିଯାଇଛି। ପ୍ରତ୍ୟେକ ନାରୀ ନିଜର ଅଧିକାରକୁ ସାବ୍ୟସ୍ତ କରିବା ଉଚିତ।

## ପରିବାର କଲ୍ୟାଣ :-

ପ୍ରଥମେ କେହି ଏହି ଯୋଜନାଟି ଉପରେ ସେତେ ଗୁରୁତ୍ୱ ଆରୋପ କରୁ ନଥିଲେ। ସନ୍ତାନ ଲାଭ ଭଗବାନଙ୍କର ଇଚ୍ଛା ବା ଆଶୀର୍ବାଦ ଭାବରେ ଗ୍ରହଣ କରିଥିଲେ। ସେତେବେଳେ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା। କଞ୍ଚାମାଲର ବି ଅଭାବ ନଥିଲା। ଖାଦ୍ୟଶସ୍ୟ ପ୍ରଚୁର ପରିମାଣରେ ଉତ୍ପାଦିତ ହେଉଥିଲା। ଲୋକଙ୍କର ଦୃଷ୍ଟିକୋଣ ସୀମିତ ଥିଲା। ଶିକ୍ଷାର ପ୍ରସାର ହେଉ ନଥିଲା। ଆଜି ଭଳି ପ୍ରତିଯୋଗିତାର ବଜାର ନଥିଲା। କିନ୍ତୁ ସମୟ ବଦଳିଲା। ଦ୍ରୁତ ଗତିରେ ଜନସଂଖ୍ୟା ବଢ଼ିବାକୁ ଲାଗିଲା। ଲୋକସଂଖ୍ୟାକୁ ଅନାଇ ଆମ ଖାଦ୍ୟଶସ୍ୟ ସେହି ଅନୁପାତରେ ଉତ୍ପାଦିତ ହୋଇ ପାରିଲା ନାହିଁ। କଥାରେ ଅଛି, ''ଖାଇବସିଲେ ନଈବାଲି ମଧ ସରିଯାଏ'' ତାହହିଁ ଘଟିଲା। ଆର୍ଥିକ ସଙ୍କଟ ଯୋଗୁଁ ଅଧିକ ପିଲାମାନଙ୍କର ଯତ୍ନ ନେଇ ହେଲା ନାହିଁ କି ସେମାନଙ୍କର ଶିକ୍ଷାଦୀକ୍ଷା ଉପରେ ଉପଯୁକ୍ତ ଧ୍ୟାନ ରଖି ହେଲା ନାହିଁ। କେବଳ ଜନ୍ମ କରିଦେଲେ ନୁହେଁ ତାକୁ ଉପଯୁକ୍ତ ମଣିଷ କରିବାର କଥା ବାପାମା ବୁଝିଲେ। ଖାଇପିଇ ଯେଣେତେଣେ ପଶୁଭଳି ବଞ୍ଚିବା ନୁହେଁ। ଆର୍ଥିକ ସଂକଟ ଦୂର କରିବା ଲାଗି ସରକାର ମଧ ଚିନ୍ତା କଲେ। ପରିବାର କଲ୍ୟାଣ ବା ଜନ୍ମ ନିୟନ୍ତ୍ରଣ ପଦ୍ଧତି ଆବିଷ୍କୃତ ହେଲା। ଏହା ଉପରେ ଗୁରୁତ୍ୱ ଦିଆ ଗଲା। ତେବେ ଏହା ଯେ ଏକ ସରକାରୀ ଯୋଜନା ଏଭଳି ଭାବିବା ଆଦୌ ଉଚିତ ନୁହେଁ। ଏ ସମ୍ପର୍କରେ ପ୍ରତ୍ୟେକ ଦମ୍ପତ୍ତି ଚିନ୍ତା କରିବା ନିହାତି ଦରକାର। ଦଶଟି ପିଲା ହେଲେ ସେମାନଙ୍କୁ ଖାଦ୍ୟ, ଶିକ୍ଷା ଓ ପୋଷାକ ଯୋଗାଇ ଦେବା ସହଜ ବ୍ୟାପାର କି ? ଘରବାଲା ପାଖରେ ଯେତେ ଯାହାଥିଲେ ବି ଏ ମହଙ୍ଗା ଯୁଗରେ ମେଞ୍ଚାଏ ପିଲାଙ୍କୁ ପ୍ରତିପାଳନ କରି ଉପଯୁକ୍ତ ମଣିଷ କରିବା ସମ୍ଭବ ପର ନୁହେଁ। ନିଜକୁ ବି ଖାଇବାକୁ ମିଳିବ ନାହିଁ। ଯାବତୀୟ ଦାୟିତ୍ୱ, ଝଞ୍ଜଟ ଆସି ଠିଆହେବ। ତେଣୁ ଛୋଟ ପରିବାରଟିଏ ଗଢ଼ି ଅଧିକ ସୁଖି ହେବାର ଯୋଜନା ପ୍ରଥମରୁ କରିବା ଦରକାର।

ସ୍ୱାଧୀନତା ପରେ ଆମ ଦେଶର ଜନସଂଖ୍ୟା ଛତିଶ କୋଟି ଭିତରେ ସୀମିତ ଥିଲା। ଆଜି ଏହାର ଦୁଇ ତିନିଗୁଣ ବୃଦ୍ଧିପାଇଛି। ଏମିତି ବୃଦ୍ଧି ପାଇବ ତ ଚୀନ୍ ଦେଶ ଭଳି ଆମକୁ ନଉକା ଭିତରେ ଘର କରିବାକୁ ପଡ଼ିବ। ଏମିତି ଯଦି ଦ୍ରୁତ ଗତିରେ ଜନସଂଖ୍ୟାର ବୃଦ୍ଧି ଘଟେ ସେମାନଙ୍କ ପାଇଁ ରହିବା ନିମନ୍ତେ ଘର, ଖାଦ୍ୟ, ସ୍କୁଲ, କଲେଜ, କର୍ମଯୋଗାଣ ଆସିବ କୁଆଡୁ? ଶହଶହ ହଜାର ହଜାର ସଂଖ୍ୟାରେ ବେକାରି ଏହାର ହିଁ କାରଣ ହେଇ ଯାଉଛି। ଜୀବନର ମାନ ଯଦି ଉନ୍ନତ ହୋଇନପାରେ ତେବେ ଦେଶର ଉନ୍ନତି କେବେ ସମ୍ଭବ ହୋଇପାରିବ କି? ଏକଥା ପ୍ରତ୍ୟେକ ଦମ୍ପତ୍ତି ଚିନ୍ତା କରିବା ନିହାତି ଆବଶ୍ୟକ।

କେବଳ ପିଲା ଜନ୍ମ କରିଦେଲେ ଯଦି ବାପା-ମା'ଙ୍କର ଦାୟିତ୍ୱ ସରିଯାଉଥାନ୍ତା ତେବେ ତ ଚିନ୍ତା କରିବାକୁ ପଡ଼ନ୍ତା ନାହିଁ। ମଣିଷ ପଶୁ କିମ୍ବା ପକ୍ଷୀ ହୋଇଥାନ୍ତା କି ଅଳ୍ପ ଦିନ ଭିତରେ ନିଜେ ନିଜର ଆହାର ଯୋଗାଡ଼ କରି ନିଅନ୍ତା। ତା'ତ ସମ୍ଭବ ନୁହେଁ। ତାକୁ କୋଡ଼ିଏ ବର୍ଷ ବାପା ମା'ଙ୍କ ଉପରେ ନିର୍ଭର କରିବାକୁ ପଡ଼େ। ମଣିଷ ହୋଇ ନିଜ ଗୋଡ଼ରେ ଠିଆ ହେବାଟା ଏଡ଼େ ସହଜ ବ୍ୟାପାର ନୁହେଁ।

ପରିବାର କଲ୍ୟାଣ ଯୋଜନାକୁ ପ୍ରତ୍ୟେକ ସ୍ତ୍ରୀ ସ୍ୱାଗତ କରିବା ଦରକାର। ଏହାକୁ ନେଇ ରହିଥିବା ଅନ୍ଧବିଶ୍ୱାସକୁ ଦୂର କରିବା ମଧ୍ୟ ପ୍ରାସଙ୍ଗିକ। ନିଜ ପୁଅଝିଅକୁ କେଉଁ ମା ଭଲରେ ପିନ୍ଧାଇବାକୁ, ଖୋଇବାକୁ, ଶିକ୍ଷିତ କରିବାକୁ ନ ଚାହେଁ? ଯଦି ଏହାହିଁ ପ୍ରତ୍ୟେକ ନାରୀଙ୍କର ସ୍ୱପ୍ନ ହୋଇଥାଏ ତେବେ ସେ ନିଶ୍ଚୟ ଏହି ଯୋଜନାରେ ନିଜକୁ ଅନ୍ତର୍ଭୁକ୍ତ କରାଇବାଟା ବୋଧହୁଏ ଉଚିତ ହେବ।

ଏଥିପାଇଁ ଶିକ୍ଷିତା ନାରୀମାନେ ନେତୃତ୍ୱ ନେବା ଦରକାର। ଗାଁ ଗହଳିରେ ଆଜି ବି ଅନେକ ଝିଅବୋହୂ ଅଛନ୍ତି ଯେଉଁମାନେ ଶିକ୍ଷାରୁ, ଜୀବନର ସୁବିଧା ସୁଯୋଗରୁ ବଞ୍ଚିତା। ଦୁଇ ଓଳି ଦିମୁଠା ଖାଇବାକୁ ମିଳେ ନାହିଁ। ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ସେମାନେ ବହୁ ସନ୍ତାନର ଜନନୀ ହୋଇଥାନ୍ତି। ସେମାନେ ପରିବାର କଲ୍ୟାଣ କଣ ଜାଣନ୍ତି ନାହିଁ। ଡାକ୍ତରଙ୍କ, ସ୍ୱାସ୍ଥ୍ୟ କର୍ମୀଙ୍କ ପାଖରେ ପହଞ୍ଚିବାର ମାର୍ଗ ସେମାନଙ୍କୁ ଜଣା ନାହିଁ। ସେମାନଙ୍କର ଆଖି ଖୋଲିଦେବା ପାଇଁ ଅଯଥା ଜଞ୍ଜାଳରୁ, ଦାୟିତ୍ୱରୁ ବଞ୍ଚାଇବା ପାଇଁ ଏହି ଶିକ୍ଷିତା ନାରୀମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ନିଶ୍ଚୟ। ଯେଉଁମାନେ ପ୍ରକୃତରେ ଶିକ୍ଷିତା ସେମାନେ ହିଁ ନିଜ ପରିବାର ସହିତ ଦେଶ, ଜାତିର କଥା ଚିନ୍ତା କରି ପାରନ୍ତି। ଜଣେ ଅଶିକ୍ଷିତା ନାରୀ କଣ ବା ବୁଝିବ ପରିବାର ନିୟନ୍ତ୍ରଣ କଥା, ଛୋଟ ପରିବାର କଥା? କେମିତି ବା ବୁଝିବ ଯେ, ପରିବାରଟି ଦେଶର ଏକ ଅଂଶ। ନିଜେ ଶିକ୍ଷିତା ହେଲେ ସିନା ମା' ନିଜ ପିଲାମାନଙ୍କର ଶିକ୍ଷାକଥା ଚିନ୍ତା କରିବ? ତେଣୁ ପରିବାର କଲ୍ୟାଣ ଯୋଜନାକୁ ସଫଳ କରିବା ନିମନ୍ତେ ନାରୀଶିକ୍ଷା ଏବଂ ବିଳମ୍ବ ବିବାହ, ପରିବାର ନିୟନ୍ତ୍ରଣ ଯୋଜନା ଆବଶ୍ୟକ। ଶିକ୍ଷିତା ନାରୀମାନେ କେବେ ଅତି କମ୍ ବୟସରେ ବିବାହ କରିବେ ନାହିଁ କି ତାଙ୍କ ବାପାମା ଶିକ୍ଷିତ ହୋଇଥିଲେ ଝିଅକୁ କେବେ ବିବାହ ଦେବେ ନାହିଁ ଅଳ୍ପ ବୟସରେ। ତାଛଡ଼ା ସେମାନେ ନିଶ୍ଚିତ ଭାବରେ ପ୍ରଥମ ସନ୍ତାନ ଓ ଦ୍ୱିତୀୟ ସନ୍ତାନ ମଧ୍ୟରେ ଦୁଇ ତିନି ବର୍ଷ ସମୟ ଦେବାକୁ ଚେଷ୍ଟା କରିବେ ଓ ଛୋଟ ପରିବାର ଭିତରେ ନିଜକୁ ସୀମିତ ରଖିବାକୁ ଯତ୍ନ କରିବେ।

ଆଜି ଅବଶ୍ୟ ଏହି ଯୋଜନାଟିକୁ ଗଣ ଆନ୍ଦୋଳନରେ ପରିଣତ କରିବା ନିମନ୍ତେ ଟେଲିଭିଜନ, ରେଡ଼ିଓ, ସମ୍ବାଦପତ୍ର ତଥା ବିଭିନ୍ନ ପତ୍ରପତ୍ରିକା, ସ୍ୱାସ୍ଥ୍ୟ କେନ୍ଦ୍ରକୁ ମାଧ୍ୟମ କରାଗଲାଣି। ଲୋକସମ୍ପର୍କ

ବିଭାଗ ମଧ୍ୟ କାମ କଲାଣି। ପରିବାର କଲ୍ୟାଣ ସଂପର୍କରେ ବୁଝାଇବା ପାଇଁ ସ୍ଥାନୀୟ ଡାକ୍ତରଖାନା, ମହିଳା ସମିତି, ଯୁବସଂଘ, ରୋଟାରିକ୍ଲବ ପ୍ରଭୃତିର ମଧ୍ୟ ସାହାଯ୍ୟ ନିଆଯାଉଛି। ତାଛଡ଼ା ସବୁଜ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ "ଉମା" କବିତାଟିକୁ ମଧ୍ୟ ଏକ ସୁନ୍ଦର ବିଜ୍ଞାପନରେ ପରିଣତ କରାଯାଇଛି। ଏସବୁ ଅବଶ୍ୟ ଏ ଯୋଜନାଟିକୁ କେତେକାଂଶରେ ସଫଳ କରିବାରେ ସାହାର୍ଯ୍ୟ କରୁଛି। ଜୀବନରେ ସୁଖଶାନ୍ତିକୁ କିଣିବା ପାଇଁ ପରିବାର କଲ୍ୟାଣ ଯୋଜନା ହେଲା ପ୍ରଥମ ପାହାଚ। ଶାନ୍ତି ନ ଥିଲେ ସୁଖ ଆସିବ କୁଆଡୁ? ଶାନ୍ତିହୀନ ପରିବାର କଣ ସତରେ ଯଥାର୍ଥ ପରିବାର? ତେବେ ସବୁଠୁ ବଡ଼କଥା ହେଲା ଆମର ମନର ସଂସ୍କାର। ମନରୁ ଅନ୍ଧବିଶ୍ୱାସ, କୁସଂସ୍କାର ଦୂର ନ ହେଲେ କିମ୍ବା ଆତ୍ମ-ସଚେତନତା ନ ଆସିଲେ କେବେ ବି ପ୍ରଗତି ସମ୍ଭବ ହେବ ନାହିଁ। ଆଜି ବି ଅନେକ ନାରୀ ଅଛନ୍ତି ଯେଉଁମାନେକି ସନ୍ତାନ ଜନ୍ମଟାକୁ ଈଶ୍ୱରଙ୍କ ବରାଦ ବୋଲି ଗ୍ରହଣ କରନ୍ତି। ସେମାନେ ଆଦୌ ବିଶ୍ୱାସ କରିବାକୁ ରାଜି ନୁହନ୍ତି ଯେ ସନ୍ତାନ ଉତ୍ପାଦନଟା ମଣିଷର ଇଚ୍ଛାଧୀନ ବୋଲି। ଜନ୍ମ ନିୟନ୍ତ୍ରଣକୁ ଜୀବହତ୍ୟା ବୋଲି ଏ ଶ୍ରେଣୀର ମହିଳାମାନେ ଗ୍ରହଣ କରିଥାନ୍ତି।

ଆଜି କେବଳ ଆମ ଦେଶ କାହିଁକି ସାରା ପୃଥିବୀ ଅର୍ଥ ସଙ୍କଟ ମଧ୍ୟରେ ଗତି କରୁଛି। ମୁଦ୍ରାସ୍ଫୀତି ସହିତ ଜନସଂଖ୍ୟା ରୋକିବା ନିମନ୍ତେ ପ୍ରତ୍ୟେକ ଦେଶ ଚିନ୍ତା କରୁଛନ୍ତି। ଏ ପରିପ୍ରେକ୍ଷିରେ ପ୍ରତ୍ୟେକ ଦମ୍ପତି, ପ୍ରତ୍ୟେକ ମହିଳା ନିଜକୁ ଉପଯୁକ୍ତ କରିବା ଉଚିତ ଓ ଦେଶର ପ୍ରଗତିରେ ନିଜକୁ ସାମିଲ କରିଦେବା ଦରକାର।

# ଛାଡ଼ପତ୍ର

ଅତ୍ୟାଧୁନିକ ସଭ୍ୟତାର ଏକ ବରଦାନ ଛାଡ଼ପତ୍ର। ଯାହା ଦିନକୁ ଦିନ ବଢ଼ିବାରେ ଲାଗିଛି। ଟିକିଏ ଟିକିଏ କଥାରେ ସ୍ୱାମୀ ସ୍ତ୍ରୀକୁ କିମ୍ବା ସ୍ତ୍ରୀ ସ୍ୱାମୀକୁ ଛାଡ଼ପତ୍ର ଦେବାକୁ ପଛାଉ ନାହାଁନ୍ତି। ଏ ଭିତରେ ଆମର ଶିକ୍ଷା ବଢ଼ିଛି, ଦୃଷ୍ଟିକୋଣ ବଦଳିଛି, ଆମେ ଅଧିକ ସଭ୍ୟ ହେଉଛୁ। ଅଧିକ ବୁଝିବା ସୁଝିବା ମଧ୍ୟ ହୋଇଛୁ, ଜୀବନ ସାଥି ବାଛିବାର ସ୍ୱାଧୀନତା ରହିଛି, ଅନ୍ଧବିଶ୍ୱାସ ବି କମିଛି। ଅଥଚ ଯେଉଁ ବିବାହ ଦିନେ ନାରୀପୁରୁଷ ଲାଗି ଜନ୍ମଜନ୍ମର ବନ୍ଧନ ହୋଇ ରହିଥିଲା ତାହା ଆଉ ଜୀବନସାରାର ସ୍ଥାୟୀ ଚୁକ୍ତି ହୋଇ ରହି ନାହିଁ। କେଉଁଠି ସ୍ୱାମୀକୁ ଛାଡ଼ପତ୍ର ଦେଇ ସ୍ତ୍ରୀ ଆଉ କାହାକୁ ବାହା ହୋଇ ଯାଉଛି ତ କେଉଁଠି ସ୍ୱାମୀକୁ ଦୁଇତିନୋଟି ପିଲାଙ୍କୁଆର ବାପ ହୋଇ ମଧ୍ୟ ସ୍ୱାମୀ ସ୍ତ୍ରୀକୁ ଛାଡ଼ି ଆଉ କାହା ସହିତ ରହୁଛି। ତେଣୁ ଛାଡ଼ପତ୍ର ଦେବା ବା କୋର୍ଟରେ ବିବାହ ବିଚ୍ଛେଦ କରାଇବାରେ ସେମିତି କିଛି ବାଧା ବା ବୈଚିତ୍ର୍ୟ ନାହିଁ। ନାରୀ ଭ୍ରଷ୍ଟା ବା ଚରିତ୍ରହୀନା ହେଲେ ଛାଡ଼ପତ୍ର ଦେବାର ବିଧି ପ୍ରଚଳିତ ଅଛି। ସେହିପରି ସ୍ୱାମୀ ଅଯୋଗ୍ୟ, ନୀ ଭ୍ରଷ୍ଟ କିମ୍ବା କ୍ଳୀବ ହେଲେ ସ୍ତ୍ରୀମଧ୍ୟ ଅନ୍ୟପତି ଗ୍ରହଣ କରିବାର ପ୍ରଥା ରହିଛି।

ସ୍ୱାମୀସ୍ତ୍ରୀଙ୍କ ଭିତରେ ଯେଉଁ ଛାଡ଼ପତ୍ର ବ୍ୟବସ୍ଥାଟି ଆଜି ଆମ ଭାରତୀୟ ସଂସ୍କୃତିରେ ମୁଣ୍ଡ ଟେକୁଛି, ଏହାର ଭିତ୍ତିଭୂମି ପାଶ୍ଚାତ୍ୟ ଦେଶରୁହିଁ ଉଦ୍‌ଭବ। କାରଣ ସେ ଦେଶରେ ଦାମ୍ପତ୍ୟ ଜୀବନ ବୋଲି କିଛି ନାହିଁ କହିଲେ ଚଳେ। ରାତିରେ ବିବାହ, ଦିନରେ ଛାଡ଼ପତ୍ର ଏକ ନିତିଦିନିଆ ଘଟଣା। ବିବାହ ବର୍ଷିକିଆ, ତିନିବର୍ଷିଆ ଏମିତି ଗୁଡ଼ାଏ ଚୁକ୍ତି ଭିତରେ ଆବଦ୍ଧ ଯାହାକୁ କି ଇଂରାଜୀରେ କୁହାଯାଉଛି "contract marriage" ।ସ୍ୱାମୀଙ୍କ ସମ୍ପର୍କ କହିଲେ ସେକ୍ସ ହିଁ ସେଠି ବୁଝାଏ। ତେଣୁ ପାରିବାରିକ ଜୀବନର ଅର୍ଥ ସେମାନଙ୍କ କ୍ଷେତ୍ରରେ ସାଧାରଣତଃ ହୋଟେଲ ଜୀବନକୁହିଁ ବୁଝିବାକୁ ପଡ଼ିବ। ଅଥଚ ଆଜି ଆମଦେଶରେ ସଂସ୍କୃତି, ପରମ୍ପରା ଦ୍ରୁତ ଗତିରେ ପାଶ୍ଚାତ୍ୟ ଢାଞ୍ଚାରେ ବଦଳିବାରେ ଲାଗିଛି ଯାହା .ଫଳରେ କି ଛାଡ଼ପତ୍ରର ଚଳଣିକୁ ଗ୍ରହଣକରି ନିଆ ଗଲାଣି।

ବାସ୍ତବିକ ବିବାହ ଏବଂ ଛାଡ଼ପତ୍ର ଏହି ଦୁଇଟି ପ୍ରଥା ପରସ୍ପରର ସଂପୂର୍ଣ୍ଣ ବିପରୀତ। ବିବାହ ପୁରୁଷ ଓ ନାରୀକୁ ଏକାଠି କରି ଜନ୍ମଜନ୍ମର ସାଥି ହିସାବରେ ଗୁଚ୍ଛି ଦେଲାବେଳେ ଛାଡ଼ପତ୍ର ସେହି ବିବାହିତ ନାରୀ ପୁରୁଷକୁ ବନ୍ଧନରୁ ସବୁଦିନଲାଗି ମୁକ୍ତ କରିଦିଏ। ଏହି ଛାଡ଼ପତ୍ରକୁ କେହି Surgical operation ବୋଲି ବ୍ୟଙ୍ଗ କରିଥାନ୍ତି। ଏହା ସ୍ୱୀକାରଯୋଗ୍ୟ ଯେ ଯେତେବେଳେ ଦୁଇଜଣ ବିବାହିତ ସ୍ତ୍ରୀପୁରୁଷଙ୍କର ଏକାଠି ରହିବା ଆଉ ସମ୍ଭବ ହୋଇପାରେ ନାହିଁ ସେତେବେଳେ ହିଁ ସେମାନେ ଛାଡ଼ପତ୍ର ଦେଇଥାନ୍ତି। କାରଣ ମାନସିକ ଭାବରେ ଏକାଠି ରହିବାଟା ସମ୍ଭବ ନ ହେଲେ ଆଉ ସ୍ୱାମୀ ସ୍ତ୍ରୀର ମିଛ ଭୂମିକା ନେଇ କେତେଦିନ ସେମାନେ ଅଭିନୟ କରିବେ ?

ଆମ ଦେଶରେ ଚୁକ୍ତିବିବାହର ପ୍ରଚଳନ ଏତେଟା ହୋଇ ପାରିନାହିଁ। ଉଚ୍ଚ ମଧ୍ୟବିତ୍ତ, ଚଳଚ୍ଚିତ୍ର ଜଗତ, ଅତ୍ୟାଧୁନିକ ପରିବାରରେ ଏହି ଛାଡ଼ପତ୍ରର କାରବାର ଅଧିକ ବ୍ୟବହୃତ ହେଉଥିବାର ଲକ୍ଷ୍ୟ କରାଯାଏ। ତେବେ ଜୈନ, ଶିଖ୍, ହିନ୍ଦୁ, ବୌଦ୍ଧ ପ୍ରଭୃତିଙ୍କ ଠାରୁ ଏ ଦେଶରେ ମୁସ୍‌ଲିମ୍ ସମ୍ପ୍ରଦାୟରେ ଏହା ଅଧିକ ଭାବରେ ପ୍ରଚଳିତ। ମୁସ୍‌ଲିମ୍‌ମାନେ ତଲାକ୍ ବୋଲି ତିନିଥର କହିଦେଲେ ତାଙ୍କର ଛାଡ଼ପତ୍ର ହୋଇଯାଏ। ଜଣେ ପୁରୁଷ ଏକାଧିକ ବିବାହ କରିବାରେ ତାଙ୍କ ସମ୍ପ୍ରଦାୟରେ ସେମିତି କିଛି ବାଧାବନ୍ଧନ ନଥାଏ। ହନାଫିମତ ଅନୁସାରେ ଏହା ସ୍ୱାମୀ ହସ୍ତରେ ସ୍ତ୍ରୀକୁ ଅତ୍ୟାଚାର କରିବାର ଏକ ଏକତରଫା ଅସ୍ତ୍ର ଅଟେ।

ଆମ ହିନ୍ଦୁ ବିବାହକୁ ଏକ ଧାର୍ମିକ, ସାମାଜିକ ଅନୁଷ୍ଠାନ ଭାବରେ ଗ୍ରହଣ କରାଯାଏ। ଅଗ୍ନିକୁ ସାକ୍ଷୀ ରଖି ସେମାନେ ସାତ ସାତଜନ୍ମରେ ବି ଏକାଠି ରହିବେ ବୋଲି ଶପଥ କରିଥାନ୍ତି। ଅଗ୍ନିକୁ ଆମେ ଦେବତା ଭାବରେ ମାନିଥାଉ। ଏ ଦେଶରେ ଏମିତି ବି ଥିଲା ସ୍ୱାମୀର ମୃତ୍ୟୁରେ ସ୍ତ୍ରୀ ସତୀ ହେବାଲାଗି ସ୍ୱାମୀର ଚିତାରେ ନିଜକୁ ଆହୂତି ଦେଉଥିଲା। ଏହାର ଅର୍ଥ ହେଲା ସ୍ତ୍ରୀର ପ୍ରେମ, ଭଲପାଇବା। ଆମ ଦାମ୍ପତ୍ୟ ଜୀବନ ଅନେକ ସାମାଜିକ ନୀତିନିୟମର ଶକ୍ତ ରଜ୍ଜୁରେ ମଧ୍ୟ ଆବଦ୍ଧ। ତେବେ ଜଣେ ପୁରୁଷ ସ୍ତ୍ରୀକୁ ଛାଡ଼ପତ୍ର ଦେବା ପଛରେ ବିଭିନ୍ନ କାରଣ ହୋଇପାରେ:-

. ସ୍ତ୍ରୀର ଚରିତ୍ର ପ୍ରତି ସନ୍ଦେହ
. ଅକାଳ ବାର୍ଦ୍ଧକ୍ୟ
. ସ୍ତ୍ରୀ ଯଦି ଅନ୍ୟ ଧର୍ମ ପ୍ରତି ଆକୃଷ୍ଟ ହୁଏ।
. ସରଳ ଓ ନିରୀହତାର ସୁଯୋଗ।
. ଭୟଙ୍କର ରୋଗରେ ଅର୍ଥାତ କୁଷ୍ଠ ଇତ୍ୟାଦି ରୋଗରେ ଯଦି ସ୍ତ୍ରୀ ଆକ୍ରାନ୍ତ ହୁଏ।
. ମସ୍ତିଷ୍କ ବିକୃତି।
. ସ୍ତ୍ରୀର ମା' ହେବାର ଶକ୍ତି ଯେବେ ନଥାଏ।

ଦୁଇଜଣଙ୍କ ମତ, ଚିନ୍ତାଧାରା ଯଦି ସଂପୂର୍ଣ୍ଣ ଭିନ୍ନ ହୋଇଥାଏ ଓ କେହି କାହାକୁ ବରଦାସ୍ତ କରି ନ ପାରନ୍ତି।

ସେମିତି ସ୍ତ୍ରୀ ପୁରୁଷକୁ ଛାଡ଼ପତ୍ର ଦେବା ପଛରେ ଉପରୋକ୍ତ କେତୋଟି କାରଣ ଅନ୍ତର୍ଭୁକ୍ତ ହୋଇଥାଏ। ତାଛଡ଼ା ସ୍ତ୍ରୀ ଛାଡପତ୍ର ଦେଇ ପାରେ ଯଦି:-

ସ୍ୱାମୀର ଅନେକ ସ୍ତ୍ରୀ ରହିଥାନ୍ତି ବା ସ୍ୱାମୀର ଚାରିତ୍ରିକ ସ୍ଖଳନ ଘଟିଥାଏ। ଅନ୍ୟ କୌଣସି ସ୍ତ୍ରୀ ପ୍ରତି ସ୍ୱାମୀର ଯଦି ପ୍ରବଳ ଆକର୍ଷଣ ଥାଏ।

ସ୍ୱାମୀ ମଦ୍ୟପି ହେବା ସହିତ ସ୍ତ୍ରୀ ଉପରେ ମାରପିଟ କି ନିର୍ଯ୍ୟାତନା ଦେଉଥାଏ ଅଥବା ବିନା କାରଣରେ ସନ୍ଦେହ କରୁଥାଏ।

. ଦୁଇଜଣଙ୍କର ରୁଚି, ଚିନ୍ତାଧାରା ସଂପୂର୍ଣ୍ଣ ଅଲଗା ହୋଇଯାଏ।
. ବାପା ହେବାର ଅସାମର୍ଥ୍ୟତା।

ତୀବ୍ର ଦାରିଦ୍ର୍ୟ, ଭରଣ ପୋଷଣ କରି ନ ପାରିବାର ଅକ୍ଷମତା ବା ସ୍ତ୍ରୀର ଇଚ୍ଛା ପୂରଣ ହୋଇପାରୁ ନଥିଲେ।

ଭାରତରେ ମୁସ୍‌ଲିମ ପୁରୁଷମାନେ ସ୍ତ୍ରୀମାନଙ୍କ ଠାରୁ ଅଧିକ କ୍ଷମତାଶାଳୀ ହୋଇଥିବାରୁ ସେ ନିଜ ଇଚ୍ଛାରେ ଯେ କୌଣସି ସମୟରେ ସ୍ତ୍ରୀକୁ ଛାଡ଼ପତ୍ର ଦେଇପାରେ। Harafi Law

ଅନୁସାରେ ଭାରତରେ ମୁସ୍‌ଲିମ୍ ସ୍ୱାମୀମାନେ କୌଣସି କାରଣ ଦର୍ଶାଇ ତଲାକ୍ କରି ପାରିବେ ନାହିଁ। ୧୯୭୪ ରେ "Women in India" ନାମକ କମିଟିରେ ସେମିତି ମୁସ୍‌ଲିମ୍ ମହିଳାଙ୍କ ପାଇଁ କିଛି କାମ କରାଯାଇ ନାହିଁ ଯଦିଓ ଅନ୍ୟ ମୁସ୍‌ଲିମ୍ ଦେଶଗୁଡ଼ିକରେ ମୁସ୍‌ଲିମ୍ ମହିଳାଙ୍କ ଭାବମୂର୍ତ୍ତି ଉନ୍ନତ ହେଲାଣି। ତୁର୍କୀ ଏବଂ ସାଇପ୍ରସ୍‌ରେ ଛାଡ଼ପତ୍ର ଉପରେ ନିଷେଧାଜ୍ଞା ଜାରି ହେଲାଣି ଏବଂ ତାନ୍‌ଜିଆ, ଆଲଜେରିଆରେ ସ୍ୱାମୀ ଛାଡ଼ପତ୍ର ଦେଲେ କୋର୍ଟକୁ ଦରଖାସ୍ତ କରିବାର ବ୍ୟବସ୍ଥା ହେଲାଣି। ସେଇଥିପାଇଁ ଆମ ଦେଶରେ ଶାହାବାନୋ କେଶ୍ ମୁସ୍‌ଲିମ୍ ମହିଳାଙ୍କ ତରଫରୁ ଏକ ଗଣଆନ୍ଦୋଳନ ଭାବରେ ଠିଆ ହେଇ ପାରିଥିଲା। ଆଜିକାଲି ଏହି ଛାଡ଼ପତ୍ର ସାଧାରଣ ଦମ୍ପତିଙ୍କ ଜୀବନରେ ମହାମାରି ଭଳି ବ୍ୟାପିବାକୁ ଲାଗିଲାଣି। ଟିକିଏ ଟିକିଏ କଥାରେ ସ୍ୱାମୀ ସ୍ତ୍ରୀକୁ କିମ୍ବା ସ୍ତ୍ରୀ ସ୍ୱାମୀକୁ ଡାଇଭୋର୍ସ କରୁଛି। ସାମାନ୍ୟ ଘରୋଇ କଳି, ଅବୁଝାମଣାରେ ସେମାନେ କୋର୍ଟରେ ପହଞ୍ଚି ଯାଉଛନ୍ତି। ଟିକିଏ କଥାରେ ଆମେ ଆଡ଼ଜଷ୍ଟ କରିପାରୁନୁ ବୋଲି କହୁଛନ୍ତି। କେଉଁଠି ଅସହାୟା ସ୍ତ୍ରୀ ଓ ପିଲାଛୁଆ ଛାଡ଼ି ସ୍ୱାମୀ କାହାକୁ ନେଇ ଘର ସଂସାର କଲାଣି ତ କେଉଁଠି ସ୍ୱାମୀର ନିରୀହତାର ସୁଯୋଗ ନେଇ ସ୍ତ୍ରୀ କାହାସହିତ ପଳାଇ ଗଲାଣି।

କଥା ହେଲା, "ଘର କରିଥିଲେ ପଥର ପଡ଼ିଲେ ସହି"। ସଂସାରରେ ତ ଦୁଃଖସୁଖ, ଅଭାବ-ଅନାଟନ ଲାଗି ରହିଛି। ସ୍ୱାମୀ ସ୍ତ୍ରୀଙ୍କ ଭିତରେ ସମସ୍ତଙ୍କ ଘରେ କଳି ହୁଏ, ମୁହଁ ଫୁଲାଫୁଲି ହୁଏ, ରାଗରୁଷା, ମାନଅଭିମାନ ହୁଏ, ଚିଙ୍ଗାଚିଙ୍ଗି, ପିଟାପିଟି ବି ହୁଏ। କେତେବେଳେ ସ୍ତ୍ରୀ ବାପଘରକୁ ରୁଷି ଚାଲିଯାଏ ତ କେତେବେଳେ ସ୍ୱାମୀ ହୋଟେଲରୁ ଖାଇଆସେ। ପୁଣି ସମୟ କ୍ରମେ ସବୁ ଠିକ ହୋଇଯାଏ। ସେମାନେ ଏହି କଷାପିଟାକୁ ଭୁଲିଯାନ୍ତି। ସବୁବେଳେ ମିଠା ଖାଇଲେ ଯେମିତି ଆଦୌ ଭଲ ଲାଗେନାହିଁ ସେମିତି ରାଗରୁଷା ନଥିଲେ ସାଂସାରିକ ଜୀବନ ମଧୁର ହୁଅନ୍ତା ନାହିଁ। ଯଦି ଏମିତି ଛୋଟ କଥାରେ ଛାଡ଼ପତ୍ର ଦିଆଯାଏ ତେବେ ଆମ ପାରିବାରିକ ଜୀବନର ସ୍ଥିତି, ଭବିଷ୍ୟତ କଣ ହେବ ? ପାଶ୍ଚାତ୍ୟ ଢାଞ୍ଚାରେ ବଢ଼ିଲେ ବି ଯଦି ଆମେ ନିଜର ସମସ୍ୟା, ପାଣିପାଗ, ସଂସ୍କୃତି ସବୁକିଛିକୁ ସେହି ପାଶ୍ଚାତ୍ୟ ରୀତିନୀତିରେ ଢାଳି ଦେବୁ ତାହାଲେ ଆମର ବା ଏ ଦେଶର ସଂସ୍କୃତି ହେଇ ଆଉ କଣ ରହିବ ? ନିଜ ନିଜର ଭୁଲକୁ ନ ସୁଧାରି ପରସ୍ପରର ଦୋଷ ଖୋଜି କୋର୍ଟରେ ଆଶ୍ରୟ ନେଲେ ଭାରତୀୟ ସମାଜରେ ଆମ ଫ୍ୟାମିଲି ବୋଲି କିଛି ରହିବ ନାହିଁ। କାଚ ଘର ତିଆରି କରିହେବ। ଥରେ ଭାଙ୍ଗିଗଲେ ସେ କାଚକୁ ଯୋଡ଼ି ହେବ କି ? ଭାବପ୍ରବଣତାରେ ବା କ୍ରୋଧରେ ଯଦି ଏଭଳି ନିଷ୍ପତ୍ତି ନିଆଯାଏ ତେବେ ପରେ ଅନୁତାପହିଁ ସାର ହୁଏ।

ପ୍ରତ୍ୟେକ ନବବିବାହିତ ଦମ୍ପତି ବିବାହ କଲା ବେଳେ ଶପଥ ନେବା ଉଚିତ ଯେ, ସେମାନେ ସମସ୍ତ ଝଡ଼ଝଞ୍ଜା, ବାଧାବିଘ୍ନ ସତ୍ୱେ ମୃତ୍ୟୁ ପର୍ଯ୍ୟନ୍ତ ଏକାଠି ରହିବେ। କେହି କାହାରି ଦୁର୍ଦ୍ଦିନରେ ଛାଡ଼ିଯିବେ ନାହିଁ। ପରସ୍ପରର ସାହାରା, ବନ୍ଧୁ ପାଲଟିବେ। ନଚେତ୍ ସୁଖ ଖୋଜିଖୋଜି ସାରାଜୀବନ ଚାଲି ଯିବେ ସିନା କିନ୍ତୁ ପ୍ରକୃତ ସୁଖ ମିଳିବନି। ଛାଡ଼ପତ୍ର ଭଳି ଏକ କାଗଜ କଲମର ଚୁକ୍ତି କଣ କେବେ ଆତ୍ମାର ବନ୍ଧନକୁ ତୁଟାଇ ପାରେ ? ମନର ଡ଼ୋରି ସତରେ କଣ ଛାଡ଼ପତ୍ର ଦେଇ ଦେଲେ ସବୁଦିନ ପାଇଁ ତୁଟିଯାଏ ? ଏହା ଆମ ଆଧୁନିକୀ ପୋଷାକ ସହିତ ଏକ ଛଳନାର ସୁଖ ନୁହେଁ କି ? ଏ ଛାଡ଼ପତ୍ର କେବଳ ସ୍ୱାମୀ-ସ୍ତ୍ରୀ ଦୁହିଁଙ୍କ ଜୀବନ ନଷ୍ଟ କରି ଦିଏନି କେତୋଟି କୋମଳମତୀ ପିଲାଙ୍କର ଭବିଷ୍ୟତକୁ ମଧ ଅନ୍ଧାରକୁ ଟାଣି ନିଏ। ବାପା ଥାଉ ଥାଉ ବା ମା ଥାଉ ଥାଉ ସେମାନେ ଅନାଥ ହେଇଯାନ୍ତି। ମାତାପିତାଙ୍କର ସ୍ନେହରୁ,

ସହଯୋଗରୁ, ଆଶୀର୍ବାଦରୁ ବଞ୍ଚିତ ହୁଅନ୍ତି। ବାପା ବିନା ମା ହୁଏତ ଚାକିରି କରି କୌଣସି ମତେ ସେମାନଙ୍କୁ ମଣିଷ କରି ଦିଅନ୍ତି, କିନ୍ତୁ ବାପାମାଙ୍କ ଠାରୁ ସେମାନଙ୍କର ଯେଉଁ ମିଳିତ ସ୍ନେହ, ଶ୍ରଦ୍ଧା ପାଇବାର କଥା ଓ ତାର ଯେଉଁ ଆନନ୍ଦ ତା ଅପୂର୍ଣ୍ଣ ହୋଇ ରହିଯାଏ। ପୁଣି ମା ଚାଲିଗଲେ ବାପା ନୂଆ ମା ନେଇ ଆସିଲେ ସାବତମା ଯଦି ଦେଖି ନ ପାରେ ତେବେ ଅବସ୍ଥା ଆହୁରି ଶୋଚନୀୟ ହୋଇଯାଏ। ତାଛଡ଼ା ବାପାମାଙ୍କର ଛାଡ଼ପତ୍ରକୁ କେନ୍ଦ୍ରକରି ପିଲାମାନଙ୍କୁ ସେମାନଙ୍କ ସାଙ୍ଗସାଥିମାନେ କେତେ କୈଫିୟତ ଦାବୀ କରନ୍ତି, ପ୍ରଶ୍ନ ପଚାରନ୍ତି, ଅଯଥା ସହାନୁଭୂତି ଦେଖାଇ ଆହତ କରନ୍ତି। ମନ ଭିତରେ ଏକ ଅପୂର୍ଣ୍ଣତା, ଏକ ଅସହାୟତା, ହୀନମନ୍ୟତା ସବୁଦିନ ପାଇଁ ସେମାନଙ୍କୁ କୋରି ଖାଇଯାଏ।

ଏସବୁ ଆଗପଛ ଭାବି ମାନବିକ ଦୃଷ୍ଟିରୁ ଛାଡ଼ପତ୍ର ସଂପର୍କରେ ଗଭୀର ଚିନ୍ତା କରି ପ୍ରତ୍ୟେକ ସ୍ୱାମୀସ୍ତ୍ରୀ ପଦକ୍ଷେପ ନେବା ଦରକାର। ବିଶେଷକରି ନାରୀମାନଙ୍କ ପକ୍ଷରେ ବିବାହବନ୍ଧନ ଛିନ୍ନ ହୋଇଗଲେ ପ୍ରଥମତଃ ତାର ଶାରୀରିକ ନିରାପତ୍ତା ଓ କେଉଁଠି ବାସ କରିବାର ପ୍ରଶ୍ନ ଉଠିଥାଏ। ଚାକିରି କରି ନଥିଲେ ଜୀବନ ଧାରଣର ଉତ୍କଟ ସମସ୍ୟା ଆସି ଠିଆହୁଏ। ସନ୍ତାନର ଲାଳନପାଳନ, ନିଜର ଭରଣ ପୋଷଣ ଏକ ବଡ଼ ଦାୟୀତ୍ୱ ପାଲଟିଯାଏ। ଏସବୁକୁ ଅତିକ୍ରମ ଓ ଅଧିକାର, ସମ୍ମାନର ସୁରକ୍ଷା କରିବା ତାପାଇଁ ନିଶ୍ଚିତ ଭାବରେ ଏକ ପରୀକ୍ଷା। ତେଣୁ ବିବାହ ବନ୍ଧନ ଛିନ୍ନ ନ କରି ସୁଖି ସଂସାର ଲାଗି ବ୍ରତୀ ହେବା ପ୍ରତ୍ୟେକଙ୍କର ଆଦର୍ଶ, କର୍ତ୍ତବ୍ୟ ହେବା ଦରକାର।

*

# ନାରୀ ନିର୍ଯ୍ୟାତନାର ଶେଷ କେଉଁଠି ?

ସେଦିନ ମନୁ ନାରୀକୁ ନର୍କର ଦ୍ୱାର କହି ବୋଧହୁଏ ବିଦ୍ଧ କରିଗଲେ ନିର୍ଯ୍ୟାତନାର ପ୍ରଥମ ଅସ୍ତ୍ର । ତାପରେ ନାରୀ କେଉଁ କବି ଓ ଲେଖକ ହାତରେ ଅବଳା ଦୁର୍ବଳା ଭାବରେ ଚିତ୍ରିତ ହୋଇଅଛି ତ ପୁଣି କାହା ହାତରେ "ବିନାଶ୍ରୟେ ନ ବର୍ତ୍ତନ୍ତି କବିତା ବନିତା ଲତା ।" ଆରମ୍ଭରୁ ନାରୀ ଯେ ଆଶ୍ରାହୀନା ଦୁର୍ବଳା ଓ ତାର ଆଶ୍ରୟ ଦରକାର ସେ ଆଶ୍ରୟଟି ପୁରୁଷ ଏହିଭଳି ଏକ ପରିବେଶ ସୃଷ୍ଟି କରି ଆମର ପୁରୁଷ - କୈନ୍ଦ୍ରିକ ସମାଜ ନାରୀ ଉପରେ ନିର୍ଯ୍ୟାତନା ଆରମ୍ଭ କରି ଦେଇଥିଲା ଓ ଜାଣି ଜାଣି ତା ମନବଳ ଭାଙ୍ଗି ଦେଇଥିଲା । ତେଣୁ ଝିଅଟିଏ ଜନ୍ମ ହେଲାମାତ୍ରେ ଓ ହେତୁ ପାଇଲା ଦିନରୁ ତାର ବାପାମା ଭାଇ ଭଉଣୀ ଆତ୍ମୀୟ ସ୍ୱଜନ ଖାଇ - ପଡ଼ିଶା ସମସ୍ତେ ତା ଭିତରେ ଭରି କରିଦେଲେ ନ୍ୟୁନଭାବ "ସେ ନାରୀ" । ନାରୀ ହେବା ଯୋଗୁ ସେ ପୁରୁଷ ସହ ସମକକ୍ଷ ନୁହେଁ । ତାକୁ ଆଗେଇବା ଲାଗି ସାଥି ଲୋଡ଼ା । ସେ ଏକ ଲତା ଯେ କି ସିଧା କେବେ ଆପଣା ଗୋଡରେ ଠିଆ ହୋଇପାରେନା । ତେଣୁ ଏକା ଠିଆ ହେବାର ଦୁଃସାହସ କରିବା ତା ପକ୍ଷରେ ଅନୁଚିତ୍ । କେବଳ ଏତିକି ନୁହେଁ, "ଝିଅ ଜୀବନ ପର ଘରକୁ" ଭଳି ଏକ ଭାବ ସୃଷ୍ଟି କରି ତାକୁ ଆହୁରି ଦୁର୍ବଳ କରି ଦିଆଗଲା । ଯାହାଫଳରେ ଭଲ ପାଠ ପଢୁଥିବା ଝିଅକୁ ପୋଥିରେ ଡୋରି ବାନ୍ଧିବାକୁ ପଡ଼ିଛି । ଉଚ୍ଚ ଶିକ୍ଷାରୁ ବଞ୍ଚିତା କରାଯାଇଛି । ସେ ଯେ ପୁଅର ସମକକ୍ଷ ନୁହେଁ ଏଇଥି ପାଇଁ ପୁଅ ଅପେକ୍ଷା ତାକୁ ଅଧିକ କାମ ଦିଆଯାଇଛି । କମ୍ ଖାଇବାକୁ ଦିଆଯାଇଛି । ପୁଅଟି କ୍ଷୀର, ଅଣ୍ଡା, ଫଳ ପାଇଲା ବେଳେ ଝିଅକୁ ପଖାଳ ଓ ଶୁଖିଲା ରୁଟି ମିଳୁଛି । ମେଧାବିନୀ ଝିଅଟିଠାରୁ ବହି ଛଡ଼ାଇ ନେଇ ଚଟୁ ଧରାଇ ଦିଆଯାଉଛି । ବାସନମଜା, ଘରଲିପା, ରୋଷେଇ, ଝୋଟିଦିଆ, ପିଲାସମ୍ଭାଳିବା ଭିତରେ ତାର ସ୍ୱପ୍ନ ସେ ନିଜ ଗୋଡ଼ରେ ଛିଡ଼ା ହୋଇ ପାରିବାର ଭରସାକୁ ନଷ୍ଟ କରିଦିଆଯାଉଛି । ଏଭଳି ଦେଖିଲେ ଝିଅଟି ପ୍ରଥମରୁ ହିଁ ନିର୍ଯ୍ୟାତିତା ହୋଇଥାଏ ତାର ଆପଣାର ଘରେ, ପୁଣି ନିଜର ଜନ୍ମଦାତା 'ମା' ବାପାଙ୍କ ଦ୍ୱାରା । ପଥର ତଳେ ନାରୀର ଭାଗ୍ୟ କହି ବାପାମା ହିଁ ତାକୁ ପଥର ଭଳି ବ୍ୟବହାର କରିଥାଆନ୍ତି ଅନ୍ତରପାତରେ, ପୁଅଝିଅର ବିଭେଦର ନୀତି ଧରି । ତେଣୁ ନିର୍ଯ୍ୟାତିତାର ପ୍ରଥମ କରୁଣ ଲିପି ଝିଅଟିର ଜୀବନରେ ଲେଖାଯାଏ ତା ସୃଷ୍ଟିକର୍ତ୍ତା ଘରେ ।

ତାପରେ ସେ ନିର୍ଯ୍ୟାତନାର ଯେପରି ଶେଷ ନାହିଁ । କେବେ ସ୍ୱାମୀ ହାତରେ କେବେ ପୁଅ ହାତରେ ସାରା ଜୀବନ ଯେମିତି ଅନ୍ଧକାର ଆଉ ନିର୍ଯ୍ୟାତନା । ଯାହା ଫଳରେ ସେ ବୁଝିଯାଏ ନାରୀଜୀବନ ଏକ ଅଭିଶାପ । ନିଜକୁ ତେଣୁ ଭାବନାହୀନ ଖେଳଣା କଣ୍ଢେଇ ଭାବରେ ସବୁ ସହିପାରିବାର ପଥର ପ୍ରତିମା ଭାବରେ ସେ ସମାଜ ହାତରେ ସମର୍ପଣ କରେ । ଏହିଭଳି ଯୁଗେ ଯୁଗେ ନାରୀ ନିର୍ଯ୍ୟାତିତ ହେଉଛି । ତ୍ରେତୟା ଯୁଗକୁ ଆସନ୍ତୁ ସତୀ ସୀତା ଏହାର ଉଦାହରଣ । ପୁରୁଷ ସନ୍ଦେହ କରିଛି । ଅଗ୍ନି ପରୀକ୍ଷା କରିବାକୁ ତାକୁ ବାଧ୍ୟ କରିଛି । ପୁରୁଷର କାମନା ପୈଶାଚିକ ନିଶା ତାକୁ ହରଣ କରିଛି । ନିନ୍ଦାଅପବାଦ ମିଳିଛି କିନ୍ତି ମଧ୍ୟ ଦୋଷ

ନକରି। ଶେଷରେ ସ୍ୱାମୀ ଯେ କି ତାକୁ ସବୁଠାରୁ ବେଶି ବିଶ୍ୱାସ କରିପାରିଥାଆନ୍ତେ ଓ ଯେ ସବୁଜାଣନ୍ତି, ସ୍ୱଂୟ ଭଗବାନ ସେ ବି ତାକୁ ତ୍ୟାଗ କରିଛନ୍ତି। ସୀତା ସେ ସମୟର ସବୁ ସନ୍ଦେହୀ ପୁରୁଷଙ୍କ ଦ୍ୱାରା ନିର୍ଯ୍ୟାତିତା ନାରୀର ଏକ ପ୍ରତିନିଧି ମାତ୍ର। ଏହା ପ୍ରମାଣ କରି ଦେଉଛି ପୁରୁଷ ଯେତେ ଯାହା ହେଲେ ବି ପିତଳ ମାଠିଆ। ଧୋଇଧାଇ ଦେଲେ ସଫା କିନ୍ତୁ ନାରୀ ଦେହରେ ଟିପାଏ କଳା ଲାଗିଲେ ତାହା ଆଉ ପୋଛି ହେବ ନାହିଁ। ପୁରୁଷର ଯେତେବେଳେ ଇଚ୍ଛା, ଯେଉଁ ସମୟରେ, ଯେଉଁ ବୟସରେ, ପରିସ୍ଥିତିରେ ଯେଉଁ ପ୍ରକାରର ନାରୀ ଗ୍ରହଣ କରିପାରେ। ସମାଜ ବାରଣ କରିବ ନାହିଁ। କିନ୍ତୁ ନାରୀ ପାଇଁ ଏକ ପତି ବ୍ରତହିଁ ଶ୍ରେଷ୍ଠ ଧର୍ମ। ଅପ୍ରାପ୍ତ ବୟସ୍କା ହୋଇ ବିଧବା ହେଉ ସ୍ୱାମୀ ଜିନିଷଟି କଣ ଜଣା ନ ଥାଉ ବା ଶାଶୂ ଘରେ କେବେ ବି ପାଦ ନ ଦେଇ ଶଙ୍ଖା ଭାଙ୍ଗିଗଲେ ସେ ସାରାଜୀବନ ଆକାଶ ଦୀପ ଜାଳିବ। ବିଧବାର ସବୁ ରୀତିନୀତି ପାଳିବା। ଏକାଦଶୀ ବ୍ରତ କରିବ। ତାହା ନ ହେଲେ ସମାଜ ଦୋଚାରୁଣୀ କହିବ, ଚରିତ୍ର ହୀନା ବୋଲି ଅଙ୍ଗୁଳି ଦେଖାଇବ। ଯୁଗ ପରେ ଯୁଗ ଏହି ନିୟମ ପାଳନ କରା ହୋଇ ଆସୁଛି। ଏ ଭିତରେ ସମୟ କେତେ ଆଗକୁ ମାଡି ଗଲାଣି କେତେକେତେ ପରିବର୍ତ୍ତନର ସୁଅ ଦ୍ୱାରା ପରିବେଶ ଚିନ୍ତା ଚେତନା ବଦଳି ଗଲାଣି କିନ୍ତୁ ନାରୀ ପ୍ରତି ଏହି ଯେଉଁ ଭାବଧାରା ଲକ୍ଷ୍ମଣର ତିନି ଗାର ସେମିତି ରହିଛି।

ଏ ଥର ଦ୍ୱାପର ଯୁଗକୁ ଆସନ୍ତୁ ବା ମହାଭାରତରେ ସଭାଭର୍ତ୍ତି ସମ୍ମାନସ୍ପଦା ଗୁରୁଜନଙ୍କ ଆଗରେ ଦ୍ରୌପଦୀଙ୍କର ବସ୍ତ୍ରହରଣ କଥା ମନେ ପକାନ୍ତୁ। ସେ ଯୁଗରେ ସ୍ୱଂୟ କୃଷ୍ଣ ଥାଇ ମଧ ଏହି ଲଜ୍ଜାଜନକ ପରିସ୍ଥିତିକୁ ସମୂଳେ ଏଡେଇ ଦେଇ ପାରି ନ ଥିଲେ। ପୁଣି ସମ୍ମାନର ନିନ୍ଦା ଭୟରେ ହିଁ କୁନ୍ତି କର୍ଣ୍ଣଙ୍କର ପରିଚୟ ଲୁଚାଇ ରଖିଥିଲେ।

ମୋଗଲ ରାଜତ୍ୱ ସମୟକୁ ଅନୁଧ୍ୟାନ କଲେ ନାରୀ ନିର୍ଯ୍ୟାତନାର କେତେ ପ୍ରକାରର ଉଦାହରଣ ମିଳିବ। ନାରୀ ଯେମିତି କୁକୁଡା ପାରା ପାଳିଲା ଭଳି ଏକ ଜୀବ। ତେଣୁ ସେ ସମୟରେ ସୃଷ୍ଟି ହୋଇଥିଲା ହାରେମ। ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ବିବାହିତ ହେଉ ବା ଅବିବାହିତା ହେଉ କୌଣସି ବାରଣ ନ ମାନି ସୁନ୍ଦରୀ ମାନଙ୍କୁ ଉଠାଇ ଅଣାଯାଇ ହାରେମର ଶୋଭା ବର୍ଦ୍ଧନ କରାଯାଉଥିଲା। କେତେ ସଂସାର ଉଜାଡ଼ି ଦିଆଯାଉଥିଲା। କେତେ ହତ୍ୟା ଅତ୍ୟାଚାର ସୁଅ ଛୁଟିଥିଲା କେବଳ ନାରୀ ମାଂସ ପାଇଁ। ସୁନ୍ଦରୀ ହେବାହିଁ ଥିଲା ତା ପାଇଁ ଅପରାଧ। ସେଥିଲାଗି ସାରା ଜୀବନ ହାରେମ ଭିତରେ ରହି କାମନାର ବହ୍ନି ପଡି ପଡି ଜୀବନ ଦୀପ ଲିଭି ଯାଉଥିଲା। ଯଦି କେହି ପ୍ରତିବାଦ କରୁଥିଲା ଅନ୍ଧକୂପ ଭିତରେ ସବୁଦିନ ପାଇଁ ତା ପ୍ରତିବାଦ ନିସ୍ତବ୍ଧ ହୋଇଯାଉଥିଲା। ସେତିକି ନୁହେଁ ତାର ପରିବାରର ସମସ୍ତ ଆତ୍ମୀୟ ସ୍ୱଜନଙ୍କୁ ମଧ ଏହି ଶାସ୍ତି ସ୍ଥାନ ବିଶେଷରେ ଭୋଗ କରିବାକୁ ପଡୁଥିଲା।

ତା ଛଡ଼ା ନାରୀର ସୌନ୍ଦର୍ଯ୍ୟକୁ ପ୍ରତିଭାକୁ ପର୍ଦ୍ଦାପ୍ରଥା ମାଧ୍ୟମରେ ଘୋଡ଼ାଇ ରଖାଯାଉଥିଲା। ସେମାନେ ସାମ୍ନାକୁ ଆସିବା ଅପରାଧ ଥିଲା। "According to Parasara a girl of eight is called Gauri, of nine Rohini and of ten Kanya beyond this she is Rajasuala" ଏବଂ ରଜସ୍ୱଳା ନାରୀକୁ ଯିଏ ବାହାହେବ ସେ ନର୍କରେ ପଡ଼ିବ, ଉଚ୍ଚ ବ୍ରାହ୍ମଣମାନଙ୍କ ସହ ବସିପାରିବ ନାହିଁ। ସେ ସବୁ ଠାରୁ ବଡ଼ ପାପୀ ବୋଲି ଗଣାହେବ। ଏହିଭଳି କେତେ କଟକଣା। ସତେକି ନାରୀ ଆଳୁପିଆଜ ଭଳି ନଦା ହେବାର ଗୋଟାଏ ଗୋଟାଏ ବସ୍ତା ଅଥବା ପୁରୁଷ ପାଇଁ ଏକ ଖେଳନା। ଉଠ କହିଲେ ଉଠ୍ ବସ କହିଲେ ବସ୍।

କେଉଁଠି ବାପଘରେ ପୁଅଝିଅର ପାତର ଅନ୍ତର ନୀତିର ଶିକାର ହେଉଛି ତ ସ୍ୱାମୀଘରେ ଗଧଭଳି ଖଟି ପେଟଭରି ମୁଠାଏ ଖାଇବାକୁ ପାଉନାହିଁ। ପ୍ରତିବାଦ କଲେ ମିଳିଛି ସ୍ୱାମୀଠାରୁ ପ୍ରହାର। ସ୍ୱାମୀ ମଦ୍ୟପ ହେଉ, ପରନାରୀ ଆସକ୍ତ ହେଉ, ଛୋଟା, କଣା ମୂର୍ଖ ବେକାର ଯାହା ହେଉନା କାହିଁକି ସେ ପତିପରମେଶ୍ୱର। ତାକୁ ମାନି ନେବାକୁ ପଡିବ। ଅନ୍ୟ ପକ୍ଷରେ ସ୍ତ୍ରୀ ଯେତେ ଶିକ୍ଷିତା, ରୋଜଗାର କ୍ଷମ, ଗୁଣବତୀ, ସୁନ୍ଦରୀ, ସହନଶୀଳା ଗୃହ କର୍ମରେ ନିପୁଣା ସେବାପରାୟଣା ହେଉନା କାହିଁକି ତହିଁରେ ଯାଏ ଆସେ ନାହିଁ। କେତେ ସୁନ୍ଦର ଭାବରେ ସମାଜପତି ମାନେ ଏ ପ୍ରଥାଟି ତିଆରି କରି ଦେଇଛନ୍ତି। ନାରୀ ସତେକି ଗୋଟାଏ ମାଛ, ତାକୁ ଯେ କୌଣସି ସମୟରେ ଜାଲମାଧ୍ୟମରେ ପାଣିରୁ ବାହାର କରାଯାଇପାରେ।

ଏ ତ ଗଲା ଅତୀତ ପରମ୍ପରା, କିଛି ଘଟଣା କାହାଣୀର ଉଦାହରଣ। କିନ୍ତୁ ବର୍ତ୍ତମାନ ସମୟରେ ନାରୀ ନିର୍ଯ୍ୟାତନା ଏକ ନୂଆ ରୂପ ନେଇଛି। ସମୟ ପରିବେଶ ସଭ୍ୟତା ବଦଳିବା ସହିତ ଯେମିତି ନୂଆ ଆବିଷ୍କାର ଘଟେ। ସେମିତି ନାରୀ ନିର୍ଯ୍ୟାତନାର ନୂଆ ସୂତ୍ର ଆବିଷ୍କାର କରିବାରେ ପୁରୁଷ ବୈଜ୍ଞାନିକ ମନର ଅନ୍ୱେଷାର ଶେଷ ନାହିଁ। ସବୁଠୁ ବିସ୍ମିତ କରେ ଯେ ଏହି ନିର୍ଯ୍ୟାତନା ନୂଆ ଯୋଜନାରେ ସ୍ୱୟଂ ନାରୀ ସାମିଲ୍ ହୋଇ ନାରୀ ନିର୍ଯ୍ୟାତନା କାରଣ ପାଲଟୁଛି। ଯୌତୁକ ନରମେଧ ଯଜ୍ଞରେ କେତେ ଆଉ ବଳି ପଡିବେ ନାରୀ? ଏହାର କ'ଣ ଶେଷ ନାହିଁ? ଏ ପ୍ରଶ୍ନ କାହାକୁ ପଚାରି ହେବ? କାହିଁକିନା ଯେ ଝିଅର ବାପ ସେବି ଅନ୍ୟ ପକ୍ଷରେ ବୋହୂର ଶ୍ୱଶୁର, ଯିଏ ମାଆ ସେବି ଶାଶୁ, ପୁଣି ଯିଏ ଭାଉଜ ସେ ଅନ୍ୟଘରେ ନଣନ୍ଦ। ଫୁଲ ଗୁଛିଲା ଭଳି ଏହି ସମ୍ପର୍କ ଗୁନ୍ଥା ହୋଇ ରହିଛି। ଯେତେ ପ୍ରକାରର ଇଲେକ୍‌ଟ୍ରୋନିକ୍ସ ଲାକ୍‌ଜୁରୀ ଜିନିଷର ଉଦ୍ଭାବନ ଚାଲିଛି ତାହା ଯୌତୁକର ଗୋଟାଏ ଗୋଟାଏ ଅଂଶ ପାଲଟିଯାଉଛି ଆଉ ଏଇ ଜିନିଷ ପାଇ ନାରୀକୁ ରୋଷ୍ଟ କରିଦିଆଯାଉଛି। ଅବିଶ୍ୱାସ ଲାଗୁଛି। ଘୃଣା ଆସୁଛି, ଦୟା ଆସୁଛି। କେମିତି ସମ୍ଭବ? ମଣିଷ ଏତେ ନିଷ୍ଠୁର! କିରୋସିନୀରେ ପୋଡି ମାରି ଦେଉଛନ୍ତି। ତଣ୍ଟିଚିପି ଟଙ୍ଗାଇ ଦେଉଛନ୍ତି ବା ପିଟି ପିଟି ମାରିଦେଉଛନ୍ତି ଯୌତୁକ ଲାଗି? ଧର୍ମ ନାହିଁ? ମାନବିକତା, ଆଇନ୍ କାନୁନ୍ କିଛିବି ନାହିଁ? ବାପଘରୁ ବୋହୂ କେବଳ ଆଣିବ ଯେ କୌଣସି ଉପାୟରେ। ବାପଭାଇ ଚୋରି କରନ୍ତୁ ବା ଡକାୟତି। ଏହି ଯୌତୁକର ସ୍ରୋତରେ ନିମ୍ନ ମଧ୍ୟବିତ୍ତ ଗରିବ ନୀରିହ ବାପା ମାଆହିଁ ପେଷି ହୋଇ ଯାଉଛନ୍ତି। ତାଙ୍କ ପାଇଁ ଆଇନ୍ ନାହିଁ, ଧର୍ମ ନାହିଁ, ନ୍ୟାୟ ନାହିଁ, ସମ୍ବେଦନା ନାହିଁ। ତେଣୁ ଝିଅ ଜନ୍ମ କରିବା ହିଁ ସେମାନଙ୍କ ଲାଗି ସବୁଠାରୁ ବଡ଼ ଅଭିଶାପ ଓ ଏହି ଭଳି ଭାବରେ ଝିଅର ଅପମୃତ୍ୟୁ ଶୁଣିବାକୁ ସେମାନେ ବାଧ୍ୟ। ତାହାହିଁ ଝିଅ ଜନ୍ମ କରିବାର ଅପରାଧର ଏକ ମାତ୍ର ପ୍ରାୟଶ୍ଚିତ୍ତ। ତାହାହେଲେ ସାଧାରଣ ଘରର ଝିଅମାନେ ବାହା ହେବେ ନାହିଁ? ଝିଅ ହେଲେ ତାହାର ତଣ୍ଟି ଚିପିଦେବେ? ପୁଣି ଲକ୍ଷପତି ଘରେ ଏହା ଯେ ଘଟୁନାହିଁ ତାହାକୁ ବି ଅସ୍ୱୀକାର କରାଯାଇ ପାରେନା। ଯାହାର ଯେତେ ତାହାର ସେତେ ଲୋଭ। ସେ ଜାଗାରେ ଲକ୍ଷ ଲକ୍ଷ ଟଙ୍କାର କାରବାର। ତେଣୁ ବଧୂ ଶିକାରର ଚିହ୍ନ ବର୍ଣ୍ଣ ପ୍ରମାଣ ମିଳେ ନାହିଁ। ତା ଛଡା ବୋହୂ ମରିଗଲେ ଆଉ ଥରେ ପୁଅକୁ ବାହା କରା ଯାଇପାରେ। ମୋଟା ଅଙ୍କର ଯୌତୁକ ଅଣା ଯାଇ ପାରେ। ଟଙ୍କାର ଅଭାବ ଅଛି ନା ଝିଅର? ଭାତ ଥିଲେ କେତେ କାଉ ଜୁଟିବେ।

ପୁଣି ଶିକ୍ଷିତା ହେଇ ଚାକିରି କରି ଯଦି ଏହାର ପ୍ରତିବାଦ କରେ ତା ହେଲେ ସେ ନିଜେ ଅବିବାହିତା ରହିଯିବ ଅଥବା ଛାଡପତ୍ର ପାଇଯିବ ଅଥବା ନିର୍ଯ୍ୟାତନା ଭିତରେ ହଠାତ୍

ତାର ଅସ୍ୱାଭାବିକ ମୃତ୍ୟୁ ଘଟିବ। ଜଣେ ଯଦି ପ୍ରତିବାଦ କରୁଛି କରୁଥାଉ ଝିଅକୁ ବୁଢ଼ୀ କରୁ। ଅନ୍ୟଜଣକ ଦେଖୁବ ମୋପାଖରେ ବ୍ଲାକମୋନି କି ଏମିତି କିଛି ଅଭାବ ନାହିଁ ମୁଁ କାହିଁକି ଉଚ୍ଚ ଚାକିରିଆ ଜ୍ୱାଇଁଟେ ଫଳ ମାଂସ କିଣି ଆଣିବା ଭଳି ମୋଟା ଅଙ୍କରେ କିଣି ଆଣିବି ନାହିଁ? ମୋଝିଅ କେଉଁ ଦୁଃଖରେ ବୁଢ଼ୀ ହେବ, ବୟସ ଗଡ଼ାଇଦେବ, ବାସ୍ ଏହିଭଳି ବିଭିନ୍ନ ପ୍ରକାର ଯୁକ୍ତି। ଚିନ୍ତାଧାରାଭିତରେ ଯୌତୁକ ପାଇଁ ବଧୂହତ୍ୟା ତୀବ୍ର ହେବାରେ ଲାଗିଛି। ଶିକ୍ଷିତା ଅଶିକ୍ଷିତା ଧନୀ ନିର୍ଦ୍ଧନ ସମସ୍ତେ ସବୁ ସ୍ତରରେ ଲୋଭର ଶିକାର ହେଉଛନ୍ତି। ଯୌତୁକ ଦାବୀ ବିବାହର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ପାଲଟି ଯାଉଛି। ଏହା ବ୍ୟତିରେକେ ବର ବେଦୀରୁ ଉଠି ଯାଉଛି। ବିବାହିତା ସ୍ତ୍ରୀକୁ ନିର୍ଯ୍ୟାତନା ଦେଉଛି। ଖୁନ୍ କରୁଛି। ପୁଣି ବର୍ତ୍ତମାନ ସମୟରେ ଏହା ଏଭଳି ଚଳଣିରେ ପରିଣତ ହେଲାଣି ଯେ ଯଦି କେହି ଆଦର୍ଶବାଦୀ ଯୁବକ ବା ତାଙ୍କ ଘରଲୋକ କହନ୍ତି ଯେ ସେମାନଙ୍କର କୌଣସି ଜିନିଷ ଦାବୀ ନାହିଁ ସେମାନେ ଭଲଝିଅଟିଏ ଚାହାନ୍ତି ତାହାଲେ କନ୍ୟାପିତା ଭାବୁଛନ୍ତି ପୁଅର ନିଶ୍ଚୟ କିଛି ଖୁଣ ଅଛି ସେଇଥିଲାଗି ଯୌତୁକ ମାଗୁନାହିଁ। ଏଭଳି ଭାବରେ ମିଛରେ ବି ସନ୍ଦେହରେ ପଡୁଛନ୍ତି। ଯୌତୁକ ନେଲେ ଦୋଷ ପୁଣି ନ ନେଲେ।

ବେଳେବେଳେ ପ୍ରଶ୍ନ ଉଠେ ନିର୍ଯ୍ୟାତନା ସହି ପୋଡ଼ା ହେବା ପର୍ଯ୍ୟନ୍ତ ବା ମାରିଦେବା ପର୍ଯ୍ୟନ୍ତ ବୋହୂଟି ଶାଶୁଘରେ ରହୁଛି କାହିଁକି? ଏହାର ବି ଅନେକ କାରଣ ହୋଇପାରେ। ହୁଏତ ବାପଘରର ଆର୍ଥିକ ଅବସ୍ଥା ଭଲ ନଥିବ। ତେଣୁ ବାପାମାଙ୍କ ପାଖକୁ ଝିଅଟି ଫେରିଯାଇ ବୋଝ ହେବାକୁ ଚାହୁଁ ନଥିବ। ଅଥବା ଆର୍ଥିକ ଅବସ୍ଥା ଭଲ ଥିଲେବି ଭାଇ ଭାଉଜ ଘରେ ରହିବା ସମ୍ଭବ ହେବ ନାହିଁ। ମହରଗରୁ ଯାଇ କାନ୍ତାରରେ ପଡିବା ଅବସ୍ଥା ହେବ। ଅଥବା ଝିଅଟି ଫେରିଗଲେ ବାପଘରେ ଲୋକ ବୁଝାଇ ସୁଝାଇ ଆଣି ଛାଡି ଦେଉ ଥିବେ। ଝିଅ ନିର୍ଯ୍ୟାତିତା ହେବାର ଜାଣିଲେ ହେଁ ବୃଦ୍ଧ ବାପା ମା ନିରୂପାୟ, ଭାଇ ଭାଉଜ ନିଜର ଦୁଃଖ ଅବସ୍ଥା ଯୋଗୁଁ ତାକୁ ସାରାଜୀବନ ଫେରାଇ ଆଣିବାର ସାହସ କରୁନଥିବେ। ବା କେସ୍ ଲଢ଼ିବା ଲାଗି ସେମିତି ଶକ୍ତି ସାମର୍ଥ୍ୟ ନ ଥିବ। ଝିଅଟି ଚାକିରି କରୁନଥିଲେ, ପାଠ ପଢ଼ି ନଥିଲେ ଏ ପନ୍ଥତିଟି ବି ଅକାମି ହୋଇଯାଏ। ପୁଣି ସହନଶୀଳତା ନାରୀର ଧର୍ମ ବୋଲି କହି ବାପଘର ଶୁଆକୁ ଘୋଷଇ ଶିଖାଇଲା ଭଳି ଝିଅଟିକୁ ଶିକ୍ଷା ଦେଇ ଥାଆନ୍ତି। ସେହି ଅନୁସାରେ ସମୟ ମନକୁ ମନ ସବୁ ସମ୍ଭାଳି ନେବ। ଗୃହସ୍ଥୀ ବଢ଼ିଲେ କାଳେ ମନ ପରିବର୍ତ୍ତନ ହେବ ଅଥବା ଆସ୍ତେ ଆସ୍ତେ ବାପଭାଇ ଶ୍ୱଶୁର ଘରର ମାଗୁଣି ପୂରଣ କରିବେ ଏଇ ଆଶାରେ ଏ ସ୍ୱପ୍ନରେ ହୁଏତ ଝିଅଟି ସବୁ ପ୍ରକାରର ନିର୍ଯ୍ୟାତନା ସହି ନେବାର ସଂକଳ୍ପ କରିଥାଏ। କିନ୍ତୁ ତା ସ୍ୱପ୍ନର ସକାଳ ହେବା ଆଗରୁ ସେ ନିଜେ ଜୀବନର ସକାଳ ହଜାଇ ଦେଇଥାଏ। ସବୁଦିନ ପାଇଁ ତା ହେଲେ ଯୌତୁକ ଲାଗି ଏଇ ନାରୀ ଶିକାର କ'ଣ ଏକ ପରମ୍ପରାରେ ପରିଣତ ହୋଇ ଚାଲିଥିବ? ଏହାର ସମାଧାନ ନାହିଁ? ଆଜିକାଲି ସମ୍ବାଦ ପତ୍ରର ଶୀର୍ଷକରେ ଯୌତୁକ ଲାଗି ବଧୂ ହତ୍ୟା ଏକ ସାଧାରଣ ଘଟଣାରେ ପରିଣତ ହୋଇଛି। ଜନ ସାଧାରଣଙ୍କ ମଧ୍ୟରେ ଏଥିଲାଗି କୌଣସି ଆଲୋଡନ କି ଉତ୍ତେଜନା ନାହିଁ। ଆଉନ୍ ଆଖିରେ ଏ ସବୁ ଦେହସୁହା ପାଲଟି ଗଲାଣି। ଅନେକତ ଫଲ୍‌ସ କେସ୍‌ରେ ପରିଣତ ହେଉଛି। ବିଚରା ବାପା ମା ଙ୍କର ଲୁହ ଝରାଇବା ଛଡ଼ା ଉପାୟ ନାହିଁ। ଏପଟେ ବୋହୂର ଚିତା ଲିଭୁ ନ ଲିଭୁଣୁ କନ୍ୟା ପିତା ସବୁ ଜାଣିବି ଯୌତୁକ ପସରା ଧରି ସେହି ହତ୍ୟାକାରୀକୁ ଜ୍ୱାଇଁ କରିବା ପାଇଁ ଧାଡିବାନ୍ଧି ସାରିଲେଣି। ଦୋଷୀ ନିର୍ଦ୍ଦୋଷରେ ଖଲାସ ହୋଇ ସାରିଲାଣି। ପୁଣି କେଉଠି ଝିଅକୁ ସୁଖୀ

କରିବା ଲାଗି ବାପା ମାଆ ସର୍ବସ୍ୱାନ୍ତ ହୋଇ ସାରିଲେଣି। ଯୋଉଁ ଭଳି ଝିଅର ଅଧିକ ଯୋଗ୍ୟତା ସମାନ କି ବେଶୀ ଶିକ୍ଷାଥିବା ସତ୍ତ୍ୱେ ଝିଅକୁ ଭଲରେ ରଖିବା ଲାଗି ବାପାମା ଯେକୌଣସି ଉପାୟରେ ଶାଶୁ ଘରର ସମସ୍ତ ଦାବୀ ପୂରଣ କରି ଦେଲେଣି।

ନାରୀ ନିର୍ଯ୍ୟାତନାର ଆଉ ଏକ ଉଦାହରଣ ହେଲା ପାଶବିକ ଅତ୍ୟାଚାର। ଦଶ ପନ୍ଦର ବର୍ଷତଳେ ଏଭଳି ଘଟଣାଟିଏ ଶୁଣା ଯାଉନଥିଲା। ଘଟିବା ତ ଦୂରର କଥା, ଅଥଚ ଆଜି ନିର୍ଭୟରେ ଝିଅଟିଏ ବୋହୂଟିଏ ବା ବୃଦ୍ଧାଟିଏ ଘରୁ ବାହାରି ପାରୁ ନାହିଁ। ନିଜକୁ ନିରାପଦ ମନେ କରୁନାହିଁ। ରାସ୍ତା ଘାଟରୁ ଯେ କୌଣସି ବୟସର ପୁରୁଷ ଯେ କୌଣସି ବୟସର ନାରୀକୁ ଟେକି ନେଇ ଯାଉଛି। କୁକୁର ବିଲେଇ ଠାରୁ ମଣିଷର ଆଉ କିଛି ପାର୍ଥକ୍ୟ ନାହିଁ। ଯୌତୁକ ଜନିତ ବଧୂ ହତ୍ୟା ଭଳି ଏହାର ମଧ୍ୟ କୌଣସି ପ୍ରମାଣ ନାହିଁ। ଦୋଷୀ ଉପଯୁକ୍ତ ପ୍ରମାଣ ଅଭାବରୁ ଖଲାସ ହୋଇ ଯାଉଛି। ପରବର୍ତ୍ତୀ ସମୟରେ ଝିଅଟି ଆତ୍ମହତ୍ୟା କରୁଛି। ଅଥବା ସାରାଜୀବନ କଳଙ୍କିନୀର ଆଖ୍ୟା ନେଇ ସମାଜ ଦ୍ୱାରା ଦୋଷ ନ ଥାଇ ମଧ୍ୟ ନିର୍ଯ୍ୟାତିତା ହେଉଛି, ଏଭଳି ଅସହାୟ ନାରୀକୁ ପତ୍ନୀ ହିସାବରେ ଗ୍ରହଣ କରିବା ଲାଗି ଆମ ଯୁବକ ସମାଜ ପ୍ରସ୍ତୁତ ହେଲେଣି କି? ଏହିଭଳି ଝିଅମାନଙ୍କ ପାଇଁ ଅନାଥାଶ୍ରମ ଆମ ଦେଶରେ ସେତେ ବେଶି ଥିଲାଭଳି ମୋର ମନେ ହେଉନାହିଁ।

ସବୁଠାରୁ ଆଶ୍ଚର୍ଯ୍ୟ ଓ ଦୁଃଖର ବିଷୟ ହେଲା ନାରୀ ଯେତେ ଶିକ୍ଷିତା, ଉଚ୍ଚପଦବୀର ଅଧିକାରୀଣୀ, ସଂଗ୍ରାମୀ ହୋଇ ଚାଲିଛି ସେତେ ଅଧିକ ପରିମାଣରେ ତାର ନିର୍ଯ୍ୟାତନା ବଢ଼ି ଚାଲିଛି। ନାରୀମାନଙ୍କର ନିର୍ଯ୍ୟାତନା ଯେତେ ପରିମାଣରେ ବଢ଼ି ଚାଲିଛି, ତା ଠାରୁ ଅଧିକ ପରିମାଣରେ ଦେଶର ସହର ବଜାର ଗାଁ ଗହଳିରେ ଖୋଲା ଚାଲିଛି। ବିଉଟି ପାର୍ଲରମାନ ନିଜକୁ ସଜାଇବା ଯେ ଏକ ଗର୍ହିତ କାର୍ଯ୍ୟ ତାହା ମୁଁ କହୁନାହିଁ। ଏହି ଘଡ଼ିସନ୍ଧିବେଳା ଯେତେ ବେଳେ କି ନାରୀ ମାନଙ୍କର ସଂଗଠନ ଦରକାର, ପ୍ରତିରୋଧ ବିପ୍ଳବ ଦରକାର, ନିର୍ଯ୍ୟାତିତା ବଧୂକୁ ହତ୍ୟାର ବ୍ୟୁହଭିତରୁ ଉଦ୍ଧାର କରିବା ଦରକାର ସେତିକି ବେଳେ ଆମଦେଶର ପ୍ରତିଷ୍ଠିତ, ରୁଚିଶୀଳା, ଉଚ୍ଚଶିକ୍ଷିତା ନାରୀମାନେ ହସ୍ତର ଯତ୍ନ, କେଶର ଯତ୍ନ, ପାଦର ଯତ୍ନ, ଚକ୍ଷୁର ଯତ୍ନରେ ବ୍ୟସ୍ତ ରହୁଛନ୍ତି। ମ୍ୟାକ୍‌ଅପ, ଗହଣା, ଶାଢ଼ୀ ଭିତରେ ନିଜକୁ ସୌନ୍ଦର୍ଯ୍ୟବତୀ କରି ପୁରୁଷ ଏବଂ ନାରୀ ଉଭୟ ଆଖିରେ ଆକର୍ଷଣୀୟା ହୋଇ ଉଠିବା ଲାଗି ପ୍ରତିଯୋଗିତା କରୁଛନ୍ତି। ସମାଜର ଏହି ଅଘଟଣ ପ୍ରତି ସେମାନଙ୍କ ମନରେ କ'ଣ ସତରେ କିଛି ପ୍ରତିକ୍ରିୟା ନାହିଁ? ପ୍ରତିରୋଧ ନାହିଁ? Pen is mighter than sword ନ୍ୟାୟରେ ଆମର ସମାଜରେ ଭଉଣୀମାନେ ଲେଖିକା ମାନେ କିଛି ତ ପଦକ୍ଷେପ ନେଇ ପାରନ୍ତେ। ହଉ ହେଲା କିଏ ସବୁ ପଢ଼ୁଛି। ତେବେ ସମାଜର ପ୍ରତିଷ୍ଠିତ ନାରୀ ମାନେ ଏଥିପାଇଁ କିଛି ସାମାଜିକ ଆନ୍ଦୋଳନ ତ ସୃଷ୍ଟି କରିପାରନ୍ତେ। ଏକତ୍ରିତ ହୋଇ କ'ଣ ସମାଧାନ ଚିନ୍ତା କରିହୁଅନ୍ତା ନାହିଁ। ଆମ ଦେଶରେ ଅନେକ ଧନୀ ଶିକ୍ଷିତ ନାରୀ ଅଛନ୍ତି, ଯେଉଁମାନଙ୍କ ପାଖରେ ଅପର୍ଯ୍ୟାପ୍ତ ପଇସା ଅଛି ଅଥଚ କିଛି କରିବାର ଆଗ୍ରହ କି ସ୍ପୃହା ନାହିଁ। ଯେମିତି ଯେଉଁମାନଙ୍କର ଆଗ୍ରହ ଅଛି, କିଛି କରିପାରିବାର ଶକ୍ତି ଅଛି ସେମାନଙ୍କ ହାତରେ ପଇସା ନାହିଁ। ଏହି ଦୁଇ ପ୍ରକାର ଗୋଷ୍ଠୀ ତ ମିଳିତ ହୋଇ ପାରନ୍ତେ, ସହଯୋଗିତା କରି ଏକ ମହତ କାମକୁ କାନ୍ଧରେ ଉଠାଇ ପାରନ୍ତେ।

ଆମ ଦେଶରେ ଛତୁ ଫୁଟିଲା ଭଳି ଏବେ ଇଂଲିଶ୍ ମିଡିୟମ୍ ସ୍କୁଲ୍। ଏ ବ୍ୟାଧି ଆସ୍ତେ ଆସ୍ତେ ସାରା ଓଡିଶାରେ ବ୍ୟାପିବାକୁ ଆରମ୍ଭ କରିଛି। ଏସବୁ ସ୍କୁଲ ଅଧିକ ପରିମାଣରେ ଘରୋଇ

ଉଦ୍ୟୋଗରେ ବା ସଂସ୍ଥା ଦ୍ୱାରା ପରିଚାଳିତ। ଯଦି ଘରୋଇ ଉଦ୍ୟୋଗରେ ଆମେ ବିଦେଶୀ ଭାଷାର ଶିକ୍ଷାନୁଷ୍ଠାନ ମାନ ଖୋଲିପାରୁ ତା ହେଲେ ଘରୋଇ ଉଦ୍ୟମରେ ଆଶ୍ରୟ ହୀନା ଏହି ନିର୍ଯ୍ୟାତିତା ନାରୀ ମାନଙ୍କ ପାଇଁ ଆଶ୍ରମମାନ କାହିଁକି ଖୋଲି ପାରିବୁ ନାହିଁ? କାହିଁକି ଏଥିପ୍ରତି ଆଗ୍ରହ ହେଉ ନାହିଁ ଆମ୍ଭମାନଙ୍କର? ନିର୍ଯ୍ୟାତିତା ନାରୀ ମାନଙ୍କ ଆଶ୍ରୟ ସ୍ଥଳ ପାଇଁ ଓଡ଼ିଶାରେ ଯଦି ଧନୀ ଶିକ୍ଷିତା ନାରୀନେତ୍ରୀ, ସମାଜ ସେବିକା ମାନେ ଏକତ୍ରିତ ହୁଅନ୍ତେ ଓ ଏଭଳି ଏକ ମହତ କାମ ହାତକୁ ନିଅନ୍ତେ ଓ ପରୋକ୍ଷରେ ନିର୍ଯ୍ୟାତିତା ଭଉଣୀ ମାନଙ୍କୁ ଉଦ୍ଧାର କରିବାରେ ସହାୟତା କରନ୍ତେ ତାହା ହେଲେ ବୋଧହୁଏ ନିଶ୍ଚୟ ସରକାର ଆଗେଇ ଆସନ୍ତେ। ପୁଂଜି ଯୋଗାଇ ଦେବାଲାଗି କି ଆର୍ଥିକ ଅନୁଦାନ ମିଳିବା ଲାଗି ସରକାରଙ୍କୁ ମଧ୍ୟ ଆବେଦନ କରାଯାଇ ପାରନ୍ତା। ତାଛଡା ନାରୀ ଶିକ୍ଷାର ବୃଦ୍ଧି, ବିଭିନ୍ନ ପ୍ରଶିକ୍ଷଣ ଶିକ୍ଷା ଦେବା ସହିତ ନିଜ ଅଧିକାର ସାବ୍ୟସ୍ତ କରିବା ପାଇଁ ଯଦି ଠାଏଁ ଠାଏଁ କେନ୍ଦ୍ରମାନ ପ୍ରତିଷ୍ଠିତ କରାଯାଇ ପାରନ୍ତା ଓ ନାରୀ ନେତ୍ରୀମାନେ ଏଦିଗରେ ଉଦାର ମନୋଭାବ ପୋଷଣ କରି ଆଗେଇ ଆସନ୍ତେ, ଜନଜାଗରଣ ପାଇଁ ବଳିଷ୍ଠ ଲେଖାସବୁ ପ୍ରକାଶ ପାଆନ୍ତା, ନାରୀ ନିର୍ଯ୍ୟାତନା ଦେଉଥିବା ଅତ୍ୟାଚାରୀ ମାନଙ୍କୁ ଉପଯୁକ୍ତ ଶାସ୍ତି ମିଳନ୍ତା, କନ୍ୟା ଓ କନ୍ୟାପିତାମାନେ ସହଯୋଗ ମନୋଭାବ ଦେଖାନ୍ତେ ଓ କିଛି ଆଦର୍ଶବାଦୀ ଯୁବକ, ବରପିତାମାତାମାନେ ଏ ଦିଗରେ ଚିନ୍ତା କରନ୍ତେ। ତା'ହେଲେ ହୁଏତ ଏହି ଜଘନ୍ୟକର ଘୃଣ୍ୟ ଘଟଣା ରୋକା ଯାଇପାରନ୍ତା। ହେଲେ ଏ ସବୁ ସତରେ କ'ଣ ସମ୍ଭବ?



# ଘରୋଇ ନିର୍ଯ୍ୟାତନାରେ ଶିକାର

ଆମେ ସମସ୍ତେ କେବଳ ସାମାଜିକ ନିର୍ଯ୍ୟାତନାରେ ଶିକାର ହେଉଥିବା ନାରୀମାନଙ୍କ କଥା ଚିନ୍ତା କରିଥାଉ। ଏଇ ଯେମିତି ଯୌତୁକ ଅଥବା ପାଶବିକ ଅତ୍ୟାଚାର ପ୍ରବୃତ୍ତିର ଶିକାର ହେଉଥିବା ନାରୀ। କିନ୍ତୁ ଆମର ଘରମାନଙ୍କରେ ଯେ ନାରୀ ଶୋଷିତ ହେଉଛି, ନିର୍ଯ୍ୟାତିତା ହେଉଛି ଏକଥା ଆମେ ଭୁଲିଯାଉ। ଆମେ କେବଳ ତଲାକ୍ ବା ଛାଡ଼ପତ୍ର, ଗାଦିରିଆ ଘରଣୀର ସମସ୍ୟା ଅଥବା ସ୍ୱାମୀ ଦ୍ୱାରା କଷ୍ଟ ପାଉଥିବା ମହିଳାମାନଙ୍କୁ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟାକରୁ। ଏହି ସାମାଜିକ ନିର୍ଯ୍ୟାତନାରେ ଶିକାର ହେଉଥିବା ନାରୀମାନଙ୍କର କଥା ହିଁ ବିଭିନ୍ନ ସମ୍ବାଦପତ୍ର, ପତ୍ରପତ୍ରିକାରେ ଆଲୋଚନା କରାଯାଇ ଥାଏ। ଏଥି ପାଇଁ ମଧ୍ୟ ଅନେକ ମହିଳାସଂଘ ବା ନାରୀକଲ୍ୟାଣ ସମିତି ପ୍ରତିଷ୍ଠା କରାଯାଇଛି। ଅନେକ ନେତ୍ରୀ ରହିଛନ୍ତି। ସ୍ଲୋଗାନ୍ ଦେବାକୁ ଧର୍ମଘଟ କରିବାକୁ ମଧ୍ୟ ବିଭିନ୍ନ ସଂସ୍ଥା ରହିଛି। ଏଠି କିନ୍ତୁ ଘରୋଇ ନିର୍ଯ୍ୟାତନାରେ ପେଷି ହୋଇ ଯାଉଥିବା ନାରୀଟି ବାଦ୍ ପଡ଼ିଯାଏ। ଘରୋଇ ବା ବ୍ୟକ୍ତିଗତ ବ୍ୟାପାର କହି ଏହାକୁ ଛାଡ଼ି ଦିଆ ଯାଇଥାଏ। ଏଭଳି ହଜାର ହଜାର ନାରୀ ଘରୋଇ ନିର୍ଯ୍ୟାତନାର ଶିକାର ହେଉଛନ୍ତି, ମୃତ୍ୟୁବରଣ କରୁଛନ୍ତି କିମ୍ବା ବାଧ୍ୟ ହୋଇ ଆତ୍ମହତ୍ୟା କରୁଛନ୍ତି ଅଥବା ଘର କୋଣରେ ଲୁହ ଗଡାଉଛନ୍ତି। ଏଥି ପାଇଁ ଅନେକ ମୂଲ୍ୟବାନ ଜୀବନ ମଧ୍ୟ ନଷ୍ଟ ହୋଇ ଯାଉଛି। ଏ ସଂପର୍କରେ କେତୋଟି ଉଦାହରଣ ଦିଆ ଯାଇପାରେ।

ରମା ଶ୍ରୀକାନ୍ତକୁ ଠିକ୍ କରିଥିଲା ବାହା ହେବାକୁ। ଶ୍ରୀକାନ୍ତ ଓ ତା' ଭିତରେ ପ୍ରେମର ସଂପର୍କ ଅନେକ ଦିନରୁ। କିନ୍ତୁ ଜାତି ଭିନ୍ନ। ରମା ବ୍ରାହ୍ମଣ ଝିଅ କିନ୍ତୁ ଶ୍ରୀକାନ୍ତ ଯୋଗୀ ଜାତିର। ରମା ଘରେ ରାଜିହେଲେ ନାହିଁ। ରମାକୁ ଜବରଦସ୍ତ ଘରଲୋକେ ଅନ୍ୟଲୋକକୁ ବାହା କରାଇ ଦେଲେ ଓ ଶ୍ରୀକାନ୍ତ ସବୁଦିନ ପାଇଁ ଅବିବାହିତ ରହିଗଲା। ଏ ଆଡ଼େ ରମା ତା' ସ୍ୱାମୀ ସହିତ ଆଦୌ ଆଡ଼ଜଷ୍ଟ କରି ପାରିଲା ନାହିଁ। ରମାର ସ୍ୱାମୀ ଯେତେବେଳେ ଶ୍ରୀକାନ୍ତ ବିଷୟରେ ଜାଣିଲା ତା'ର ରମା ପ୍ରତି ଅବାନ୍ତର ସନ୍ଦେହ ହେଲା। ରମା ଉପରେ ନିର୍ଯ୍ୟାତନା ଆରମ୍ଭ ହେଲା ଓ ରାତିରେ ନଫେରିବା ତା' ସ୍ୱାମୀର ଅଭ୍ୟାସ ହୋଇଗଲା। ଶାଶୁଘରର ଅନ୍ୟ ସଦସ୍ୟମାନେ ମଧ୍ୟ ଟିକିଏ ଟିକିଏ କଥାରେ ଖୁଣ୍ଟା ଦେବାକୁ ପଛାଇଲେ ନାହିଁ। ବିଚାରୀ ରମା ତା'ର ବାପାମାଙ୍କ ଜିଦ୍ ଯୋଗୁଁ ଏଭଳି ପରିସ୍ଥିତିର ଶିକାର ହେଲା। ସହିବାର ଗୋଟେ ସୀମା ଅଛି। ଶେଷରେ ରମା ଆତ୍ମହତ୍ୟା କରିବାକୁ ଚେଷ୍ଟାକଲା କିନ୍ତୁ ଏଡ଼େ ଦୁର୍ଭାଗା ଯେ ବଞ୍ଚିଗଲା। ପରେ ପରେ ତା'ର ମସ୍ତିଷ ବିକୃତି ଘଟିଲା। ତାହାଲେ ରମାର ଜୀବନ ନଷ୍ଟ ପାଇଁ ଆମେ କାହାକୁ ଦାୟୀ କରିବା? ଏଭଳି ଅନେକ ରମା ଅଛନ୍ତି ଆମ ଘରମାନଙ୍କରେ ଯେଉଁ ମାନଙ୍କର ପରିବାର, ଜାତି ପ୍ରଥାରେ ବିଶ୍ୱାସୀ। ଧନୀନିର୍ଦ୍ଧନର ମାପକାଠି ନେଇ ଏମାନଙ୍କ ଜୀବନ ନଷ୍ଟ କରିଦିଅନ୍ତି।

ଏଥର ଆସନ୍ତୁ ଗୀତାର ଜୀବନୀ ଶୁଣିବା। ଗୀତା ଖୁବ୍ ଭଲ ପାଠପଢୁଥିଲା। ତା'ର ଇଚ୍ଛାଥିଲା ବହୁତ ପାଠ ପଢ଼ିବାକୁ। କିନ୍ତୁ ଘରଲୋକେ ମେଟ୍ରିକ୍ ପରେ ତାକୁ ବାଧ୍ୟ କରି ବାହା କରାଇଦେଲେ। ପରେ ପରେ ସେ ମଧ୍ୟ ଅଳ୍ପ ବୟସରେ ତିନୋଟି ଛୁଆର ମା' ହୋଇଗଲା। ସ୍ୱାମୀ ଚାଷ ବାସ କରନ୍ତି ଏମିତି। ଦୁର୍ଭାଗ୍ୟ ଦେଖ ଆସୁଆସୁ ସାଇକେଲରେ, ଟ୍ରକ୍ ମୁହଁରେ ପଡ଼ି ସ୍ୱାମୀ ତା'ର ଆଖିବୁଜିଲେ। ଗୀତା କିନ୍ତୁ ଶାଶୁଘରେ ଅଲକ୍ଷଣୀ ଆଖ୍ୟା ପାଇଲା। ଦିଅର ସମ୍ପତ୍ତି ଲୋଭରେ ଘରୁ ବାହାର କରିଦେଲା। ଶାଶୁ, ନଣନ୍ଦ ମାନେ ମଧ୍ୟ ଗୀତାକୁ ତଡ଼ିଦେଲେ। ଗୀତା ବାଧ୍ୟ ହୋଇ ପିଲା ତିନୋଟିକୁ ଧରି ବାପଘରକୁ ଆଶ୍ରା କଲା। ପଇସା ଥିଲେ ବା ମକଦ୍ଦମା କରନ୍ତା। ବାପା ଅବସର ନେଇଛନ୍ତି। ଭାଇମାନେ କେସ୍ କରିବାକୁ ରାଜି ହେଲେ ନାହିଁ। ଚାକିରି ପାଇଁ କିଛିଦିନ ଘୁରିବୁଲିଲା ଗୀତା। ଏମ୍.ଏ. ପାଶ୍ କରିତ ପିଲା ଘୁରିବୁଲୁଛନ୍ତି, ଲାଞ୍ଚଦେବା ନେବା ଯୁଗରେ କପର୍ଦ୍ଦକହୀନା ସାମାନ୍ୟ ମେଟ୍ରିକ୍ ପାଶ୍ କରିଥିବା ଅନାଥିନୀ ଗୀତାକୁ ପଚାରେ କିଏ? ଗୀତାର ଏ ଅନ୍ଧକାର ମୟ ଭବିଷ୍ୟତ ପାଇଁ କାହାକୁ ଦାୟୀ କରାଯାଇପାରେ? ଭାଇଭାଉଜଙ୍କ ରାଜତ୍ୱରେ ଗୀତା ଶେଷରେ ଚାକରାଣୀ ସାଜିଲା। ଡୋକେ ପିଇ କେମିତି ପିଲାଙ୍କୁ ବଞ୍ଚାଇ ରଖିବ ହିଁ ତା'ର ଚିନ୍ତା। ସେଠି ପାଠ ପଢ଼ାକୁ ପଚାରେ କିଏ। ଅତଏବ୍ ତା' ପିଲାମାନଙ୍କର ଭବିଷ୍ୟତ ମଧ୍ୟ ଅନ୍ଧକାରମୟ। ବାପାମା'ଙ୍କର ସାମାନ୍ୟ ଖିଆଲ ଯେ କେତେ କେତେ ଗୀତାଙ୍କର ସର୍ବନାଶ କରିପାରେ ଏହା ତା'ର ଏକ ଦୃଷ୍ଟାନ୍ତ।

ଏଥର ଆଉ ଗୋଟେ ଝିଅ ଉଷା କଥା କହୁଛି। ଉଷାର ସ୍ୱାମୀ ବଡ଼ ଅଫିସର। ଶିକ୍ଷିତ, ଉଚ୍ଚପଦବୀ ଯୋଗୁଁ ଉଷା ଘରେ ସମସ୍ତେ ଖୁସୀ। ବାହାଘର ପରେ ଜଣାପଡ଼ିଲା ଜ୍ୱାଇଁର ସ୍ୱଭାବ, ଚରିତ୍ର ଆଦୌ ଭଲ ନୁହେଁ। ମଦ ପିଅନ୍ତି, ଅନେକ କଲ୍‌ଗାର୍ଲଙ୍କ ସହିତ ତାଙ୍କର ସଂପର୍କ। ସ୍ତ୍ରୀ ତାଙ୍କ ପାଇଁ କେବଳ ଗୋଟାଏ ଖେଳନା, ଖେଳନାକୁ ଯେ କୌଣସି ସମୟରେ ବଦଳ କରାଯାଇପାରେ। ସ୍ୱାମୀ ମଦପିଇ ରାତିର ଶେଷ ପହରକୁ ଫେରନ୍ତି। ଉଷା ଯଦି କିଛି କହିଲା ମାଡ଼ ଖାଇଲା। ଉଷା ମଧ୍ୟ ଏତେଟା ସ୍ମାର୍ଟ ନୁହେଁ। ସ୍ୱାମୀଙ୍କର ଦୁର୍ଗୁଣ ଘରେ କହିବାକୁ ତାକୁ ସଙ୍କୋଚ ଲାଗିଲା। ହେଲେ ଶାଇପଡ଼ିଶାଙ୍କଠାରୁ ବେଳେ ବେଳେ ଅନେକ କଥା ତାକୁ ଶୁଣିବାକୁ ପଡୁଥିଲା। ବେଳେ ବେଳେ ଲଜ୍ୟାରେ ତା'ର ମୁହଁ ପୋଡି ଯାଉଥାଏ। ସ୍ୱାମୀଙ୍କର ବିଭିନ୍ନ ବାନ୍ଧବୀ ଆସିଲେ ଚର୍ଚ୍ଚା କରିବାକୁ ସେ ବାଧ୍ୟ ହେଉଥିଲା। ନାକଲେ ସ୍ୱାମୀ ଚମଡ଼ା ଉଠାଇବାକୁ ପଛାଉ ନ ଥିଲା। କେବେ କେବେ ମାଡ଼ ଖାଇଲାବେଳେ ସେ ଚିତ୍କାର କରୁଥିଲା ସାହାଯ ପାଇଁ। ପଡ଼ିଶାମାନେ ଶୁଣିଲେ ବି ନୀରବ ରହୁଥିଲେ। କାହିଁକିନା ଏଇଟା ତାଙ୍କର ସ୍ୱାମୀସ୍ତ୍ରୀଙ୍କର ଘରୋଇ ବ୍ୟାପାର। ସେଥିରେ ନାକ ଗଳେଇବାକାର କ'ଣ ଅଛି। ସ୍ୱାମୀ ତାଙ୍କର ସ୍ତ୍ରୀକୁ ଯଦି ପିଟିପିଟି ମଧ୍ୟ ମାରିଦେବେ ସେଥିରେ ତାଙ୍କର ଯାଏ କେତେ ଆସେ କେତେ। ଉଷା ଶେଷରେ ଜୀବନର ଚରମ ନିଷ୍ପତି ବାଛିନେଲା। ଏ ବୟସରେ ବାପଘରର ବୋଝ ହେବା ଅପେକ୍ଷା ଅଥବା ସ୍ୱାମୀଙ୍କର ଏଭଳି ସୋହାର ପାଇବା ଅପେକ୍ଷା ଆତ୍ମହତ୍ୟାକୁ ଶ୍ରେୟ ମନେକଲା। ଉଷାଭଳି ଏମିତି ଅନେକ ଝିଅ ଆତ୍ମହତ୍ୟା କରୁଛନ୍ତି କିନ୍ତୁ ସେମାନଙ୍କୁ କିଏ ସହାୟତା ଦେଉଛି? ଦେବାକଥା ମଧ୍ୟ କେହି ତିଳେହେଲେ ଚିନ୍ତା ମଧ୍ୟ କରୁ ନାହାନ୍ତି। କାରଣ ଏସବୁକୁ ଅନ୍ୟର ଘରୋଇ ବ୍ୟାପାରରେ ଏବଂ ଅଦାବେପାରିର ଜାହାଜ ମୂଲ ବୁଝିବାର ଅଧିକାର ନାହିଁ ନ୍ୟାୟରେ ଛାଡ଼ି ଦିଆ ଯାଉଛି।

ଏଭଳି ଅନେକ ସମସ୍ୟା ଓ ଉଦାହରଣ ଘରେ ଘରେ ମିଳିବ। କିନ୍ତୁ ଏଯାଏଁ ଘରୋଇ ଭାବେ ନିର୍ଯ୍ୟାତନାରେ ଶିକାର ହେଉଥିବା ନାରୀମାନଙ୍କର କଥା ଚିନ୍ତାକରାଯାଉଛି କି? ସେମାନଙ୍କୁ ନ୍ୟାୟ, ନିରାପତ୍ତା ଦେବା ନିମନ୍ତେ କିଛି ବ୍ୟବସ୍ଥା କରାଯାଉଛି କି? ସେମାନଙ୍କର ମୌଳିକ ଅଧିକାର ଲାଭ ପାଇଁ ସେମାନଙ୍କୁ ସୁଯୋଗ ଦିଆ ଯାଉଛି କି? ଘରର ଚାରିକାନ୍ଥ ଭିତରେ ସେମାନେ ବନ୍ଦ ହୋଇ ଯାଉଛନ୍ତି। ଝିଅ ଥିଲାବେଳେ ମୁକ୍ତି ନାହିଁ। ବିବାହ ପରେ ବି ମୁକ୍ତି ନାହିଁ। "Woman is not fit to be independent. At every stage in her life she should be under the dominion of some one, her father, her husband or son. The Idea of marriage was the transference of the father's dominion over her in favour of her husband."(By - K. M. Kapadia( "Marriage and family in India")

ଏହି ଭଳି ଗଡ୍ଡାଳିକାରେ ଜୀବନ ଗଢ଼ିଆସିଛି ନାରୀ। ଘରୋଇ system କୁ ମାନିନେଇଛି ଆପେ ଆପେ। ମୁକ୍ତି ଯେ ଖୋଜାଯାଇପାରେ, ଏହା ଯେ ଅନ୍ୟପକ୍ଷରେ ଏକ ଏକ ନିର୍ଯ୍ୟାତନା ଏକଥା ମଧ୍ୟ ତାକୁ ଜଣାନାହିଁ। ଘରୋଇ ବ୍ୟାପାର କହି ପାଖପଡ଼ିଶା, ସାଙ୍ଗ ସମ୍ପର୍କ କେହି ମୁଣ୍ଡ ଖେଳାନ୍ତି ନାହିଁ। ଏମାନଙ୍କ ପାଇଁ ଆଇନର ବି ସେମିତି କିଛି ପ୍ରଭାବ ନାହିଁ। ଏଭଳି ଝିଅମାନଙ୍କୁ ଆମ୍ଭେ ସବୁ କେବେ ମୁକ୍ତ କରିବା ବା ସଚେତନ କରାଇବା?

*

# ମହିଳାମାନଙ୍କ ଜାଣିବା ପାଇଁ କେତୋଟି ଆଇନଗତ ବ୍ୟବସ୍ଥା ଓ ଅଧିକାର

ମହିଳାମାନଙ୍କ ପାଇଁ ଦେଶର ସମ୍ବିଧାନରେ କେତେକ ସ୍ୱତନ୍ତ୍ର ବ୍ୟବସ୍ଥା ରହିଛି। ସାମାଜିକ, ରାଜନୈତିକ ତଥା ନ୍ୟାୟ ଯୋଗାଇ ଦେବାପାଇଁ ଏହି ବିଧାନ ଅଭିପ୍ରେତ। ମହିଳାମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଦେଶରେ ବିବାହ ଓ ଛାଡ଼ପତ୍ର, ସନ୍ତାନ, ଅଭିଭାବକତ୍ୱ, ଭରଣପୋଷଣ, ଉତ୍ତରାଧିକାରୀ ସତ୍ତ୍ୱ ଏବଂ କର୍ମ ନିଯୁକ୍ତି ଆଦି ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରାଯାଇଛି। ଆବଶ୍ୟକ ପଡ଼ିଲେ ଏହି ଆଇନର ଆଶ୍ରୟ ନେଇ ଅଦାଲତ ମାଧ୍ୟମରେ କ୍ଷତିଗ୍ରସ୍ତ ମହିଳା ସେମାନଙ୍କର ଦାବୀ ହାସଲ କରିବାରେ ସକ୍ଷମ ହୋଇପାରିବେ।

ତେବେ ଆଇନଗତ ବ୍ୟବସ୍ଥା ସତ୍ତ୍ୱେ ଅନେକ ସମୟରେ ବହୁ ମହିଳା ସାମାଜିକ-ଆର୍ଥିକ ନ୍ୟାୟ ପାଇବାରୁ ବଞ୍ଚିତା ହେଉଛନ୍ତି। ସେମାନେ ଆଇନ୍ ପାଖରେ ପହଞ୍ଚିପାରୁ ନାହାନ୍ତି ବା ଅଧିକାର ସଂପର୍କରେ ଜାଣୁ ନାହାନ୍ତି। ଏବେ କଠୋର ଆଇନ୍ ପ୍ରଣୟନ କରି ମହିଳାମାନଙ୍କର ଅଧିକାରକୁ ସମାଜରେ ସାବ୍ୟସ୍ତ କରିବା ସଙ୍ଗେ ସଙ୍ଗେ ମହିଳାମାନଙ୍କ ପ୍ରତି ପୁରୁଷ ପ୍ରଧାନ ସମାଜର ଯେଉଁ ରକ୍ଷଣଶୀଳ ଭାବଧାରା ରହିଛି ତାହାକୁ ବଦଳାଇବାକୁ ଚେଷ୍ଟା କରାଯାଉଛି।

ଦେଶରେ ବାସକରୁଥିବା ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ ଓ ଅନ୍ୟାନ୍ୟ ଧର୍ମାବଲମ୍ବୀମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟକ୍ତିଗତ ଆଇନ୍ ରହିଛି। ଏହାଦ୍ୱାରା ସେମାନଙ୍କର ବିବାହ, ଛାଡ଼ପତ୍ର, ପରିବାର ପ୍ରଭୃତି ଓ ଧର୍ମବିଚାରର ବିଭିନ୍ନ କାର୍ଯ୍ୟ ନିୟନ୍ତ୍ରିତ ହେଉଛି। ଏହାଛଡ଼ା ୧୯୫୪ ମସିହାରେ ପ୍ରଣିତ ସ୍ୱତନ୍ତ୍ର ବିବାହ ଆଇନ୍ ଅନୁସାରେ ମଧ୍ୟ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ପାଇଁ ଏକ ସମନ୍ୱିତ ବ୍ୟବସ୍ଥା କରାଯାଇଛି। ଆଇନ ଅନୁସାରେ ଛାଡ଼ପତ୍ର ବ୍ୟବସ୍ଥା ଆପୋଷ ରାଜିନାମା ମଧ୍ୟରେ କରାଯାଇପାରିବ। ଯଦି ସ୍ତ୍ରୀ ସ୍ୱାମୀଦ୍ୱାରା ନିର୍ଯ୍ୟାତିତା ହେଉଥାଏ ତେବେ ସେ ମଧ୍ୟ ଅତ୍ୟାଚାର ଓ ନିର୍ଯ୍ୟାତନାରୁ ମୁକ୍ତି ପାଇବା ପାଇଁ ଆଇନ୍ ଅନୁସାରେ ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇ ପାରେ। ଏହାଛଡ଼ା ମାନସିକ ନିର୍ଯ୍ୟାତନାରେ ଜଣେ ବିବାହିତା ମହିଳା ତାଙ୍କ ସ୍ୱାମୀଙ୍କ ବିରୋଧରେ ଛାଡ଼ପତ୍ର ଆବେଦନ କରି ଅଦାଲତର ଆଶ୍ରୟ ନେଇପାରିବେ।

ପୋଷ୍ୟପୁତ୍ର ଗ୍ରହଣ ଓ ଉତ୍ତରାଧିକାରୀ ମନୋନୟନ କ୍ଷେତ୍ରରେ ମହିଳାମାନଙ୍କୁ ଆଇନ୍‌ଗତ ସୁବିଧା ଯୋଗାଇ ଦିଆଯାଇଛି। ନୂତନ ଆଇନ୍ ଅନୁସାରେ ଜଣେ ମହିଳା ପୋଷ୍ୟପୁତ୍ର ପରିବର୍ତ୍ତେ ପୋଷ୍ୟକନ୍ୟା ମଧ୍ୟ ଗ୍ରହଣ କରିପାରିବେ ଏବଂ ନିଜର ଉତ୍ତରାଧିକାରୀ ଭାବରେ ତାକୁ ଆସୀନ କରାଇ ପାରିବେ। ଅବଶ୍ୟ ଏହି ପୋଷ୍ୟପୁତ୍ର ଗ୍ରହଣ ଆଇନ୍ କେବଳ ହିନ୍ଦୁ ଧର୍ମାବଲମ୍ବୀଙ୍କ ପାଇଁ ପ୍ରଯୁଜ୍ୟ।

ସେହିଭଳି ନାବାଳକ ସନ୍ତାନମାନଙ୍କର ପ୍ରକୃତ ଅଭିଭାବକ ଭାବେ ପିତା ହିନ୍ଦୁ ଆଇନ୍ ଦ୍ୱାରା ସ୍ୱୀକୃତ। କିନ୍ତୁ ଏ କ୍ଷେତ୍ରରେ ମା'ର ମଧ୍ୟ ଅନୁରୂପ ଦ୍ୱିତୀୟ ଶ୍ରେଣୀର ଭୂମିକା ରହିଛି ବୋଲି ଅଦାଲତ ସ୍ୱୀକାର କରିଛି। ତେବେ ଜଣେ ମହିଳା ଯଦି ନିଜର ନାବାଳକ କନ୍ୟା ଓ ସ୍ୱାମୀଙ୍କୁ ଛାଡ଼ି ଧର୍ମାନ୍ତରି ହୁଅନ୍ତି କିମ୍ବା ଏକାକୀ ରହନ୍ତି ସେ କ୍ଷେତ୍ରରେ କନ୍ୟାର ଭରଣପୋଷଣ ଓ ଲାଳନ ପାଳନ ଦାୟିତ୍ୱ ମଧ୍ୟ ଉକ୍ତ ମହିଳା ନେଇ ପାରିବେ। ଏ କ୍ଷେତ୍ରରେ ଛାଡ଼ପତ୍ର, ଧର୍ମାନ୍ତର, ପିତାର ଅଭିଭାବକତ୍ୱ ଆଦି କୌଣସି ପ୍ରତିବନ୍ଧକ ସୃଷ୍ଟି କରିପାରିବ ନାହିଁ। ତାଛଡ଼ା ୧୮୨୯ରେ Child Marriage Act,୧୮୫୬ ରେ The Hindu Widow Remarriage Act ଏବଂ ୧୮୭୨ ରେ Special Marriage Act ପ୍ରଣୟନ କରାଯାଇଛି। ବିଧବାଙ୍କ ପୁର୍ନବିବାହ ଏହି ଆଇନର ଉଦ୍ଦେଶ୍ୟ।ନାବଳକ ବିବାହ ଆଇନତଃ ଦଣ୍ଡନୀୟ ।

ସମାଜରେ ଏବେ ଭୟଙ୍କର ରୂପ ଧାରଣ କରିଥିବା ଯୌତୁକ ଜନିତ ସମସ୍ୟାରୁ ନାରୀସମାଜକୁ ରକ୍ଷା କରିବା ପାଇଁ ସରକାର ମଧ୍ୟ ଆଇନଗତ ବ୍ୟବସ୍ଥା ଗ୍ରହଣ କରିଛନ୍ତି। ୧୯୬୧ ମସିହାରୁ ଯୌତୁକ ନିରୋଧ ଆଇନ୍ କାର୍ଯ୍ୟକାରୀ ହୋଇଥିଲେ ମଧ୍ୟ ଏହି ସାମାଜିକ ବ୍ୟାଧିକୁ ଦୂର କରିବାରେ ଏହା ସକ୍ଷମ ହୋଇ ପାରିନାହିଁ। ଏହି ଆଇନକୁ ସଂଶୋଧିତ କରାଯାଇ କଠୋର ନିୟମ କାନୁନ୍ ପ୍ରସ୍ତୁତ କରାଯାଇଛି। ସଂଶୋଧିତ ଆଇନ୍ ଅନୁସାରେ, ଉଭୟ ଯୌତୁକ ଦାନ ଓ ଗ୍ରହଣକୁ ଧର୍ତ୍ତବ୍ୟ ଅପରାଧଭାବେ ଗ୍ରହଣ କରାଯାଇ ଏଥିପାଇଁ ଉଭୟେ ଅର୍ଥଦଣ୍ଡ ଓ ଜୋରିମାନାର ବ୍ୟବସ୍ଥା କରାଯାଇଛି। ତାଛଡ଼ା ଯୌତୁକ ଜନିତ ଅନୁଷ୍ଠାନ ଓ ସ୍ୱେଚ୍ଛାସେବୀ ସଂଘମାନଙ୍କୁ ମଧ୍ୟ କ୍ଷମତା ଦିଆଯାଇଛି। ସେଭଳି ବିବାହର ସାତଦିନଠାରୁ ସାତବର୍ଷ ମଧ୍ୟରେ କୌଣସି ମହିଳାଙ୍କର ଅପମୃତ୍ୟୁ ଘଟିଲେ ବା ଆତ୍ମହତ୍ୟା କଲେ ଏହାକୁ ଯୌତୁକ ହତ୍ୟା ମାମଲା ଭାବେ ଆପାତଃ ପ୍ରମାଣ କରାଯାଇପାରିବ ଏବଂ ଶବକୁ ବ୍ୟବଛେଦ କରାଯାଇପାରିବ ବୋଲି ସଂଶୋଧିତ ଆଇନ୍‌ରେ ବ୍ୟବସ୍ଥା ରହିଛି।

ମହିଳାମାନଙ୍କର ଇଜ୍ଜତ ଓ ସମ୍ମାନରକ୍ଷା ପାଇଁ ମଧ୍ୟ ବିଭିନ୍ନ ଆଇନ୍‌ଗତ ବ୍ୟବସ୍ଥା କରାଯାଇଛି। ୧୯୬୯ ମସିହାରୁ ଦେଶରେ ପ୍ରଚଳିତ ଧର୍ଷଣ ନିରୋଧ ଆଇନ୍‌ର ଆବଶ୍ୟକ ସଂଶୋଧନ ୧୯୮୩ ମସିହାରେ କରାଯାଇଛି। ଧର୍ଷଣକାରୀକୁ ଅତିକମ୍‌ରେ ୭ବର୍ଷ କାରାଦଣ୍ଡ ପାଇଁ ଆଇନ୍‌ଗତ ବ୍ୟବସ୍ଥା ହୋଇଛି। ତାଛଡ଼ା ଧର୍ଷଣ ଜନିତ ମାମଲାରେ ତଦନ୍ତ ବେଳେ ସମ୍ପୃକ୍ତ ମହିଳା ବା ଯୁବତୀ ଯେପରି ଅଡୁଆ ପରିସ୍ଥିତିରେ ନ ପଡ଼ନ୍ତି କିମ୍ବା ନିର୍ଯ୍ୟାତନାର ଶିକାର ନ ହୁଅନ୍ତି ସେଥିପ୍ରତି ଯତ୍ନବାନ ହେବା ପାଇଁ ମଧ୍ୟ ସମ୍ପୃକ୍ତ ତଦନ୍ତକାରୀମାନଙ୍କ ପାଇଁ ବିଧାନ ରହିଛି।

ଚଳଚ୍ଚିତ୍ର, ବିଜ୍ଞାପନ ଏବଂ ଫଟୋଚିତ୍ରରେ ମହିଳାମାନଙ୍କର ଅଶ୍ଳୀଳତା ପ୍ରଦର୍ଶନ ଉପରେ କଡ଼ା ଦଣ୍ଡ ବିଧାନର ବ୍ୟବସ୍ଥା କରି ସରକାର ୧୯୮୬ ମସିହାରେ ଏକ ସାନି ଆଇନ୍ ପ୍ରଣୟନ କରିଛନ୍ତି। ଏଥିପାଇଁ କଡ଼ା ଦଣ୍ଡବିଧାନର ବ୍ୟବସ୍ଥା ରହିଛି। ଏହାଛଡ଼ା ବେଶ୍ୟାବୃତ୍ତି, ବାଲ୍ୟବିବାହ ଓ କନ୍ୟା ହତ୍ୟା ଆଦି ଭୟଙ୍କର ସାମାଜିକ ବ୍ୟାଧିର ସମ୍ପୂର୍ଣ୍ଣ ବିଲୋପ ପାଇଁ ପର୍ଯ୍ୟାପ୍ତ ଆଇନଗତ ବ୍ୟବସ୍ଥା କରାଯାଇଛି। ଏହାବ୍ୟତିତ ରାଜସ୍ଥାନସ୍ଥିତ ଦେଓରାଲ ଭଳି "ସତୀ" ଘଟଣାର ବିଲୋପ ପାଇଁ ସତୀ ହେବା ନିମନ୍ତେ ପ୍ରତ୍ୟକ୍ଷ ବା ପରୋକ୍ଷରେ ଉସୁକାଉଥିବା ବ୍ୟକ୍ତିଙ୍କୁ ମୃତ୍ୟୁଦଣ୍ଡ ବା ଆଜୀବନ କାରାଦଣ୍ଡ ଦିଆଯିବାର ଆଇନଗତ ବ୍ୟବସ୍ଥା ହୋଇଛି।

# ଦାମ୍ପତ୍ୟ ଜୀବନ ସମ୍ପର୍କରେ ଭାରତୀୟ ନାରୀର ଆଇନଗତ ବ୍ୟବସ୍ଥା ଓ ଅଧିକାର

ଆମ ସମାଜରେ ନାରୀର ସାମାଜିକ ସ୍ଥିତି ବର୍ତ୍ତମାନ ଅପେକ୍ଷା ଅତୀତରେ ଆହୁରି ଖରାପ ଥିଲା। ଏପରିକି ଖେଳର ହାରଜିତରେ ନାରୀକୁ ଏକ ସମ୍ପତ୍ତି ଭଳି ବାଜି ରଖାଯାଉଥିଲା। ବହୁଅତୀତରେ ହିନ୍ଦୁ ଧର୍ମର ସାମାଜିକ ଆଇନ ପ୍ରଣେତା ମନୀଷୀ ମନୁଙ୍କ ମତରେ ନାରୀର ସ୍ୱାଧୀନତା ପାଇବାର ଅଧିକାର ନାହିଁ, କାରଣ ସେ ବାଲ୍ୟାବସ୍ଥାରେ ବାପାର, ଯୁବାବସ୍ଥାରେ ସ୍ୱାମୀର ଏବଂ ବୃଦ୍ଧାବସ୍ଥାରେ ପୁତ୍ରର ସୁରକ୍ଷାରେ ରହି ଜୀବନଯାପନ କରେ। ମାତ୍ର ଏହି ଉକ୍ତି ବର୍ତ୍ତମାନ କାଳରେ ବଦଳି ଯିବାକୁ ବାଧ୍ୟ। ସ୍ୱାଧୀନତା ପରଠାରୁ ନାରୀସ୍ୱାଧୀନତା ଉପରେ ଆଇନ୍ କାନୁନ୍ ମାଧ୍ୟମରେ ଗୁରୁତ୍ୱ ଦିଆଯାଇ ଆସୁଛି ଏବଂ ସମାଜରେ ପୁରୁଷ ସହିତ ସମାନ ମର୍ଯ୍ୟାଦା ପ୍ରଦାନ କରିବା ପାଇଁ ଚେଷ୍ଟା ଅବ୍ୟାହତ ରହିଛି। ସମାଜର ପ୍ରଗତି ଦୃଷ୍ଟିରୁ ଆଇନ ଦ୍ୱାରା ସାମାଜିକ ସ୍ଥିତିରେ ପରିବର୍ତ୍ତନ ଆଣି ପ୍ରତିକ୍ଷେତ୍ରରେ ନାରୀକୁ ପୁରୁଷ ସହିତ ସମାନ କରି ଛିଡ଼ା କରିବାର ଚେଷ୍ଟା ଚାଲିଛି। କିନ୍ତୁ ଆମ ଦେଶରେ ନାରୀ ସରଳ ସ୍ୱଭାବ ସୁଲଭ ଦୃଷ୍ଟିରୁ ଆଇନ କାନୁନ ବିଷୟରେ ଅଜ୍ଞ। ଅଧିକାଂଶ ନାରୀ ଅନ୍ୟାୟର ମଧ୍ୟ ପ୍ରତିବାଦ କରନ୍ତି ନାହିଁ। ଏପରି ଅନେକ ମହିଳା ଦାମ୍ପତ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟରୁ ବଂଚିତା ହୋଇ ସାରାଜୀବନ ଅଭାବ, ଯନ୍ତ୍ରଣା ଓ ଅଶାନ୍ତି ମଧ୍ୟରେ ଅତିବାହିତ କରିଥାନ୍ତି। ତେଣୁ ନାରୀମାନଙ୍କର ଦାମ୍ପତ୍ୟ ଜୀବନ ସଂକ୍ରାନ୍ତ କେତେକ ସମସ୍ୟା ଓ ସେହି ଦୃଷ୍ଟିକୋଣରୁ ସାମାଜିକ ନିରାପତ୍ତା ନିମିତ୍ତ ସେମାନଙ୍କ ଅଧିକାର ଓ ଆଇନ୍‌ଗତ ବ୍ୟବସ୍ଥା ସମ୍ପର୍କରେ ସବୁଶ୍ରେଣୀର ଓ ସବୁ ଧର୍ମର ମହିଳାମାନେ ଅବଗତ ହେବା ଆବଶ୍ୟକ। ବିଭିନ୍ନ ଆଇନ୍‌ରେ ବିବାହ ବିଚ୍ଛେଦ ପାଇଁ ରହିଥିବା କାରଣମାନ ନିମ୍ନରେ ପ୍ରଦତ୍ତ ହେଲା।

## ସ୍ୱତନ୍ତ୍ର ବିବାହ ଆଇନ

(୧)- ବିବାହପରେ ଜାରକର୍ମରେ ବା ଅନ୍ୟଜଣଙ୍କ ସଙ୍ଗେ ପାପ ପ୍ରଣୟରେ ଲିପ୍ତ ରହିଲେ।

(୨)- ଫୌଜଦାରୀ ଅପରାଧରେ ସାତ ବା ଏହାଠାରୁ ବେଶି ବର୍ଷ ପାଇଁ କାରାବାସ ହୋଇଥିଲେ।

(୩)- କୌଣସି କାରଣ ନ ଥାଇ ୩ ବର୍ଷ ପାଇଁ ଗୃହସଂସାର ତ୍ୟାଗ କରିଥିଲେ।

(୪)- ସ୍ୱାମୀଙ୍କ ଠାରୁ ନିଷ୍ଠୁର ଶାରୀରିକ ଯାତନା ପାଇଲେ।

(୫)- ବିକୃତ ମସ୍ତିଷ୍କ ବା ଅସାଧ୍ୟ ରୋଗରେ ପୀଡ଼ିତ ହୋଇଥିଲେ।

(୬)- ତିନିବର୍ଷ ଧରି ସଂକ୍ରାମକ ଯୌନ ବ୍ୟାଧିଗ୍ରସ୍ତ ହୋଇଥିଲେ।

(୭)- ତିନିବର୍ଷ ଧରି କୁଷ୍ଠ ବ୍ୟାଧିଗ୍ରସ୍ତ ହୋଇଥିଲେ।

(୮)- ସାତ ବର୍ଷରୁ ଅଧିକ ସମୟ ଧରି ନିରୁଦ୍ଦିଷ୍ଟ ହୋଇଥିଲେ ଓ ତାଙ୍କ ସମ୍ପର୍କରେ କୌଣସି ଖବର ଅନ୍ତର ନଥିଲେ।

(୯)- ଆଇନତଃ ଅଲଗା ରହିବାପାଇଁ ଅଦାଲତରୁ ଡିଗ୍ରୀ ମିଳିବା ଠାରୁ ଅନ୍ତତଃ ଦୁଇବର୍ଷ ପର୍ଯ୍ୟନ୍ତ ଶାରୀରିକ ସମ୍ପର୍କ ସ୍ଥାପନ କରାଯାଇ ନଥିଲେ।

(୧୦)- ବିବାହ ଅଧିକାରର ପୁନଃସ୍ଥାପନ ପାଇଥିବା ଡିଗ୍ରୀ ନିର୍ଦ୍ଦେଶକୁ ଅନ୍ତତଃ ଦୁଇବର୍ଷ ଧରି ପାଳନ ନ କଲେ।

ଏହାଛଡ଼ା, ଯଦି ବିବାହପରେ କୌଣସି ବ୍ୟକ୍ତି ନାରୀଧର୍ଷଣ, ପୁରୁଷ-ମୈଥୁନ କିମ୍ବା ପଶୁ-ମୈଥୁନ ଅପରାଧରେ ଜଡ଼ିତ ହୋଇ ଅପରାଧୀ ବୋଲି ଘୋଷିତ ହୁଅନ୍ତି ତେବେ ତାଙ୍କ ସ୍ତ୍ରୀ ବିବାହ ବିଚ୍ଛେଦ ପାଇଁ ଆବେଦନ କରି ପାରିବେ। ବିବାହ ବିଚ୍ଛେଦ ପାଇଁ ସ୍ୱାମୀ, ସ୍ତ୍ରୀ ଉଭୟଙ୍କ ସମ୍ମତିକୁ ମଧ୍ୟ ଆଇନତଃ ସ୍ୱୀକାର କରାଯାଇଛି। ମାତ୍ର ଏପରି କାରଣ ଥିବା ସତ୍ତ୍ୱେ ନିହାତି କଠିନ ଅବସ୍ଥାର ସମ୍ମୁଖୀନ ନ ହେଲେ ବିବାହ ସମ୍ପନ୍ନ ହେବାର ତିନିବର୍ଷ ମଧ୍ୟରେ ବିବାହ ବିଚ୍ଛେଦ ପାଇଁ କୌଣସି ଆବେଦନ ପତ୍ର କୋର୍ଟ ସାଧାରଣ ବିଚାରକୁ ନେଇ ନଥାନ୍ତି।

## ହିନ୍ଦୁ ବିବାହ ଆଇନ

ଉପରୋକ୍ତ ୨, ୩, ୪ ଦଫାରେ ରହିଥିବା କାରଣଗୁଡ଼ିକ ବ୍ୟତୀତ ଅନ୍ୟ ସମସ୍ତ କାରଣ ଉକ୍ତ ଆଇନରେ ବିବାହ ବିଚ୍ଛେଦ ନିମିତ୍ତ ପ୍ରଯୁଜ୍ୟ। ଏହାଛଡ଼ା ଅନ୍ୟଧର୍ମ ଗ୍ରହଣ ଓ ସନ୍ୟାସ ଗ୍ରହଣକୁ ମଧ୍ୟ ବିବାହ ବିଚ୍ଛେଦର କାରଣ ଭାବେ ଗ୍ରହଣ କରା ଯାଏ। ଆଇନ ଅନୁସାରେ ବିବାହ ବିଚ୍ଛେଦ ଏକ କଠିନ କାର୍ଯ୍ୟ। ଏ ସଂକ୍ରାନ୍ତରେ ନ୍ୟାୟାଳୟମାନେ ମଧ୍ୟ କଠୋର। ଖୁବ୍ କମ୍ ସ୍ଥଳରେ ବିବାହ ବିଚ୍ଛେଦ ପାଇଁ ନ୍ୟାୟାଳୟ ଅନୁମତି ଦେଇଥାଆନ୍ତି। ଅର୍ଥାତ୍ ଧର୍ମ, ସମାଜ ଓ ଆଇନ୍ କେହି ସାଧାରଣତଃ ବିବାହ ବିଚ୍ଛେଦକୁ ଉତ୍ସାହିତ କରନ୍ତି ନାହିଁ।

## ମୁସଲମାନ ଆଇନ୍

ଏହି ଆଇନରେ ବିବାହ ବିଚ୍ଛେଦର ପଥ ଭାରି ସହଜ। ବିବାହ ଯୋଗ୍ୟ କୌଣସି ମୁସଲମାନ ପୁରୁଷ ସୁସ୍ଥ ମସ୍ତିଷ୍କରେ ଥାଇ ଯେତେ ବେଳେ ଇଚ୍ଛା କରିବେ ସେତେବେଳେ କୌଣସି କାରଣ ନ ଦର୍ଶାଇ ତାଙ୍କ ସ୍ତ୍ରୀକୁ 'ତଲାକ' ବା ଛାଡ଼ପତ୍ର ଦେଇପାରିବେ। ଏହା ମୁହଁରେ କେବଳ କହିଦେଇ ହେବ। ପୁଣି ମଧ୍ୟ ଏକ ଲିଖିତ ଦସ୍ତାବିଜ୍ ଦ୍ୱାରା କରାଯାଇପାରେ। ମୁସଲମାନ ବିବାହ ବିଘଟନ ଆଇନ ବଳରେ ମୁସଲମାନ ମହିଳାମାନେ ବିବାହ ବିଚ୍ଛେଦ ପାଇଁ ଦାବୀ କରିପାରିବେ। କୌଣସି ମୁସଲମାନ ସ୍ତ୍ରୀକୁ ବିବାହ ବିଚ୍ଛେଦ ପାଇଁ ନ୍ୟାୟାଳୟର ଆଶ୍ରୟ ନେବାକୁ ପଡ଼ିଥାଏ। ମାତ୍ର ପୁରୁଷମାନଙ୍କ ପାଇଁ ସେଥିପାଇଁ ନ୍ୟାୟାଳୟର ଦ୍ୱାରକୁ ବି ଯିବାକୁ ପଡ଼େ ନାହିଁ।

## ଭାରତୀୟ ବିବାହ ବିଚ୍ଛେଦ ଆଇନ

ଜଣେ ସ୍ତ୍ରୀ ନିମ୍ନଲିଖିତ କାରଣମାନ ଦର୍ଶାଇ ବିବାହ ବିଚ୍ଛେଦ ପାଇଁ ନ୍ୟାୟାଳୟର ଆଶ୍ରୟ ନେଇପାରନ୍ତି, ଯଦି ତାଙ୍କ ସ୍ୱାମୀ-

(୧)- ନିଜର ଧର୍ମ ତ୍ୟାଗକରି ଅନ୍ୟ ଧର୍ମ ଗ୍ରହଣ କରନ୍ତି ଓ ଅନ୍ୟ ଜଣେ ମହିଳାଙ୍କୁ ଅନ୍ୟ ଏକ ମତର ପଦ୍ଧତିରେ ବିବାହ କରନ୍ତି।

(୨)- ନିଷିଦ୍ଧ ସଂପର୍କ ମଧ୍ୟରେ କୌଣସି ମହିଳାଙ୍କ ସହିତ ଜାର କର୍ମରେ ଲିପ୍ତ ଥାଆନ୍ତି ବା ଏକାଧିକ ମହିଳାଙ୍କ ସହିତ ଜାର କର୍ମରେ ବା ପାପ ପ୍ରଣୟରେ ଲିପ୍ତ ହେବାର ଅପରାଧ କରନ୍ତି।

(୩)- ନାରୀ ଧର୍ଷଣ, ପୁରୁଷ-ମୈଥୁନ ବା ପଶୁ-ମୈଥୁନ ଅପରାଧ କରନ୍ତି।

ସେହିପରି ଜଣେ ସ୍ତ୍ରୀ ବିବାହ ପରେ ପର ପୁରୁଷ ସହିତ ଯୌନ ସମ୍ପର୍କ ସ୍ଥାପନ କରିଥିବା ଅଭିଯୋଗ କରି ତାଙ୍କ ସ୍ୱାମୀ ମଧ୍ୟ ବିବାହ ବିଚ୍ଛେଦ ଚାହିଁ ପାରନ୍ତି।

ବିବାହ ବିଚ୍ଛେଦ ମାମଲାରେ ନ୍ୟାୟାଳୟମାନେ ସର୍ବଦା ଉଦାରତା ଦେଖାଇଥାଆନ୍ତି। ଆଇନର ବ୍ୟାଖ୍ୟା କରିବା ବ୍ୟତୀତ ସାମାଜିକ ଦାୟିତ୍ୱ ଓ ସମାଜର ହିତ ଚିନ୍ତା କରିବା ଦୃଷ୍ଟିରୁ ନ୍ୟାୟାଳୟମାନେ ସ୍ୱାମୀ-ସ୍ତ୍ରୀର ସମ୍ପର୍କକୁ ପୁଣି ଫେରାଇ ଆଣିବା ପାଇଁ ଯତ୍ନ କରନ୍ତି। ବିବାହ ବିଚ୍ଛେଦ ଦ୍ୱାରା ବିବାହ ଭାଙ୍ଗି ଗଲେ ସ୍ୱାମୀ-ସ୍ତ୍ରୀଙ୍କର ସମ୍ପର୍କ ତୁଟିଯାଏ। ଉଭୟ ପକ୍ଷ ପୁଣି ଥରେ ବାହା ହେବାପାଇଁ ଯୋଗ୍ୟ ହୋଇଯାନ୍ତି। କିନ୍ତୁ ସାଧାରଣ ସ୍ୱାଚ୍ଛନ୍ଦ୍ୟ ଦୃଷ୍ଟିରୁ (ପାର୍ସି ଓ ଖ୍ରୀଷ୍ଟିଆନ ଆଇନ ବ୍ୟତୀତ) ଅନ୍ୟ ସମସ୍ତଙ୍କ ଆଇନରେ ଛାଡ଼ପତ୍ର ଦେଇ ଆଉଥରେ ବାହା ହେବା ପୂର୍ବରୁ ଉଭୟ ପକ୍ଷଙ୍କୁ କିଛି ସମୟ ଅପେକ୍ଷା କରିବା ସକାଶେ ବ୍ୟବସ୍ଥା ଅଛି।

## କାନୁନୀବିଚ୍ଛେଦ

କାନୁନୀ ବିଚ୍ଛେଦ ଦାମ୍ପତ୍ୟ ଜୀବନର ସୁପ୍ତାବସ୍ଥା ବା କିଛିକାଳ ପାଇଁ ଅଟକାଇ ଦେବା ବ୍ୟବସ୍ଥା ବ୍ୟତୀତ ଅନ୍ୟ କିଛି ନୁହେଁ। ଏହା ଫଳରେ ଉଭୟ ସ୍ୱାମୀ ଓ ସ୍ତ୍ରୀ ପୃଥକ ବସବାସ କରିବାକୁ ହକ୍‌ଦାର ହୁଅନ୍ତି ବା ବୈବାହିକ ସମ୍ପର୍କର ଦାୟିତ୍ୱ ମେଣ୍ଟାଇବାକୁ ବା କର୍ତ୍ତବ୍ୟ କରିବାକୁ ବାଧହୁଅନ୍ତି ନାହିଁ। ବିବାହ ବିଚ୍ଛେଦ ପାଇଁ ଯେଉଁ ସବୁ କାରଣମାନ ନିର୍ଣ୍ଣୟ କରାଯାଇଛି ପାୟ ସେହିସବୁ କାରଣମାନ ଦର୍ଶାଇ କାନୁନୀବିଚ୍ଛେଦ ପାଇଁ ନ୍ୟାୟାଳୟରେ ଆବେଦନ କରାଯାଇ ପାରିବ।

କେବଳ ମୁସଲମାନ ଆଇନରେ କାନୁନୀ ବିଚ୍ଛେଦ ପାଇଁ ସେପରି କିଛି ସ୍ୱତନ୍ତ୍ର ବ୍ୟବସ୍ଥା ନାହିଁ। କାନୁନୀ ବିଚ୍ଛେଦ ଆଦେଶ ଦ୍ୱାରା ସ୍ତ୍ରୀ ଭିନ୍ନେ ହୋଇ ରହିବା ପାଇଁ ଅଧିକାର ପାଇବା ସଙ୍ଗେ ସଙ୍ଗେ ସ୍ୱାମୀଠାରୁ ଭରଣପୋଷଣ ପାଇବାକୁ ହକ୍‌ଦାର ହେବ। ମାତ୍ର ସ୍ତ୍ରୀ ଯଦି ସ୍ୱେଚ୍ଛାକୃତ ଭାବେ ନିଜର ବଡ଼ପଣିଆ ବା ବାପଘରର ବଡ଼ପଣିଆ କାରଣରୁ ଅଲଗା ରହିବାକୁ ଇଚ୍ଛାକରନ୍ତି; ତେବେ ଭରଣପୋଷଣ ପାଇବାକୁ ଆଇନତଃ ହକ୍ ହେବେ ନାହିଁ। ଏଠାରେ ମନେ ରଖିବା ଉଚିତ୍ ହେବ ଯେ ସ୍ତ୍ରୀ ସ୍ୱାମୀର ସମଦୁଃଖୀ ଓ ସମଭୋଗୀ। ସ୍ୱାମୀର ଦୁଃଖରେ ସ୍ତ୍ରୀକୁ ଭାଗୀଦାର ହେବାକୁ ହେବ। ଅତଏବ ସାମାନ୍ୟ କାରଣରୁ କାନୁନୀ ବିଚ୍ଛେଦ କରାଯାଇ ପାରିବନି। ତେଣୁ ପ୍ରତ୍ୟେକ ସ୍ତ୍ରୀର କର୍ତ୍ତବ୍ୟ ଯେ କାନୁନୀ ବିଚ୍ଛେଦ କରିବା ପୂର୍ବରୁ ବହୁଥର ଚିନ୍ତା କରିବା ଦରକାର। ଅବଶ୍ୟ କାନୁନୀ ବିଚ୍ଛେଦ ଏକ ସ୍ୱଳ୍ପ କାଳୀନ ବ୍ୟବସ୍ଥା। ଏହାପରେ ଦମ୍ପତିଙ୍କ ମନରେ ପରିବର୍ତ୍ତନ ଆସିଲେ ସହବାସ ଓ ଘରସଂସାର କରି ପୁଣି ବୈବାହିକ ଜୀବନକୁ ଜାଗରୁକ କରାଯାଇ ପାରିବ।

## ଅସିଦ୍ଧ ବିବାହକୁ ରଦ୍ଦ କରିବା

ଆଇନର ବ୍ୟବସ୍ଥାନୁସାରେ ବିବାହକୁ ନ୍ୟାୟାଳୟ ଅସିଦ୍ଧ ଘୋଷଣା କରିପାରେ ବା ରଦ୍ଦ କରିପାରେ। କେତେକ ବିବାହ ମୂଳରୁ ଅସିଦ୍ଧ ବୋଲି ବିବେଚିତ ହୋଇଥାଏ ଓ ଅନ୍ୟ କେତେକକୁ ଅସିଦ୍ଧ-ଯୋଗ୍ୟ ବୋଲି ବିଚାର କରାଯାଏ। ଅସିଦ୍ଧ ବିବାହ ବନ୍ଧନ, ଆଇନ ଚକ୍ଷୁରେ କୌଣସି ଦାମ୍ପତ୍ୟ ଅଧିକାର ଦିଏ ନାହିଁ ବା ତଦ୍ୱାରା ଅଧିକାର ସାବ୍ୟସ୍ତ କରାଯାଇ ନ ପାରେ। ମାତ୍ର ଅସିଦ୍ଧଯୋଗ୍ୟ ବିବାହ କୌଣସି ପକ୍ଷରେ ଆପତ୍ତି ନ ରହିଲେ ସିଦ୍ଧତା ହାସଲ କରିପାରେ। ସେହିପରି କୌଣସି ପକ୍ଷ ଚାହିଁଲେ ଉକ୍ତ ବିବାହକୁ ନ୍ୟାୟାଳୟ ଦ୍ୱାରା ଅସିଦ୍ଧ ବୋଲି ରଦ୍ଦ କରାଇ ପାରିବେ। ବିବାହ ଅସିଦ୍ଧତା ନିମିତ୍ତ ବିଭିନ୍ନ ଆଇନରେ ଥିବା କାରଣମାନ ବର୍ଣ୍ଣନା କରାଯାଇପାରେ।

# ହିନ୍ଦୁଆଇନ

ହିନ୍ଦୁ ଆଇନାନୁସାରେ ନିମ୍ନଲିଖିତ କାରଣ ଥାଇ ବିବାହ ସଂପନ୍ନ ହୋଇଥିଲେ ତାହା ଅସିଦ୍ଧ ବୋଲି ବିବେଚିତ ହେବ :-

(୧)- ବିବାହ ପୂର୍ବରୁ କୌଣସି ପକ୍ଷ ଅନ୍ୟ ବିବାହ ବନ୍ଧନରେ ଆବଦ୍ଧ ଥିଲେ ବା କୌଣସି ପକ୍ଷରେ ଦମ୍ପତି ଜୀବିତ ଥିଲେ।

(୨)- ଅପ୍ରାପ୍ତ ବୟସ୍କଙ୍କ ସହିତ ବିବାହ ହୋଇଥିଲେ (ପୁରୁଷ ୨୧ ବର୍ଷରୁ କମ୍ ହୋଇ ଥିଲେ ଏବଂ ନାରୀ ୧୮ ବର୍ଷରୁ କମ୍ ହୋଇଥିଲେ ଅପ୍ରାପ୍ତ ବୟସ୍କ ବୋଲି ଧରାଯିବ)।

(୩)- ବିବାହ ସମୟରେ ସ୍ୱାମୀର ହେଉ ବା ସ୍ତ୍ରୀର ହେଉ କୌଣସି ପକ୍ଷର ମସ୍ତିଷ୍କ ବିକୃତି ବା ପାଗଳାମି ଥିଲେ।

(୪)- ଜ୍ଞାତି କୁଟୁମ୍ବ, ନିକଟ ସମ୍ପର୍କୀୟଙ୍କ କିମ୍ବା ସପିଣ୍ଡମାନଙ୍କ ଭିତରେ ବିବାହ ସମ୍ପନ୍ନ ହୋଇଥିଲେ ବରକନ୍ୟା ଦୁହେଁ ଯଦି କେହି କାହାର ପିତାପକ୍ଷରୁ, ସାତପୁରୁଷ ବା ମାତାପକ୍ଷରୁ ପାଞ୍ଚପୁରୁଷ ଭିତରେ ରକ୍ତ ସମ୍ପର୍କୀୟ ହୋଇଥାନ୍ତି ତେବେ ଏହା ଅସିଦ୍ଧ ହେବ। ମାତ୍ର ଏ ସମ୍ପର୍କରେ ପ୍ରତିଷ୍ଠିତ ପ୍ରଥା ଥିଲେ ଅସିଦ୍ଧ ହେବ ନାହିଁ।

(୫)- ସ୍ୱାମୀ ଯଦି ନପୁଂସକ ହୋଇଥାନ୍ତି।

ସେହିପରି ନିମ୍ନଲିଖିତ କାରଣରୁ ବିବାହକୁ ଅସିଦ୍ଧ ଯୋଗ୍ୟ ବୋଲି ବିବେଚନା କରାଯାଏ :-

(କ)- ବିବାହ ହେବା ପୂର୍ବରୁ ସ୍ତ୍ରୀ ଗର୍ଭବତୀ ହୋଇଥିଲେ।

(ଖ)- ଇଚ୍ଛା ବିରୁଦ୍ଧରେ ଜୋର ଜବରଦସ୍ତ ବିବାହ କରାଯାଇଥିଲେ।

(ଗ)- ସହବାସ କରିବାକୁ ସ୍ୱେଚ୍ଛାରେ କୌଣସି କାରଣ ନ ଥାଇ ଅସ୍ୱୀକାର କଲେ।

## ମୁସଲମାନ ଆଇନରେ ଅସିଦ୍ଧ ବିବାହର କାରଣ

(୧)- ପକ୍ଷମାନେ ସପିଣ୍ଡ ହୋଇଥିଲେ ବା ନିଜର ରକ୍ତ ସମ୍ପର୍କୀୟ ଥିଲେ।

(୨)- ସ୍ୱାମୀ ହେଉ ବା ସ୍ତ୍ରୀର ହେଉ କୌଣସି ପକ୍ଷରେ ଅନ୍ୟ ଦମ୍ପତି ଥିଲେ।

## ଅସିଦ୍ଧ ବିବାହର କାରଣ

(କ)- ବିନା ମତାମତରେ ବିବାହ ହୋଇଥିଲେ।

(ଖ)- ବିନା ସାକ୍ଷ୍ୟ ପ୍ରମାଣରେ ବିବାହ ସଂପନ୍ନ ହେଲେ।

(ଗ)- ପଞ୍ଚମ ସ୍ତ୍ରୀ ଗ୍ରହଣ ପାଇଁ ବିବାହ କଲେ।

## ଖ୍ରୀଷ୍ଟିଆନ ଆଇନରେ ଅସିଦ୍ଧ ଓ ଅସିଦ୍ଧଯୋଗ୍ୟ ବିବାହର କାରଣ

(ଏଥିରେ ଅସିଦ୍ଧଯୋଗ୍ୟ ବିବାହର ପାର୍ଥକ୍ୟ ନାହିଁ)

(୧)- ସ୍ୱାମୀ ବା ସ୍ତ୍ରୀର ନପୁଂସକତା।

(୨)- ସପିଣ୍ଡ ବିବାହ।

(୩)- ମସ୍ତିଷ୍କ ବିକୃତ ବା ପାଗଳାମି ଥାଇ ବିବାହ।

(୪)- ଅନ୍ୟ ଧର୍ମର ପଦ୍ଧତିରେ ବିବାହ ସଂପାଦନ।

(୫)- ପୂର୍ବ ବିବାହ ବଳବତ୍ତର ଥାଇ ଆଉଥରେ ବିବାହ କଲେ।

ବିବାହ ରଦ୍ଦ କରିବାର ବ୍ୟବସ୍ଥା ଜନସମୂହରେ ବିବେକ ଓ ସମାଜର ନୀତିନିୟମ ଦୃଷ୍ଟିରୁ ଗଢ଼ିତ ହୋଇଥିବା ଯୋଗୁଁ ଆଇନରେ ସ୍ଥାନ ପାଇଅଛି। ଉଦାହରଣ ସ୍ୱରୂପ ପରୀକ୍ଷା କରି ଦେଖାଯାଇଛି ଯେ ସପିଣ୍ଡ ବା ରକ୍ତ ସଂପର୍କୀୟମାନଙ୍କ ମଧ୍ୟରେ ବିବାହରୁ ଜାତ ହେଉଥିବା ସନ୍ତାନ ସନ୍ତତି ବହୁକ୍ଷେତ୍ରରେ ନୀଚ ଗୁଣର ଅଧିକାରୀ, ବୁଦ୍ଧିହୀନ କିମ୍ବା ବିକଳାଙ୍ଗ ହୋଇଥାନ୍ତି। ସେଥିପାଇଁ ସମାଜର ଶୃଙ୍ଖଳା, ଉନ୍ନତି ଓ ହିତ ଦୃଷ୍ଟିରୁ ଏହାକୁ ଆଇନଗତ ସ୍ୱୀକୃତି ଦିଆଯାଇଛି।

## ଖୋରାକି ପୋଷାକ ଓ ଭିନ୍ନେ ରହଣି ଦାବି

ଶାସ୍ତ୍ରାନୁସାରେ ସଚ୍ଚରିତ୍ରା ସ୍ତ୍ରୀକୁ ପୋଷିବା ସ୍ୱାମୀର ପବିତ୍ର କର୍ତ୍ତବ୍ୟ। ଭରଣ ପୋଷଣ କରିବା ସ୍ୱାମୀର ସମ୍ପତ୍ତି ବା ରୋଜଗାର ଥିବା ନ ଥିବା ଉପରେ ନିର୍ଭର କରେ ନାହିଁ। ହିନ୍ଦୁ ଧର୍ମର ପ୍ରଥାନୁସାରେ ଭରଣ ପୋଷଣ ଅଭାବ କାରଣରୁ ଯଦି ସ୍ତ୍ରୀ ଦୁଃଖ ପାଏ ତେବେ ସ୍ୱାମୀକୁ ନରକବାସ ହୁଏ। ପ୍ରତ୍ୟେକ ଧର୍ମରେ ଭରଣ ପୋଷଣ ପାଇଁ ନିର୍ଦ୍ଦେଶ ରହିଛି ଓ ଆଇନ କାନୁନ ମଧ୍ୟ ଏହାକୁ ସ୍ୱୀକାର କରିଛି। କାନୁନୀ ବିଚ୍ଛେଦ ବା ବିବାହ ବିଚ୍ଛେଦ କାରଣରୁ ସ୍ତ୍ରୀକୁ ଯଦି ଭିନ୍ନେ ରହିବାକୁ ପଡ଼େ ତେବେ ସେ ଆଇନ ଅନୁସାରେ ଖୋରାକ ପୋଷାକ ଦାବି କରିପାରିବେ। ଆଇନ ଦ୍ୱାରା ହିନ୍ଦୁ ବିବାହିତା ସ୍ତ୍ରୀର ପୃଥକ ବସବାସ ଓ ଭରଣ ପୋଷଣ ଦାବି ପାଇଁ ଆଇନଗତ ଅଧିକାର ରହିଛି। ଏହାପରେ ପୋଷ୍ୟପୁତ୍ର ଓ ଭରଣ ପୋଷଣ ଆଇନ ଦ୍ୱାରା ଏହାକୁ ଆହୁରି ଦୃଢ଼ କରାଗଲା। ସ୍ୱାମୀ ଦ୍ୱାରା ସ୍ତ୍ରୀ କୌଣସି କାରଣରୁ ନିର୍ଯ୍ୟାତିତା ହେଲେ ବା କଠୋର ବ୍ୟବହାର ପାଇଁ ଅଲଗା ରହିଲେ ସ୍ତ୍ରୀ ଭରଣପୋଷଣ ପାଇବାକୁ ହକ୍‌ଦାର ହେବେ।

ହିନ୍ଦୁ ନାରୀ ନିମ୍ନଲିଖିତ କାରଣରୁ ଅଲଗା ରହି ଭରଣ ପୋଷଣ ଦାବି କରି ପାରେ।

(୧)- ସ୍ୱାମୀ ଯଥାର୍ଥ କାରଣବିନା ସ୍ତ୍ରୀଙ୍କ ଇଚ୍ଛାବିରୁଦ୍ଧରେ ତାଙ୍କୁ ତ୍ୟାଗ କଲେ ବା ଅବହେଳା କଲେ।

(୨)- ସ୍ତ୍ରୀ ପ୍ରତି ନିଷ୍ଠୁର ବ୍ୟବହାର କରାଗଲେ କିମ୍ବା କଠୋର ଶାରୀରିକ ଯାତନା ଦିଆଗଲେ।

(୩)- ସ୍ୱାମୀଙ୍କ କଠୋରତା ଯୋଗୁଁ ତାଙ୍କ ସହିତ ବସବାସ କରିବା ବିପଦଜନକ ହୋଇଥିଲେ।

(୪)- ସ୍ୱାମୀ ଉତ୍କଟ କୁଷ୍ଠ ବ୍ୟାଧିଗ୍ରସ୍ତ ହୋଇଥିଲେ।

(୫)- ସ୍ୱାମୀ ଅନ୍ୟନାରୀସହ ବସବାସ ବା ଚଳାଚଳ କଲେ।

(୬)- ସେ ହିନ୍ଦୁ ଧର୍ମ ଛାଡ଼ି ଅନ୍ୟ ଧର୍ମ ଗ୍ରହଣ କଲେ, ଏବଂ

(୭)- ସ୍ୱାମୀର ଅନ୍ୟ ସ୍ତ୍ରୀ ଥିଲେ।

ମାତ୍ର ସ୍ତ୍ରୀ ନିଜ ଧର୍ମ ତ୍ୟାଗ କଲେ କିମ୍ବା ଭ୍ରଷ୍ଟାଚାରୀର ଜୀବନ ଯାପନ କଲେ ଖୋରାକ ପୋଷାକ ପାଇବାରୁ ବଞ୍ଚିତ ହୋଇଥାଏ। ହିନ୍ଦୁ ବିବାହ ଆଇନରେ ମଧ୍ୟ ଭରଣ ପୋଷଣର ଦାବୀକୁ ସମ୍ମାନ ଦିଆଯାଇ ସେହିଭଳି ବ୍ୟବସ୍ଥା କରାଯାଇଛି।

୧୯୭୩ ମସିହାର ଏକ ଆଇନ ଅନୁସାରେ ବିବାହ ବିଚ୍ଛେଦ ଫଳରେ ସ୍ୱାମୀଙ୍କଠାରୁ ବିଚ୍ଛିନ୍ନ ହୋଇ ଥିବା ଜଣେ ସ୍ତ୍ରୀ ଆଉଥରେ ବାହା ହେବା ପର୍ଯ୍ୟନ୍ତ କିମ୍ବା ସାରାଜୀବନ ପାଇଁ ଭରଣ ପୋଷଣ ଦାବି କରିପାରିବ। ଏହି ଆଇନ ବଳରେ ଅଦାଲତ ଭରଣ ପୋଷଣ ଦେବା ପାଇଁ ସ୍ୱାମୀଙ୍କୁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ବାଧ୍ୟ କରିବ। ଏହାର ବ୍ୟବସ୍ଥା ସବୁ ଧର୍ମର ଦମ୍ପତିମାନଙ୍କ ପାଇଁ ଲାଗୁକରା ଯାଇଥିଲା। ଏହି ଆଇନ ଅନୁଯାୟୀ ଯେହେତୁ ସ୍ତ୍ରୀକୁ ଛାଡ଼ପତ୍ର

ହେଲେ ତାର ଆଜୀବନ ଭରଣ ପୋଷଣର ଭାର ସ୍ୱାମୀ ଉପରେ ନ୍ୟସ୍ତ ରହୁଥିଲା, ସେହି ହେତୁ ବହୁ ବିବାହର ପ୍ରଥାକୁ ଏହା କୁଠାରଘାତ କରୁଥିଲା। ଏଣୁ ପାର୍ଲିଆମେଣ୍ଟରେ ମୁସଲମାନ ମହିଳା ଅଧିକାର ସୁରକ୍ଷା ବିଲ ପାଶ୍ କରାଯାଇଛି ଏବଂ ଏହି ବିଲ୍ ଅନୁସାରେ ମୁସଲମାନ ମହିଳାମାନଙ୍କ ପ୍ରତି ଆଗରୁ ଚଳୁଥିବା ଆଇନ ଆଉ ଲାଗୁ ହେବ ନାହିଁ। ଉକ୍ତ ବିଲରେ ପିତାମାତା, ବନ୍ଧୁବାନ୍ଧବ, ମୁସଲମାନ ସମାଜ ଓ ଓ୍ୟାକଫ ବୋର୍ଡ ତଲାକ୍ ପ୍ରାପ୍ତ ବା ଛାଡବୋଦ୍ ପ୍ରାପ୍ତ ମହିଳାର ଭରଣ ପୋଷଣ ପାଇଁ ଦାୟୀ ରହିବାର ବ୍ୟବସ୍ଥା କରାଯାଇଛି। ମୁସଲମାନ ଆଇନରେ ସ୍ତ୍ରୀ ବିବାହ ବିଛେଦ ପରେ "ତାଓେର" ଓ "ଇଦାତ" ସମୟ ସୀମା ଅତିକ୍ରମ କରିବା ପର୍ଯ୍ୟନ୍ତ ଭରଣ ପୋଷଣ ପାଇବାକୁ ହକ୍ ଅଟେ। ବିବାହ ବିଚ୍ଛେଦ ଓ କାନୁନୀ ବିଚ୍ଛେଦ ପରେ ସ୍ୱାମୀ ସ୍ତ୍ରୀର ଯାବଦ୍‌ଜୀବନ ଭରଣ ପୋଷଣର ବ୍ୟବସ୍ଥା କରିବାକୁ ଆଇନତଃ ବାଧ୍ୟ ଅଟେ। ମାତ୍ର ସ୍ତ୍ରୀ ଯଦି ଭ୍ରଷ୍ଟାଚାରିଣୀ ହୁଅନ୍ତି ବା ସେପରି ଭାବେ ନୀଚ ଜୀବନ ଯାପନ କରନ୍ତି ତେବେ ସେ ଭରଣ ପୋଷଣ ପାଇବାରୁ ବଞ୍ଚିତା ହେବେ।

ଶେଷରେ ଏତିକି କୁହାଯାଇପାରେ ଯେ ଦାମ୍ପତ୍ୟ ଜୀବନ ସମ୍ପର୍କରେ ଆଇନଗତ ଅଧିକାର ସାବ୍ୟସ୍ତ କରିବାକୁ ହେଲେ ଅଦାଲତର ଆଶ୍ରୟ ନେବାକୁ ପଡ଼ିବ। ଏ କ୍ଷେତ୍ରରେ ଅଦାଲରେ ମଧ୍ୟ ଗୁରୁ ଦାୟୀତ୍ୱ ଅଛି। ବିଚାରପତିମାନେ ଉଭୟପକ୍ଷଙ୍କୁ ମିଳାମିଶା କରାଇଦେବାରେ ଆନ୍ତରିକତା ପ୍ରକାଶ କରନ୍ତି ଓ ଏଥିପାଇଁ ବହୁତ ଚେଷ୍ଟାକରିଥାନ୍ତି। ଏବେ ଦେଶରେ ଲୋକ-ଅଦାଲତମାନ ପ୍ରତିଷ୍ଠା କରାଯାଇ ଦାମ୍ପତ୍ୟଜୀବନ ସଂକ୍ରାନ୍ତ ଅଧିକାର ଓ ଦାବୀ ଗୁଡ଼ିକୁ ଫଏସଲା କରାଯାଉଛି। ସ୍ୱାମୀ ସ୍ତ୍ରୀର ସମ୍ପର୍କଠାରୁ ଆଉ ଘନିଷ୍ଠତର ସମ୍ପର୍କ କିଛି ନାହିଁ। ଏ ସମ୍ପର୍କ ତୁଟାଇବାର ପ୍ରଚେଷ୍ଟା ଦୁର୍ଭାଗ୍ୟ ଓ ଅଜ୍ଞାନତା କାରଣରୁ ହୋଇଥାଏ। ଯଥା ସମ୍ଭବ ନିବୃତ୍ତ ରହିବାହିଁ ବ୍ୟକ୍ତି, ପରିବାର ଓ ସମାଜ ପକ୍ଷେ ଶ୍ରେୟସ୍କର।

ଅପରପକ୍ଷରେ କିନ୍ତୁ ନିର୍ଯ୍ୟାତିତା ଓ ସ୍ୱାମୀଦ୍ୱାରା କ୍ରମାଗତ ଭାବେ ଉପେକ୍ଷିତା ତଥା ଅବହେଳିତା ନାରୀମାନେ ନିଜର ଆଇନଗତ ଅଧିକାର ସମ୍ପର୍କରେ ସବୁକଥା ଜାଣି ଅଯୋଗ୍ୟ ସ୍ୱାମୀଠାରୁ ବିବାହ ବିଚ୍ଛେଦ କରାଇ ସ୍ୱାଧୀନ ଭାବେ ଜୀବନ ଯାପନ କରିବା ବହୁଗୁଣରେ ଶ୍ରେୟସ୍କର।



# ଶେଷକଥା

ସେଦିନ ସେକ୍‌ସପିୟର ତାଙ୍କର "Hamlet"ରେ ଲେଖିଥିଲେ "Fraility, thy name is woman" ଦୁର୍ବଳତାର ଅନ୍ୟ ନାଁ ନାରୀ। ତାପରେ "ଅବଳାନାରୀ", "ଅସହାୟାନାରୀ" ଏଭଳି କେତେ ବିଶେଷଣ ଯୋଡ଼ା ହେଇ ଯାଇଛି। ନାରୀ ପ୍ରତି ପୁରୁଷର ଦୁର୍ବଳତା ଏବଂ ନାରୀର ଶାରୀରିକ ଶକ୍ତିର ଅଭାବକୁ ଆଖି ଆଗରେ ରଖି ବୋଧହୁଏ ଏମିତି ଉପମା, ବିଶେଷଣ ସବୁ ଯୋଡ଼ା ହେଇ ଯାଇଛି। ପ୍ରକୃତରେ ଆମେ ସମସ୍ତେ ଟିକିଏ ଟିକିଏ କଥାରେ ଅତୀତର ନାରୀଙ୍କୁ ହିଁ ମନେ ପକାଉ। ଟିକିଏ ଟିକିଏ କଥାରେ ଆସନ୍ତି ଐଶ୍ବର୍ଯ୍ୟମୟୀ ନାରୀ ଲକ୍ଷ୍ମୀ, ବିଦ୍ୟାଦାତ୍ରୀ ସରସ୍ୱତୀ, ମହିଷମର୍ଦ୍ଦିନୀ ଦୁର୍ଗା। ବିଦୂଷୀ ନାରୀ କଥା ପଡ଼ିଲେ ହିଁ ଗାର୍ଗୀ, ମୈତ୍ରେୟୀ, ଲୋପାମୁଦ୍ରା ଆମ ଆଖି ଆଗରେ ଧାଡ଼ି ବାନ୍ଧି ଠିଆ ହୁଅନ୍ତି। ସତୀତ୍ୱର କଥା ପଡ଼ିଲେ ଦ୍ରୌପଦୀ, ସୀତା, କୁନ୍ତୀ, ଅହଲ୍ୟା ଏମିତି କେତେ ନାରୀଙ୍କ ନାଁ ଆସେ। ଏହିଭଳି ଆମେ କେବଳ ଅତୀତକୁ ଭଲ ପାଉ, ପୂଜା କରୁ। କିନ୍ତୁ ନାରୀ କହିଲେ କଣ ବୁଝାଏ କେବଳ ଗାର୍ଗୀ, ମୈତ୍ରେୟୀ, ଲୋପାମୁଦ୍ରାଙ୍କୁ? ଏ ଦେଶରେ ଆହୁରି ଅନେକ ନାରୀ ଅଛନ୍ତି ଯେଉଁମାନଙ୍କ କଥା କେବେ ଇତିହାସ ଲେଖେନା, ଜନତା ମନେ ରଖେନା କି ପୂଜା କରେନା। ସମୟ ସୁଅରେ ଆସି ସେମାନେ ସେହି ସମୟ ସହିତ ହିଁ ଲୀନ ହୋଇଯାନ୍ତି। ସେମାନେ ଶିକ୍ଷାର ଆଲୋକ ଦେଖି ନାହାନ୍ତି। ଶିକ୍ଷା, ସଭ୍ୟତାଠାରୁ ସେମାନେ ବହୁଦୂରରେ। ସେମାନେ କହି ପାରିବେନି ବାଚେନ୍ଦ୍ରି ପାଲ କିଏ, ପି.ଟି.ଉଷା କଣ କରେ? ମାର୍ଗାରେଟ ଥାଚର, ବନ୍ଦର ନାୟକ, ଆକ୍ୱିନଙ୍କ ନାଁ କେବେ ଶୁଣି ନ ଥିବେ। ଅଧିକନ୍ତୁ ଗୁଡ଼ାଏ ପିଲା ଜନ୍ମ କରି ବୁଢ଼ୀ ହୋଇ ମରିବା ଛଡ଼ା ସେମାନେ ଅଧିକ କିଛି ଜାଣନ୍ତି ନାହିଁ। ନାରୀର ଅଧିକାର ସାବ୍ୟସ୍ତ କରିବା, ଜୀବନକୁ ଉପଭୋଗ କରିବା, ନାରୀ ଜୀବନ ବି ମୂଲ୍ୟବାନ ଏକଥା ତାଙ୍କୁ ଜଣାନାହିଁ କି କେହି କେବେ କହି ନାହିଁ। ଅଜ୍ଞାନତା, ଦାରିଦ୍ର୍ୟ, କ୍ଷୁଧା, ଅବହେଳା, ନାନା ପ୍ରକାର ଦୁଃସାଧ ରୋଗ, ଅତ୍ୟାଚାର ମଧ୍ୟ ଦେଇ ସେମାନଙ୍କର ଜୀବନଦୀପ ଲିଭିଯାଏ। କେତେବେଳେ ଦେବୀ କରିଦିଆଯାଏ, କେତେବେଳେ ଦେବୀରୁ ବାରାଙ୍ଗନା ବନାଇ ଦିଆଯାଏ। ପୁଣି କେବେ ଯୌତୁକ ଲାଗି ପେଟ୍ରୋଲ, କିରୋସିନିରେ ଜୀଅନ୍ତା ପୋଡ଼ିଦିଆଯାଏ। ରାସ୍ତାରୁ ଟେକିନେଇ ଅତ୍ୟାଚାର କରି ତଣ୍ଟି ଚିପି ଫିଙ୍ଗି ଦିଆଯାଏ। ଏମାନେ ବି ସମସ୍ତେ ଭାରତୀୟ ନାରୀ। ଯଦିଓ ଏମାନଙ୍କ କଥା କେବେ କେଉଁଠି ସ୍ୱର୍ଣ୍ଣ ଅକ୍ଷରରେ ଲେଖାଯିବ ନାହିଁ। ତଥାପି ବୈଚିତ୍ର୍ୟମୟ ଜୀବନଯାତ୍ରା ଏମାନଙ୍କର ଏମିତି ଚାଲିଥିବ। କେତେ ବେଳେ ଏଠି ରଙ୍ଗ ଓଜାଡି ପଡୁଥିବ ତ କେବେ ରଙ୍ଗ ଉଡିଯାଇଥିବ। ରଙ୍ଗ ବେରଙ୍ଗ ମେଳରେ ଜୀବନ ବିତାଉଥିବା ଏ ଦେଶର ନାରୀର ଭାଗ୍ୟ ବାସ୍ତବିକ ପଥର ତଳେ। ଆମର ରକ୍ଷଣଶୀଳ, ପାରମ୍ପରିକ ଓ ପୁରୁଷ ପ୍ରଧାନ ସମାଜ ନାରୀମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ଅଧିକାର ଦେବାକୁ ନାରାଜ। ଆଇନ ପ୍ରଣୟନ ଦ୍ୱାରା ଲୋକଙ୍କର ମନୋଭାବ ପରିବର୍ତ୍ତନ ସମ୍ଭବପର ନୁହେଁ। ମହିଳାମାନଙ୍କ ସାମାଜିକ ନିରାପତ୍ତା ପାଇଁ ଆଇନ ସହାୟକ ସଂସ୍ଥା ଏବଂ ପ୍ରତିରକ୍ଷା

ମନ୍ତ୍ରଣାଳୟର ସାମାଜିକ ନିରାପତ୍ତା ଜାତୀୟ ପ୍ରତିଷ୍ଠାନ ପ୍ରଭୃତି ସଂସ୍ଥା, ସମିତି ପାଖରେ ସାଧାରଣ ମହିଳାମାନେ ପହଁଞ୍ଚି ପାରୁନାହାନ୍ତି। ଏସବୁ ସଂପର୍କରେ ସେମାନଙ୍କର କୌଣସି ଜ୍ଞାନ ନାହିଁ। ଶିକ୍ଷା ନାହିଁ। ଭାରତ ସମ୍ବିଧାନରେ ପୁରୁଷ ଓ ମହିଳାମାନଙ୍କର ସମାନ ଅଧିକାର ଥିଲେହେଁ ଶିକ୍ଷାର ପ୍ରସାର ନ ହେଲେ ନାରୀ ଜାତି ଯେଉଁ ଅନ୍ଧାରରେ ଥିଲା ସେହି ତିମିରରେ ରହିଯିବ। ଶିକ୍ଷାହିଁ ନାରୀର ପଦମର୍ଯ୍ୟାଦାକୁ ବୃଦ୍ଧି ଓ ଆତ୍ମନିର୍ଭରଶୀଳତା ଦେଇ ପାରିବ। ଶିକ୍ଷାଦ୍ୱାରାହିଁ ନାରୀ ନିଜର ଆଇନଗତ ଅଧିକାର, ସୁରକ୍ଷା ସଂପର୍କରେ ସଚେତନ ହେଇ ପାରିବ। ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାଦାନ ତଥା ଧନ୍ଦାଗତ ଶିକ୍ଷାଦାନ ଆଜି ମହିଳା ମାନଙ୍କୁ ଆର୍ଥିକ ସାମାଜିକ ସ୍ୱାଧୀନତା ଦେଇ ପାରିବ।

ତେଣୁ ବିକାଶଶୀଳ ରାଷ୍ଟ୍ରଗୁଡିକରେ ନାରୀମାନଙ୍କୁ ମୁଖ୍ୟ ସ୍ରୋତରେ ସାମିଲ କରିବା ପାଇଁ ଆଜି ନାନାପ୍ରକାର ବ୍ୟବସ୍ଥା ଆୟୋଜନ ହେଇଛି। ନାରୀମନରେ ଜାଗରଣ ସୃଷ୍ଟି ପାଇଁ ବିଭିନ୍ନ ପ୍ରକାରର ପ୍ରଚେଷ୍ଟା ଅବ୍ୟାହତ ରହିଚି। ଆନ୍ତର୍ଜାତିକ ସଂସ୍ଥା ଜାତିସଂଘ, ୟୁନିସେଫ୍ ଆଦି ଜନ ଜାଗରଣ ସୃଷ୍ଟି ପାଇଁ ମାନବିକ ଚେତନାର ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବା ପାଇଁ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି। ତାଛଡ଼ା ସାର୍କଗୋଷ୍ଠିଭୁକ୍ତ ଦେଶ ଯେଉଁମାନେ ବିକାଶ ମୁଖୀ ତୃତୀୟ ବିଶ୍ୱର ଦେଶ( ସେମାନେ ହେଲେ ଭାରତ, ପାକିସ୍ଥାନ, ଭୂଟାନ, ମାଳଦ୍ୱିପ, ଶ୍ରୀଲଙ୍କା, ନେପାଳ ) ୧୯୯୦ ମସିହାକୁ କନ୍ୟାସନ୍ତାନ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛନ୍ତି। ତାଛଡ଼ା ସ୍ୱାଧିନ ଭାରତରେ ନାରୀକୁ ସମାନ ଅଧିକାର ଦିଆହେବା ସଙ୍ଗେ ସଙ୍ଗେ ଆଇନରେ ନାରୀକୁ ସୁରକ୍ଷା ଦିଆଯାଇଛି। ତଥାପି ନାରୀ ଦୁର୍ବଳ ଆଉ ବଧୂହତ୍ୟା ବଢ଼ିଚାଲିଛି। ତେଣୁ ନାରୀ ଜାତିର ସଚେତନତା ହିଁ ବଡ଼କଥା। ନାରୀ ଶକ୍ତିମୟୀ। ଆଉ ସେଇଥିଲାଗି ନେପୋଲିୟନ ବୋନାପାର୍ଟ କହିଥିଲେ "ମୋତେ ତେରଟି ବୀର ପ୍ରସବିନୀ ମା ଦେଲେ ମୁଁ ବିଶ୍ୱ ଜୟ କରିବି"।

ଏହିଭଳି ନାରୀମାନଙ୍କର ଜନ୍ମ ହିଁ ଏ ଜାତିକୁ, ଏ ସମାଜକୁ, ଦେଶକୁ ସୁନ୍ଦର ସ୍ୱର୍ଗରେ ପରିଣତ କରି ପାରିବ। ପୁରୁଷମନରେ ବିଚାରର ପରିବର୍ତ୍ତନ ଆସିଲେ ଆଉ ଝିଅ ଜନ୍ମ ଅଭିଶାପ ନ ହେଇ ଆଶୀର୍ବାଦ ବୋଲି ହିଁ ଧରାଯିବ। ଗୋଟିଏ ହାତରେ ତାଳି ବାଜେ ନାହିଁ। ଉଭୟେ ପୁରୁଷ ଓ ନାରୀ ନିଜ ତରଫରୁ କିଛି କିଛି ତ୍ୟାଗ, ଆତ୍ମଜ୍ଞ, ବୁଝାମଣା ନ ରଖିଲେ ହୁଏତ ଏଭଳି ପରିବେଶରେ ଆମ ସମସ୍ତଙ୍କୁ ଜୀଇଁବାକୁ ପଡ଼ିବ ଏଥିରେ ସନ୍ଦେହ ନାହିଁ।

*